# କମଳ ପୁଷ୍ପ ତୁଲ୍ୟ ପବିତ୍ର ଜୀବନ



ପ୍ରଜାପିତା ବ୍ରହ୍ମାକୁମାରୀ ଈଶ୍ୱରୀୟ ବିଶ୍ୱ ବିଦ୍ୟାଳୟ
ରାଜସ୍ଥାନ (ମାଉଣ୍ଟ ଆବୁ)

# କମଳ ପୁଷ୍ପତୁଲ୍ୟ ପବିତ୍ର ଜୀବନ



ପ୍ରଜାପିତା ବ୍ରହ୍ମାକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟ

ମାଉଣ୍ଟ ଆବୁ ( ରାଜସ୍ଥାନ )

ପ୍ରକାଶକ :
ପ୍ରଜାପିତା ବ୍ରହ୍ମାକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟ
ପାଣ୍ଡବ ଭବନ, ମାଉଣ୍ଟ ଆବୁ ( ରାଜସ୍ଥାନ )



ଷଷ୍ଠ ସଂସ୍କରଣ
୧୯୮୯—୨୦୦୦

ମୁଦ୍ରକ :
ଶ୍ରୀ ଜଗନ୍ନାଥ ପ୍ରିଣ୍ଟର୍ସ, ବାଉଁଶଗଳି, କଟକ - ୧

ପ୍ରାପ୍ତିସ୍ଥାନ :
ପ୍ରଜାପିତା ବ୍ରହ୍ମାକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟ
ସାହିତ୍ୟ ବିଭାଗ, ତେଲେଙ୍ଗା ବଜାର, କଟକ - ୯

ପ୍ରାକ୍‌କଥନ

# ପବିତ୍ରତା ହିଁ ମହାନତା ଏବଂ ସୁଖଶାନ୍ତିର ଚାବିକାଠି

'ପବିତ୍ରତା ହିଁ ମହାନତା'—ଏହାକୁ କୌଣସି ବିବେକବାନ୍ ବ୍ୟକ୍ତି ଅସ୍ୱୀକାର କରିବ ନାହିଁ । ଉଦାହରଣସ୍ୱରୂପ, ଶ୍ରୀଲକ୍ଷ୍ମୀ, ଶ୍ରୀନାରାୟଣ ତଥା ଶ୍ରୀସୀତା, ଶ୍ରୀରାମ ପ୍ରଭୃତି ଦେବୀଦେବତାମାନେ ଯଦିଓ ଗୃହସ୍ଥ ଥିଲେ, ତଥାପି ସେମାନଙ୍କର ଜୀବନ ପବିତ୍ର ଥିଲା ଏବଂ ଏହି କାରଣରୁ ଆଜିର ଗୃହସ୍ଥ ଲୋକେ ସେହି ପବିତ୍ର ଦେବୀଦେବତାମାନଙ୍କ ମନ୍ଦିରକୁ ଯାଇ ସେମାନଙ୍କର ଜଡ଼ ମୂର୍ତ୍ତି ସମ୍ମୁଖରେ ନତମସ୍ତକ ହେଉଛନ୍ତି । ଏହି ପବିତ୍ରତା ଯୋଗୁଁ ଆଜି ସନ୍ନ୍ୟାସୀ ଏବଂ ମହାତ୍ମାମାନଙ୍କ ଆଗରେ ଲୋକେ ମଧ୍ୟ ନତମସ୍ତକ ହେଉଛନ୍ତି । ପବିତ୍ରତା ଅର୍ଥାତ୍ ବିଶେଷ ରୂପରେ କହିବାକୁ ଗଲେ 'ବ୍ରହ୍ମଚର୍ଯ୍ୟ' ହିଁ ସେମାନଙ୍କ ଜୀବନର ବିଶେଷତା । ଏହି ବିଶେଷତା ଯୋଗୁଁ ଅଦୂର ଅତୀତର ଏକ ସାଧାରଣ ମାନବ ଆଜି ଜଣେ ସନ୍ନ୍ୟାସୀ । "କନ୍ୟା ପବିତ୍ର ରହୁଥିବା କାରଣରୁ ସେ କୌଣସି ବ୍ୟକ୍ତି ସମ୍ମୁଖରେ ମୁଣ୍ଡ ନୁଆଁଏ ନାହିଁ "—ଏ ପ୍ରଥା ଆଜି ମଧ୍ୟ ପ୍ରଚଳିତ । ଏପରି କନ୍ୟା ଶହେ ବ୍ରାହ୍ମଣଙ୍କଠାରୁ ମଧ୍ୟ ଉତ୍ତମ ବୋଲି କୁହାଯାଇଛି । କିନ୍ତୁ ଯେତେବେଳେ ସେ ବିବାହ କରେ ସେତେବେଳେ ସେ ଅନ୍ୟ ଆଗରେ ମୁଣ୍ଡ ନୁଆଁଏ । ଏଣୁ ଏଥିରୁ ସ୍ପଷ୍ଟ ଅନୁମେୟ ହୁଏ କି "ପବିତ୍ରତା ହିଁ ମହାନତା" ଅଟେ । ଏପର୍ଯ୍ୟନ୍ତ ସଂସାର ମଧ୍ୟରେ ଯଦି କେହି ମହାନ୍‌ରୂପେ ପରିଗଣିତ ହୋଇଥାଆନ୍ତି, ତେବେ ସେହି ମହାନତାକୁ ଲାଭ କରିବା ପାଇଁ ସେ ତାଙ୍କ ଜୀବନରେ କୌଣସି ନା କୌଣସି ଦିବ୍ୟଗୁଣ ଅଥବା ପବିତ୍ରତାକୁ ନିଶ୍ଚିତ ରୂପେ ଧାରଣ କରିଥିବେ । ଏପରି ଦୃଷ୍ଟାନ୍ତ ଆମ୍ଭେମାନେ ଇତିହାସରେ ପଢ଼ିଛେ ଏବଂ ବ୍ୟବହାରିକ ଜୀବନରେ ମଧ୍ୟ ଅନୁଭବ କରୁଛେ ।

ଶ୍ରମିକ ଏବଂ ଯୁବକମାନଙ୍କଦ୍ୱାରା ଜାତୀୟ ସମ୍ପତ୍ତିର ଭଙ୍ଗାରୁଜା ଅପବ୍ୟବହାର ମଧ୍ୟ ସମସ୍ତେ ହୃଦୟଙ୍ଗମ କରୁଥିବେ । ଆର୍ଥିକ ଶୋଷଣକୁ କେନ୍ଦ୍ର କରି କଳ-କାରଖାନାର ମାଲିକ ଏବଂ ଶ୍ରମିକମାନଙ୍କ ମଧ୍ୟରେ ଦେଖାଯାଉଥିବା ଖରାପ ମନୋଭାବ ଏବଂ ପ୍ରତିଦିନ ପାଳନ କରାଯାଉ-ଥିବା ବିଭିନ୍ନ ହରତାଳ ପ୍ରଭୃତିର ମୂଳ କାରଣ ହେଉଛି ଧନୀମାନଙ୍କର ଲୋଭବୃତ୍ତି ଏବଂ ଗରିବମାନଙ୍କର ହିଂସା ଏବଂ କ୍ରୋଧଯୁକ୍ତ ସମାଧାନ-ବିଧି । ଏପରି ମନୋଭାବ ଉଭୟେ ପୋଷଣ କରିବାଦ୍ୱାରା ଦେଶର ଉତ୍ପାଦନ କମୁଛି ଏବଂ ଦରଦାମ୍ ବଢ଼ୁଛି । ଯେତେବେଳେ ଲୋକମାନେ ନିଜର ଜାତି, ନିଜର ପାଠ୍ୟପୁସ୍ତକ ତଥା ନିଜ ଦେଶର ମିଥ୍ୟା ଅହଂକାର କରିବାକୁ ଲାଗନ୍ତି କିମ୍ବା ଏସବୁର ମୋହରେ ବଶୀଭୂତ ହୋଇ ସତ୍ୟକୁ ଦେଖିବା ପାଇଁ ଆଖି, ଶୁଣିବା ପାଇଁ କାନ ବନ୍ଦ କରିଦିଅନ୍ତି ଏବଂ ନୂତନ ନୂତନ ବିଷୟବସ୍ତୁ ଉପରେ ବିଚାର କରିବା ପାଇଁ ବୁଦ୍ଧିରେ ତାଲା ପକାନ୍ତି, ସେତେବେଳେ ସମ୍ପ୍ରଦାୟ ସମ୍ପ୍ରଦାୟ ମଧ୍ୟରେ ଏବଂ ଦେଶ ଦେଶ ମଧ୍ୟରେ ବୈରିଭାବ ଉତ୍ପନ୍ନ ହୁଏ ଏବଂ ବ୍ୟକ୍ତିକୁ ସତ୍ୟରୁ ବଞ୍ଚିତ ହେବାକୁ ପଡ଼େ । ଏହିପରି ଯଦି କୌଣସି ଦେଶର ବ୍ୟକ୍ତିସମୂହ ସେମାନଙ୍କର କାର୍ଯ୍ୟଦକ୍ଷତା ତଥା କର୍ତ୍ତବ୍ୟପରାୟଣତାକୁ ଜଳାଞ୍ଜଳି ଦେଇ ଆଳସ୍ୟ-ପରାୟଣତା ଧାରଣ କରନ୍ତି ତେବେ ସେ ଦେଶରେ ଦରିଦ୍ରତାର ଛାୟା ଘୋଟି ଆସେ । ଯାହାଫଳରେ ଅନ୍ୟାନ୍ୟ ଦେଶ ସେ ଦେଶ ଉପରେ ନିଜ ନିଜର ଅର୍ଥନୈତିକ ଅଥବା ରାଜନୈତିକ ଶାସନ ପ୍ରତିଷ୍ଠା କରିବାକୁ ଲାଗିପଡ଼ନ୍ତି ।

ଏଣୁ ଏକ ସୁନ୍ଦର, ସମୃଦ୍ଧିଶାଳୀ ଏବଂ ସୁଖୀ ସମାଜ ନିର୍ମାଣ କରିବା ପାଇଁ ନିର୍ବିକାରୀ ଜୀବନରୂପୀ ମୂଳଦୁଆ ଏକାନ୍ତ ଆବଶ୍ୟକ । ଏପରି ଲକ୍ଷ୍ୟକୁ ସାକାର କରିବାପାଇଁ ସର୍ବଦା ନିର୍ବିକାର, ନିରାକାର, ସତୋଗୁଣସଂପନ୍ନ, ସତ୍ୟଯୁଗ ସୃଷ୍ଟିର ନିର୍ମାତା ପତିତପାବନ, ପରମପିତା ପରମାତ୍ମା ଶିବଙ୍କର ମହାବାକ୍ୟ ଅର୍ଥାତ୍ ଅମୂଲ୍ୟ ଜ୍ଞାନରତ୍ନକୁ ଜୀବନରେ ଧାରଣ କରିବା ପ୍ରତ୍ୟେକଙ୍କର ବ୍ରତ ହେବା ଦରକାର ।

ସମାଜର ନିର୍ମାତା ହେଉଛନ୍ତି ବ୍ୟକ୍ତିସମୂହ । ତେଣୁ ଯେପର୍ଯ୍ୟନ୍ତ ବ୍ୟକ୍ତିଗତ ଜୀବନ ପବିତ୍ର ନ ହୋଇଛି ସେପର୍ଯ୍ୟନ୍ତ ଏକ ଉଜ୍ଜ୍ୱଳ ଏବଂ ମଙ୍ଗଳମୟ ସମାଜ ଗଠନର କଳ୍ପନା ମଧ୍ୟ କରାଯାଇ ନ ପାରେ । ଏଣୁ ବ୍ୟକ୍ତିଗତ ଭାବେ ପ୍ରତ୍ୟେକ ମନୁଷ୍ୟ ନିଜ ନିଜର ବୁଦ୍ଧିକୁ ଶୁଦ୍ଧ କରି, କମଳ ପୁଷ୍ପତୁଲ୍ୟ ଜୀବନଯାପନ କରିବା ପାଇଁ ଅନ୍ୟର ଉପଦେଶ କିମ୍ବା ବକ୍ତବ୍ୟକୁ ଅପେକ୍ଷା ନ କରି ନିର୍ବିକାରୀ ଜୀବନର ମହତ୍ତ୍ୱକୁ ନିଜେ ସଠିକ୍ ଭାବରେ ଉପଲବ୍ଧି କରିବା ଉଚିତ ଏବଂ ତା'ର ଉପଯୁକ୍ତ ବିଧିବିଧାନ ବିଷୟରେ ମନରେ ଉଠୁଥିବା ପ୍ରଶ୍ନସମୂହର ସମାଧାନ କରି ପବିତ୍ରତାକୁ ଜୀବନରେ ଧାରଣ କରିବା ମଧ୍ୟ ଆବଶ୍ୟକ ।

ପଦ୍ମ ଅର୍ଥାତ୍ ପଙ୍କଜ ପଙ୍କରୁ ଜାତ ହୋଇଥିଲେ ମଧ୍ୟ ଏବଂ ପଙ୍କରେ ରହୁଥିଲେ ମଧ୍ୟ ତା'ର ବିଶେଷତା ଅନୁଯାୟୀ ସେ ପଙ୍କ ଏବଂ ପାଣିଠାରୁ ସର୍ବଦା ନିର୍ଲିପ୍ତ ରହେ । ଏତଦ୍‌ବ୍ୟତୀତ ଅନ୍ୟ ଏକ ବିଶେଷତା ହେଉଛି ତା'ର ପରିବାର, ଅର୍ଥାତ୍ ନାଡ଼, କଢ଼ ଏବଂ ପତ୍ର ଇତ୍ୟାଦି । ଏଣୁ ଜୀବନକୁ କମଳପୁଷ୍ପ ତୁଲ୍ୟ ଗଢ଼ିବା ଅର୍ଥ ହେଉଛି ଘର-ଗୃହସ୍ଥରେ ରହିବା ସଙ୍ଗେ ସଙ୍ଗେ ସଦା ନିର୍ଲିପ୍ତ, ପବିତ୍ର ଏବଂ ନିର୍ବିକାରୀ ରହିବା । ଏପରି ନିର୍ବିକାର ଜୀବନ ମାନବକୁ ଆତ୍ମିକ ସୁଖପ୍ରଦାନ କରିବା ସଙ୍ଗେ ସଙ୍ଗେ ମାନବ ସମାଜକୁ ମଧ୍ୟ ସରସତା, ସୁଖ ଓ ସାତ୍ତ୍ୱିକତାରେ ଭରପୂର କରିପାରେ ।

ଆଜି ବିଦ୍ୟାଳୟ ଏବଂ ମହାବିଦ୍ୟାଳୟଗୁଡ଼ିକରେ ନୈତିକ ଶିକ୍ଷା ପ୍ରଚଳନ କରାଇବାପାଇଁ ସାରା ବିଶ୍ୱରେ ସାର୍ବଜନୀନ ମତ ପ୍ରକାଶ ପାଉଛି । କାରଣ ଯୁବାବସ୍ଥାରେ ନୈତିକ ଜାଗୃତି ଅତ୍ୟାବଶ୍ୟକ । ବର୍ତ୍ତମାନର ଯୁବସମାଜ ଏବଂ ଛାତ୍ରସମାଜ ଭବିଷ୍ୟତର ଶାସକ । ଏତଦ୍‌ବ୍ୟତୀତ ଯଦି ବିଦ୍ୟାର୍ଥୀମାନଙ୍କର ପିତାମାତା, ସଂରକ୍ଷକ ଅଥବା ଅଭିଭାବକମାନେ ଏହି ନୈତିକ ଶିକ୍ଷାକୁ ସେମାନଙ୍କ ନିଜ ନିଜର ଆଚରଣରେ ପ୍ରତିଫଳିତ କରନ୍ତି ତେବେ ଗୃହରେ ମଧ୍ୟ ସନ୍ତାନମାନଙ୍କର ସଂସ୍କାର ଶ୍ରେଷ୍ଠ ହୋଇପାରିବ ।

— ସମ୍ପାଦକ

ଭୂମିକା

# ପବିତ୍ର ଜୀବନ ଏବଂ ସୁଖୀ ସମାଜ

ସମାଜବାଦର ଯୁଗ ବର୍ତ୍ତମାନ ଚାଲିଛି । ତେଣୁ ଏ ଯୁଗରେ ଆଧ୍ୟାତ୍ମିକ ଜ୍ଞାନକୁ କେବଳ ବ୍ୟକ୍ତିଗତ ମୁକ୍ତିପାଇଁ ପ୍ରୟୋଗ ନ କରି କିପରି ସାରା ସମାଜର କଲ୍ୟାଣ ପାଇଁ ବିନିଯୋଗ କରାଯାଇ ପାରିବ, ସେଥିପାଇଁ ଆଜି ବିଭିନ୍ନ ବିଚାର ମଧ୍ୟ ଚାଲିଛି । କିନ୍ତୁ ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ ଆସୁଛି ଯେ ଆଧ୍ୟାତ୍ମିକ ଜ୍ଞାନ ସମାଜର ବିଭିନ୍ନ ସମସ୍ୟାକୁ ସମାଧାନ କରିବା ଦିଗରେ କ'ଣ ସହଯୋଗୀ ହୋଇପାରେ ?

ପୁନଶ୍ଚ, ଲୋକମାନେ ମଧ୍ୟ ଉପଲବ୍ଧି କଲେଣି ଯେ ବ୍ୟକ୍ତିଗତ ମୁକ୍ତି ନିମିତ୍ତ ସମାଜସେବାକୁ ପରିତ୍ୟାଗ କରିବା ଏକ ପ୍ରକାର କର୍ତ୍ତବ୍ୟ-ମୁଖତା ଅଟେ । ଏଣୁ ବଣ ଜଙ୍ଗଲରେ ନିଇଚ୍ଛଳା ଭାବରେ ରହିବା ଏବଂ ଆଖି ବନ୍ଦ କରି ସାଧନା କରିବା ଇତ୍ୟାଦି ଜୀବନ-ଦର୍ଶନକୁ ସେମାନେ ଆଉ ଉଚ୍ଚ ଏବଂ ଉତ୍ତମ ବୋଲି ବିଚାର କରୁନାହାନ୍ତି । କାରଣ ସେମାନେ ପରିବାର ମଧ୍ୟରେ ରହି ସମାଜର ମଙ୍ଗଳ ସାଧନ କରିବାପାଇଁ ଆଶା କରୁଛନ୍ତି । ତେଣୁ ଆଜିର ଦୁନିଆଁରେ ଏପରି ଏକ 'ଯୋଗ'ର ଅନୁଭୂତି, ଏପରି ଏକ ସାଧନାର ଅନ୍ୱେଷଣ ଏବଂ ଏପରି ଏକ ଜୀବନ-ଦର୍ଶନର ଆବଶ୍ୟକତା ରହିଛି, ଯାହାକି ଏକାଧାରରେ ଗୃହସ୍ଥକୁ ସୁଖୀ କରିପାରିବ, କର୍ମରତ ମାନବ ମନରେ ଆନନ୍ଦ ଏବଂ ଉଲ୍ଲାସ ଭରପୂର କରିପାରିବ ଏବଂ ତାଙ୍କର ଜୀବନର ଦୁଃଖ, ଅଶାନ୍ତି ଏବଂ ରୋଗକୁ ମଧ୍ୟ ଦୂର କରିଦେଇ ପାରିବ ।

ଯଦି ଗମ୍ଭୀର ଭାବରେ ବିଚାର କରାଯାଏ ତେବେ ଏହା ସ୍ପଷ୍ଟ ଅନୁମେୟ ଯେ ଆଜିର ସର୍ବସମସ୍ୟାର ମୂଳ କାରଣ ହେଉଛି କୌଣସି ନା କୌଣସି ମାନସିକ ବିକାର ଉଦାହରଣସ୍ୱରୂପ,

ମାନବର ଉତ୍ତେଜିତ 'କାମବାସନା' ହେତୁ ଜନ-ସଂଖ୍ୟା ତୀବ୍ର ଗତିରେ ବଢ଼ିଚାଲିଛି । ଯାହାର ପରିଣାମସ୍ୱରୂପ ଆର୍ଥିକ ଦରିଦ୍ରତା, ବେକାରି, ଖାଦ୍ୟାଭାବ ପ୍ରଭୃତି ସମସ୍ୟାଗୁଡ଼ିକ ଆଜି ସମଗ୍ର ବିଶ୍ୱ ସମ୍ମୁଖରେ ଦଣ୍ଡାୟମାନ । 'କ୍ରୋଧ' କାରଣରୁ ଆଜି ଦେଶ ଦେଶ ମଧ୍ୟରେ ଯୁଦ୍ଧ, ଜାତି ଜାତି ମଧ୍ୟରେ ଶତ୍ରୁତା, ହାନିକାରକ ବୋମାର ଉଦ୍ଭାବନ ତଥା ଆନ୍ତର୍ଜାତିକ ଅଶାନ୍ତି ଅନବରତ ପୃଥିବୀରେ ଲାଗିଛି ।

ପୁନଶ୍ଚ, "ପବିତ୍ରତାହିଁ ସୁଖ ଶାନ୍ତିର ଚାବିକାଠି" ଏବଂ ବିକାର ହେଉଛି ଅଶାନ୍ତିର କାରଣ । କୌଣସି ବିକାରର ବଶୀଭୂତ ହୋଇ କୌଣସି କର୍ମ କଲେ ଯଦିଓ ତତ୍‌କ୍ଷଣାତ୍ ଅଶାନ୍ତି ଅନୁଭବ ନ ହୁଏ, ତଥାପି ତାହା ଅଶାନ୍ତିର ମଞ୍ଜିରୂପେ କାର୍ଯ୍ୟ କରେ, ଯାହାକି ପରେ ଅଙ୍କୁରିତ ହୋଇ ବଢ଼ିବାକୁ ଲାଗେ ଏବଂ ଶେଷରେ ଦୁଃଖ ତଥା ଅଶାନ୍ତିର ଫଳ ପ୍ରଦାନ କରେ । ଏହି ବିକାର ଆଜିର ଘର, ପରିବାର, ସମାଜ ତଥା ବିଶ୍ୱକୁ ସମ୍ପୂର୍ଣ୍ଣରୂପେ ଗ୍ରାସ କରିଛି । ତେଣୁ ଏଥିରୁ ସ୍ପଷ୍ଟ ହେଉଛି ଯେ ବିଶ୍ୱରେ ପୁନର୍ବାର ଶାନ୍ତି ସ୍ଥାପନ କରିବାପାଇଁ ତଥା ଆଧ୍ୟାତ୍ମିକ ଉନ୍ନତି ପାଇଁ ନିର୍ବିକାର ଜୀବନର ମହତ୍ତ୍ୱ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଶ୍ରେଷ୍ଠ ସେବା ସମ୍ପାଦନ କରିବା ନିମିତ୍ତ ପରମପିତା ପରମାତ୍ମା ତାଙ୍କର ପ୍ରସାଦରୂପେ ସାରା ମାନବସମାଜ ପାଇଁ ଯେଉଁ ପବିତ୍ରତାର ଜ୍ଞାନ ଦେଇଛନ୍ତି ତାହା ଏହି ପୁସ୍ତକରେ ବର୍ଣ୍ଣିତ ହୋଇଅଛି ।

"ସଂକଳ୍ପ"

# ସୂଚୀପତ୍ର





# ଦୃଷ୍ଟି ଏବଂ ବୃତ୍ତିକୁ ପବିତ୍ର କରିବାର ଉପାୟ କଣ

## 'କାମ-ବିକାର' ଉପରେ ବିଜୟପ୍ରାପ୍ତି କିପରି ସମ୍ଭବ ?

ମନ, ବାଣୀ ଏବଂ କର୍ମରେ 'କାମ' ବିକାର ଉପରେ ବିଜୟପ୍ରାପ୍ତିର ବିଭିନ୍ନ ବିଷୟ ଏହି ଅଧ୍ୟାୟର ଅନ୍ତର୍ଗତ । ଆଜି ମାନବର ଦୃଷ୍ଟି ଏବଂ ବୃତ୍ତି ବହୁତ ଅପବିତ୍ର ହୋଇଯାଇଛି । ଏହାର ପରିଣାମସ୍ୱରୂପ ସେ ପରମାତ୍ମାଙ୍କ ସ୍ମୃତିର ଆନନ୍ଦ ଅନୁଭବ କରିବାପାଇଁ ଅସମର୍ଥ ହୋଇଅଛି । ଅନେକଙ୍କ ଶାରୀରିକ ସ୍ମୃତିରେ ସେ ତାର ଜୀବନ-ଡଙ୍ଗାକୁ ଚଳାୟମାନ ରଖିଛି । ବ୍ରହ୍ମଚର୍ଯ୍ୟ ତଥା ଆତ୍ମିକ ଦୃଷ୍ଟିରୁ ଯେଉଁ ଅତୀନ୍ଦ୍ରିୟ ସୁଖ ମିଳେ, ଆଜି ମାନବ ସେଥିରୁ ବଞ୍ଚିତ । ସେ ବିଭିନ୍ନ କଥା ଶୁଣୁଛି, ପୂଜା ଓ ଯଜ୍ଞ ଇତ୍ୟାଦି ମଧ୍ୟ କରୁଛି, ତଥାପି ତାର ମନରୁ ବିକାର ବିଦାୟ ନେଉନାହିଁ । ଏପରି ଅବସ୍ଥା ହେତୁ ତାର ଆଧ୍ୟାତ୍ମିକ ପ୍ରଗତି ହୋଇପାରୁନି । ଏଣୁକରି ଜିଜ୍ଞାସୁ ନିଜର ଦୁର୍ବଳତାକୁ ଦୂର କରିବାପାଇଁ ପ୍ରଥମେ କେତେକ ମୌଳିକ ପ୍ରଶ୍ନ ଜଣେ ବ୍ରହ୍ମାକୁମାରୀଙ୍କ ସମ୍ମୁଖରେ ଉପସ୍ଥାପନା କରୁଛନ୍ତି । ଏହି ପ୍ରଶ୍ନର ଉତ୍ତର-ଗୁଡ଼ିକ କଥୋପକଥନ ମାଧ୍ୟମରେ ନିମ୍ନରେ କରାଯାଇଛି ।

**ଜିଜ୍ଞାସୁ**—ଭଉଣୀ, ଏହି ଜ୍ଞାନଦ୍ୱାରା ମୋ ଜୀବନରେ ବହୁତ ପରିବର୍ତ୍ତନ ଆସିପାରିଛି ଏବଂ ମୋର ବାଣୀ ଏବଂ କର୍ମକୁ ମୁଁ ଅନେକାଂଶରେ ନିୟନ୍ତ୍ରଣ କରିପାରିଛି, କିନ୍ତୁ ମୁଁ ଯେତେବେଳେ ଯୋଗ ବା ପରମପିତା ପରମାତ୍ମାଙ୍କ ଅନନ୍ୟ ସ୍ମୃତିରେ ବସୁଛି ସେତେବେଳେ ମୋର ମନ ଏଣେ ତେଣେ ଗତି କରୁଛି । ପରମାତ୍ମାଙ୍କର ପରିଚୟ ମୁଁ ବର୍ତ୍ତମାନ ପାଇସାରିଛି, ଜୀବନର ଲକ୍ଷ୍ୟକୁ ବର୍ତ୍ତମାନ ଜାଣିପାରିଛି ଏବଂ ଯୋଗର ବିଧି ମଧ୍ୟ ଆପଣ ମୋତେ ସ୍ପଷ୍ଟଭାବରେ ବୁଝାଇ ସାରିଛନ୍ତି, ଏସବୁ ଉପରେ ମନରେ

କେତେକ ବ୍ୟର୍ଥ ଅଥବା ଅଶୁଦ୍ଧ ସଙ୍କଳ୍ପ ଉଠୁଛି ଯାହାକି ମନକୁ ଈଶ୍ୱରୀୟ ସ୍ମୃତିରେ ମଗ୍ନ ରହିବାକୁ ଦେଉନି ଏବଂ ଆନନ୍ଦର ପରାକାଷ୍ଠାକୁ ଉପଲବ୍ଧି କରିବାକୁ ମଧ୍ୟ ଦେଉନି । ଯୋଗାଭ୍ୟାସରେ ପୁରୁଷାର୍ଥ କରି ଏକାନ୍ତବାସୀ ହୋଇ ପାରୁଥିଲେ ମଧ୍ୟ ସେହି ସମୟରେ କୌଣସି ନା କୌଣସି ଲୌକିକ ସଙ୍କଳ୍ପ ମୋତେ ପୁନର୍ବାର ତଳକୁ ଟାଣି ଆଣୁଛି । ଏହିସବୁ ସଙ୍କଳ୍ପଗୁଡ଼ିକ ମଧ୍ୟରେ କେତେବେଳେ ଅନାୟାସରେ ଦୈହିକ ସମ୍ପର୍କୀୟମାନଙ୍କର ସ୍ମୃତି ଆସୁଛି ତ କେତେବେଳେ 'କାମ' ବିକାରରୁ ଦୂଷିତ ସଙ୍କଳ୍ପ ମଧ୍ୟ ଉତ୍ପନ୍ନ ହେଉଛି । କେତେବେଳେ ବା ମନରେ ସନ୍ତାନ-ସନ୍ତତିମାନଙ୍କର ମୁଖମଣ୍ଡଳ ପ୍ରତିଫଳିତ ହେଉଛି ତ ଅନ୍ୟ କେତେବେଳେ ସେମାନଙ୍କର ଅଜ୍ଞାନୀ କର୍ମ ମଧ୍ୟ ମୋତେ ଅସ୍ଥିର କରୁଛି, ଯାହାଫଳରେ ମନରେ ସମୟେ ସମୟେ ଦୁଃଖର ଢେଉ ଆସୁଛି । କେବେ କେବେ ସନ୍ତାନମାନଙ୍କ ଉପରେ କ୍ରୋଧ ମଧ୍ୟ ଆସୁଛି ଏବଂ ଅ ୟ କେତେବେଳେ ମଧ୍ୟ ଖାଦ୍ୟ ପାନୀୟର ବିଭିନ୍ନ ପଦାର୍ଥ ଆଡ଼କୁ ମନ ଆକର୍ଷିତ ହେଉଛି; ତେଣୁ ଏସବୁ ଅଶୁଦ୍ଧ ସଙ୍କଳ୍ପରୁ ରକ୍ଷା ପାଇବାର ଉପାୟ କ'ଣ ?

## ଅଶୁଦ୍ଧ ସଂସ୍କାର ଯୋଗୁଁ ଅଶୁଦ୍ଧ ସଂକଳ୍ପର ଉତ୍ପତ୍ତି

ବ୍ରହ୍ମାକୁମାରୀ—ଆପଣଙ୍କୁ ବୁଝାଇ ଦିଆଯାଇଥିଲା ଯେ ଅନେକ ଜନ୍ମଧରି ମନୁଷ୍ୟାତ୍ମା ଅଜ୍ଞାନତା ଏବଂ ଦେହଅଭିମାନ କାରଣରୁ କାମ, କ୍ରୋଧ, ଲୋଭ, ମୋହ ପ୍ରଭୃତି ବିକାରର ବଶୀଭୂତ ହୋଇ କର୍ମ କରିଆସୁଛି । ଏଣୁ ଜନ୍ମ-ଜନ୍ମାନ୍ତରର ଅଭ୍ୟାସ ଯୋଗୁଁ ଯେଉଁସବୁ ସଂସ୍କାର ଦୃଢ଼ୀଭୂତ ହୋଇଯାଇଛି, ସେସବୁ ତ ଗୋଟିଏ ଦିନରେ ପରିବର୍ତ୍ତିତ ହୋଇପାରିବ ନାହିଁ, ତେଣୁ ଈଶ୍ୱରୀୟ ସ୍ମୃତିର ଅଭ୍ୟାସ କରିବା ସମୟରେ ସେହି ସଂସ୍କାରଗୁଡ଼ିକ ସେମାନଙ୍କ ଆଡ଼କୁ ଆକର୍ଷିତ କରନ୍ତି । କିନ୍ତୁ ଇତସ୍ତତଃ ହେବାର କାରଣ ନାହିଁ । ଯୋଗବଳଦ୍ୱାରା

ଏହି ବିକାରକୁ ପ୍ରତିରୋଧ କରିବାକୁ ହେବ ଏବଂ ଏଥିପାଇଁ ସର୍ବଶକ୍ତିମାନ୍ ପରମପିତା ପରମାତ୍ମା–ଶିବଙ୍କଠାରୁ ଶକ୍ତି ଲାଭ କରିବା ଏବଂ ବ୍ରହ୍ମଚର୍ଯ୍ୟ ପାଳନ କରିବା ଏକାନ୍ତ ଆବଶ୍ୟକ ।

## 'କାମ' ବିକାରକୁ ଛାଡ଼ନ୍ତୁ, ଈଶ୍ୱରଙ୍କ ସହିତ ସମ୍ବନ୍ଧ ସ୍ଥାପନ କରନ୍ତୁ

ପରମାତ୍ମା କହୁଛନ୍ତି—"ହେ ବତ୍ସ, ବର୍ତ୍ତମାନ ପବିତ୍ର ହୁଅ ଏବଂ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କର । ବ୍ରହ୍ମଚର୍ଯ୍ୟ ପାଳନ କରୁଥିବା ବ୍ୟକ୍ତି ହିଁ ଯୋଗରୁ ଆନନ୍ଦ ଲାଭ କରିପାରେ ତଥା ଆଧ୍ୟାତ୍ମିକ ଏବଂ ନୈତିକ ଶକ୍ତିର ବିକାଶ କରିପାରେ । ଏଣୁ ବର୍ତ୍ତମାନ 'କାମ' ବିକାରର ସଙ୍ଗ ଛାଡ଼ିବା ଅତ୍ୟାବଶ୍ୟକ ।"

କାମ-ବାସନାରୁ ମାନବର ଶକ୍ତି କ୍ଷୟ ହୁଏ ଏବଂ ତା'ର ମନରେ କ୍ରୋଧ ଉତ୍ପନ୍ନ ହୁଏ; ଫଳରେ ତା'ର ସ୍ୱରୂପର ବିସ୍ମୃତି ଘଟେ । କାମ-ବାସନାଯୋଗୁଁ ମାନବର ବୁଦ୍ଧି ଭ୍ରଷ୍ଟ ହୁଏ ଏବଂ ପରିଣାମତଃ ତା'ର ସର୍ବନାଶ ହୁଏ । ଏଣୁ **କାମ ହେଉଛି ନରକର ଦ୍ୱାର** । 'କାମ' ହିଁ ମାନବର ବଡ଼ ଶତ୍ରୁ । ପରମାତ୍ମା କହୁଛନ୍ତି ଯେ 'କାମ' ମନୁଷ୍ୟକୁ ଦୁର୍ବଳ, ଅବିବେକୀ, ଅସମର୍ଥ ଏବଂ ଅଧର୍ମୀ କରିଦିଏ, ଯାହାଫଳରେ ମାନବ ପତିତ, କାଙ୍ଗାଳ ଏବଂ ଅସୁରରୂପେ ପରିଗଣିତ ହୁଏ । ମଗର ମାଛ ଉପରେ ବସି ସମୁଦ୍ର ପାରି ହେବାର ଆଶା ଯେପରି ନିରର୍ଥକ, କାମ-ବିକାର ଉପରେ ବସି ଏହି ଦୁନିଆଁରୁ ପାରି ହେବା ସେହିପରି ନିରର୍ଥକ ।

**ପ୍ରଶ୍ନ**—ଭଉଣୀ, ଆଜି ଯେତେବେଳେ ଆପଣ ଜଣ ଜଣ କରି ସଦ୍‌ଗତିଦାତା, ପରମପିତା ପରମାତ୍ମାଙ୍କର ଏହି ଶୁଭ ସମ୍ବାଦ ଶୁଣାଉଛନ୍ତି, ସେତେବେଳେ କେତେକ ବ୍ୟକ୍ତି କହୁଛନ୍ତି ଯେ "କାମ ଅର୍ଥାତ୍ ମୈଥୁନକୁ

ତ୍ୟାଗ କରିବା ପାଇଁ ଗୀତାରେ ଭଗବାନ କହିନାହାନ୍ତି, ମାତ୍ର ତାଙ୍କର ଆଦେଶ ହେଉଛି ନିଷ୍କାମ ହେବା ଅର୍ଥାତ୍ କାମନାକୁ ତ୍ୟାଗ କରିବା, କାରଣ କାମନା ହେଉଛି ସବୁ ଦୁଃଖର ମୂଳ କାରଣ ।" ଏହାର ବାସ୍ତବିକ ରହସ୍ୟ କ'ଣ ?

## 'କାମ'ର ବାସ୍ତବ ଅର୍ଥ

ଉତ୍ତର—ଯେଉଁ ଲୋକମାନେ ଏପରି କହନ୍ତି, ସେମାନେ ବିଚାର କରିବା ଦରକାର ଯେ ମନୁଷ୍ୟ ମନରେ କାମନା ଉତ୍ପନ୍ନ ହେବାର କାରଣ କ'ଣ ? ବିଚାରର ସମାପ୍ତି ପରେ ସେମାନେ ଏହି ସିଦ୍ଧାନ୍ତରେ ଉପନୀତ ହେବେ ଯେ କୌଣସି ନା କୌଣସି ଅଭାବ ହେତୁ କାମନା ଉତ୍ପନ୍ନ ହୁଏ ଏବଂ ମାନବର କର୍ମରେ ନିକୃଷ୍ଟତାର ଫଳସ୍ୱରୂପ ଅଭାବ ଦେଖାଦିଏ ଏବଂ କର୍ମର ନିକୃଷ୍ଟତାର କାରଣ ହେଉଛି ବୁଦ୍ଧି-ଭ୍ରଷ୍ଟତା ଏବଂ ବୁଦ୍ଧି ଭ୍ରଷ୍ଟ ହେବାର ଅଦ୍ୱିତୀୟ କାରଣ ହେଉଛି 'କାମ' ବିକାର । ତେଣୁ ଏଥିରୁ ସ୍ପଷ୍ଟ ଅନୁମେୟ ହୁଏ ଯେ ଅଭାବ ଏବଂ ଦୁର୍ଭାଗ୍ୟର ମୂଳ କାରଣ ହେଉଛି କାମ-ବାସନା । ଏଣୁକରି ପରମାତ୍ମା କହୁଛନ୍ତି, ଯେ ରଜୋଗୁଣରୁ କାମ ଏବଂ କ୍ରୋଧର ଉତ୍ପତ୍ତି ହୁଏ ଏବଂ ମନୁଷ୍ୟ ଏଥିରୁ ମୁକ୍ତ ହେବାପାଇଁ ବ୍ରହ୍ମଚର୍ଯ୍ୟରୂପୀ ଦୈବୀଗୁଣକୁ ଧାରଣ କରିବା ଉଚିତ । ତେଣୁ ଏଥିରୁ ଏହି ସିଦ୍ଧାନ୍ତ ମିଳୁଛି ଯେ ଶୁଭ-କାମନାକୁ ତ୍ୟାଗ ନ କରି କାମ-ବିକାରକୁ ତ୍ୟାଗ କରିବାପାଇଁ ଭଗବାନ ଆମ୍ଭମାନଙ୍କୁ ଆଦେଶ ଦେଉଛନ୍ତି ।

ଅଚ୍ଛା, ଯଦି କ୍ଷଣକ ପାଇଁ ଆମ୍ଭେମାନେ ମାନିବା ଯେ ପରମାତ୍ମାଙ୍କର ଆଦେଶରେ 'କାମ-ତ୍ୟାଗକର'ର ଅଭିପ୍ରାୟ ହେଉଛି ଯେ 'କାମନା-ତ୍ୟାଗକର', ତେବେ ପ୍ରଶ୍ନ ଉଠିବ ଯେ କାମନା ଆମ୍ଭେମାନେ ତ୍ୟାଗ କରିବା କାହିଁକି ? କାମନାକୁ ତ୍ୟାଗ କଲେ ଆମର ଲାଭ କ'ଣ ହେବ ? ଏହା ସ୍ପଷ୍ଟ ହେଉଛି ଯେ କାମନାକୁ ତ୍ୟାଗ କରିବାପାଇଁ ଇଚ୍ଛା

କରୁଥିବା ମାନବ ମନରେ ମଧ୍ୟ କୌଣସି ନା କୌଣସି କାମନା ଲୁକ୍‌କାୟିତ ରହୁଛି । କାରଣ କାମନା ବ୍ୟତିରେକେ କୌଣସି କର୍ମ ନାହିଁ । ତେବେ 'ନିଷ୍କାମ କର୍ମ କର' କିମ୍ବା 'କାମନା ତ୍ୟାଗକର'ର ଆଦେଶ ବା ଅର୍ଥ କ'ଣ ?' କାମନା ବ୍ୟତୀତ ମନୁଷ୍ୟ ଗୋଟିଏ ପାଦ ଆଗକୁ ମଧ୍ୟ ଯାଇ ନ ପାରେ । ଏଣୁକରି ଏହା ସୁସ୍ପଷ୍ଟ ଯେ କାମକୁ ମଧ୍ୟ ମନୁଷ୍ୟ ଛାଡ଼ି ପାରିବ ନାହିଁ ଏବଂ ଶୁଭ କାମକୁ ତ୍ୟାଗ କରିବା ପାଇଁ ଭଗବାନ ମଧ୍ୟ ଆଦେଶ ଦେଇ ନାହାନ୍ତି; ମାତ୍ର କାମ-ବିକାରକୁ ତ୍ୟାଗ କରିବାପାଇଁ ସେ ଆଦେଶ ଦେଇଛନ୍ତି । ପୁନଶ୍ଚ, ଯଦି କୌଣସି ମାନବ ଭାବୁଥାଏ ଯେ 'କାମର ଅର୍ଥ କାମନା, ମାତ୍ର କାମ-ବିକାର ନୁହେଁ, ତେବେ ସେ ମଧ୍ୟ ବିଚାର କରିବା ଦରକାର ଯେ କାମ-ବାସନା ଭୋଗ କରିବା ମଧ୍ୟ ଏକ କାମନା ଏବଂ ଏହି ମୈଥୁନର କାମନା ଏକ ନିକୃଷ୍ଟ କାମନା । ତେଣୁ ଏହାକୁ ତ୍ୟାଗ କରିବା ଏକାନ୍ତ ଆବଶ୍ୟକ ।

## 'କାମନା' ଏବଂ ନିଷ୍କାମ'ର ବାସ୍ତବ ଅର୍ଥ

ଯୋଗର ଆନନ୍ଦ ଉପଲବ୍ଧି କରିବାକୁ ଚାହୁଁଥିବା ବ୍ୟକ୍ତି କିମ୍ବା ମୁକ୍ତି ଏବଂ ଜୀବନମୁକ୍ତିକୁ ଲକ୍ଷ୍ୟ ରଖିଥିବା ବ୍ୟକ୍ତି 'କାମନା'ର ଏହି ଭାବାର୍ଥ ଉଠାଏ ଯେ "ମୋ ଜୀବନରେ (କାମ-ନା) କାମ-ଭାବ ନ ଆସୁ" ଅର୍ଥାତ୍ ମନୁଷ୍ୟକୁ ପତନୋନ୍ମୁଖୀ କରିବାବାଲା ମୈଥୁନଭାବ ଜୀବନରେ ନ ଆସୁ । 'ନିଷ୍କାମ'ର ଏହି ଭାବାର୍ଥ ଗ୍ରହଣ କରିବା ଉଚିତ ଯେ 'ମୋ ଜୀବନରେ କାମ ଭାବ ନ ରହୁ''। ନିଷ୍କାମ କର୍ମଯୋଗ'ର ଅର୍ଥ ହେଉଛି—କର୍ମ କରିବା ସଙ୍ଗେ ସଙ୍ଗେ ପରମାତ୍ମାଙ୍କ ସହିତ ଯୋଗଯୁକ୍ତ ରହିବା ଏବଂ 'କାମ' ବିକାରକୁ ମନରୁ ସଦା ଦୂର କରିବା ।

## 'କାମ' ଈଶ୍ୱର ବିରୋଧୀ ସ୍ୱଭାବ ଅଟେ

ଭଗବାନ ଶିବଙ୍କୁ 'କାମାରି' ବା 'କାମର ଶତ୍ରୁ' ଅଥବା କାମକୁ ବଧ କରିବାବାଲା ଇତ୍ୟାଦି ନାମରେ ନାମିତ କରାଯାଇଛି । ଏଣୁକରି ଯୋଗଦ୍ୱାରା ନିଜର କଲ୍ୟାଣ କାମନା କରୁଥିବା ବ୍ୟକ୍ତି ତା'ର ମନକୁ ଏହି ପ୍ରଶ୍ନ ପଚାରିବା ଉଚିତ ଯେ ପରମପିତା ପରମାତ୍ମା ଯିଏ କି କଲ୍ୟାଣକାରୀ ହୋଇଥିବା ହେତୁ ଶିବରୂପେ ବିବେଚିତ ଏବଂ 'କାମ'ର ଶତ୍ରୁରୂପେ ପ୍ରସିଦ୍ଧ, ତାଙ୍କ ସହିତ ଯୋଗଯୁକ୍ତ ରହିବାପାଇଁ ସେ ନିଜ ମନରେ କାମ-ବାସନାକୁ ସ୍ଥାନ ଦେବାର ଅର୍ଥ ପରମାତ୍ମାଙ୍କ ବିରୋଧୀ ଗୁଣକୁ ସ୍ୱୀକୃତ ଦେବା ସଙ୍ଗେ ସଙ୍ଗେ ସମାନ ନୁହେଁ କି ? ତେଣୁ ଯିଏ 'କାମ'ର ଶତ୍ରୁ ତାଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବା ପାଇଁ ଇଚ୍ଛୁକ ବ୍ୟକ୍ତି 'କାମ'କୁ ତ୍ୟାଗ କରିବା ଉଚିତ । ସେ ନିଜେ ଠିକ୍ କରିବା ଦରକାର ଯେ ତା'ର ଇଷ୍ଟ 'କାମ' ନା 'ଶିବ' ? ସେ ତା'ର ଜୀବନର କଲ୍ୟାଣ ( ଶିବ ) ଚାହୁଁଛି ନା ଅକଲ୍ୟାଣ ( ଅଶିବ ) ଚାହୁଁଛି । ପ୍ରସିଦ୍ଧ ଉକ୍ତି ରହିଛି ଯେ ଯେଉଁଠାରେ 'ରାମ' ସେଠାରେ 'କାମ' ନାହିଁ । ତେଣୁ ଗିରିଧରଙ୍କୁ ପାଇବାପାଇଁ ମୀରା ବିଷପାନ ସ୍ୱୀକାର କରିଥିଲେ, ମାତ୍ର ମୈଥୁନ ସମ୍ବନ୍ଧ ସ୍ୱୀକାର କରି ନଥିଲେ । ତେଣୁ ଆମ୍ଭେମାନେ ଯେତେବେଳେ ଭଗବାନଙ୍କୁ ମନରେ ବସାଇବାପାଇଁ ଚାହୁଁଛେ ସେତେବେଳେ କାମ-ବାସନାକୁ ତ୍ୟାଗ କରିବା ଅତ୍ୟନ୍ତ ଯୁକ୍ତିଯୁକ୍ତ ।

ବାସ୍ତବରେ ଯଦି ଗମ୍ଭୀର ଭାବରେ ଚିନ୍ତା କରିବା ତେବେ ଜାଣି ପାରିବା ଯେ ସବୁ ଧର୍ମର କାମାଦି ପ୍ରଭୃତି ବିକାରକୁ ତ୍ୟାଗ କରିବାପାଇଁ ଆଦେଶ ରହିଛି । ବାଇବେଲରେ ଯାହାକୁ ବର୍ଜିତ ଫଳ ବୋଲି କୁହାଯାଇଛି ତାହା ହେଉଛି ଏହି 'କାମ' । ଏହିକାମ-ବିକାର ହିଁ ଶୈତାନ ବା ବିଷଧର ସର୍ପ । ଏହି ବିଷ ଫଳକୁ ଚାଖିବାବାଲା ବ୍ୟକ୍ତି ନିଜକୁ ନଗ୍ନ ଭଳି

ସ୍ତ୍ରୀ-ପୁରୁଷର ସ୍ମୃତିରେ ଆସେ ଏବଂ ସ୍ୱର୍ଗୀୟ ସୁଖକୁ ହରାଇ ବସେ । ଏଣୁ ବର୍ତ୍ତମାନ ଏହି ବିକାରକୁ ତ୍ୟାଗ କରିବା ଏକାନ୍ତ ବିଧେୟ ।

ପ୍ରଶ୍ନ—ଆଜି କେତେକ ବ୍ୟକ୍ତି କହନ୍ତି—"ଯଦି କାମ-ବାସନାକୁ ମନରୁ ଦୂରେଇ ଦିଆଯାଏ, ତେବେ ଗୃହସ୍ଥ ଜୀବନ ସମ୍ପାଦିତ ହେବ କିପରି ?

## ଗୃହସ୍ଥ ଜୀବନ କାମ-ଭୋଗ ବ୍ୟତିରେକେ ଚଳିପାରେ

ଉତ୍ତର—ଆଜି ମାନବ ତା'ର ବାସ୍ତବିକ ଗୃହକୁ ଭୁଲିବା ଫଳରେ ଏହି ପ୍ରଶ୍ନ ଆଜି ତା'ର ମାନସପଟ୍ଟରେ ଅଙ୍କୁରିତ ହେଉଛି । ମାନବର ବୁଝିବା ପ୍ରୟୋଜନ ଯେ ଆତ୍ମାର ଗୃହ ଅର୍ଥାତ୍ ଧାମ ହେଉଛି ବ୍ରହ୍ମଲୋକ । ସଂସାରରୂପୀ ରଙ୍ଗମଞ୍ଚରେ ଅଭିନୟ କରିବାପାଇଁ ଆତ୍ମା ସେଠାରୁ ଆସେ । ଏହି ସଂସାର ପ୍ରଥମେ ସ୍ୱର୍ଗ ଅଥବା ଶିବାଳୟ ( ପବିତ୍ର ଦେଶ ) ଥିଲି ଅର୍ଥାତ୍ ଏଠାରେ କାମ-ବିକାରର ନାମ ମଧ୍ୟ ନ ଥିଲି ଏବଂ ଯୋଗବଳଦ୍ୱାରା ସନ୍ତାନୋତ୍ପତ୍ତି ହେଉଥିଲି । ଯଦି ଆତ୍ମ-ମାନଙ୍କର ଘର ହେଉଛି ବ୍ରହ୍ମଲୋକ ବା ବୈକୁଣ୍ଠ ଏବଂ ବର୍ତ୍ତମାନ ସମୟର ସଂସାର ହେଉଛି ମାୟାର ବନ୍ଦୀଶାଳା, ତେବେ ଏହାକୁ କ'ଣ 'ଗୃହ' କୁହାଯାଇପାରେ ? ଗୃହସ୍ଥର ବାସ୍ତବିକ ଅର୍ଥ ହେଉଛି ବ୍ରହ୍ମଲୋକର ସ୍ଥିତିରେ ସ୍ଥିତ ହେବ ଅଥବା ବୈକୁଣ୍ଠ ( ସତ୍ୟଯୁଗୀ ଏବଂ ତ୍ରେତାଯୁଗୀ ପବିତ୍ର ସୃଷ୍ଟି ) ରେ ସ୍ଥିତ ହେବା କିମ୍ବା ତାହାର ସ୍ମୃତିରେ ମନକୁ ସ୍ଥିର କରିବା । । ଯଦି କୌଣସି ମାନବ ପରମଧାମ ଏବଂ ସ୍ୱର୍ଗକୁ ନିଜର ଗୃହ ଭାବି ତା'ର ବୁଦ୍ଧିକୁ ସଦା ସେଠାରେ ରଖେ ତେବେ ତା'ର ମନରେ ଏ ପ୍ରଶ୍ନ ଉଠି ନ ପାରେ ଯେ ଗୃହସ୍ଥିରେ ରହି ଆମେ କାମ-ବିକାରଠାରୁ କିପରି ଦୂରରେ ରହିବା ? କିନ୍ତୁ ମାୟାର ବନ୍ଦୀ-ଶାଳାରେ ରହି ଆଜିର ମନୁଷ୍ୟ ଏହି ବନ୍ଦୀଶାଳାକୁ ନିଜର ଗୃହ ବୋଲି ଭାବି ନେଇଛି ଏବଂ ଏହି ବିକାରୀ ଗୃହରେ ଅବସ୍ଥାନ କରି

ସେ ନିଜକୁ 'ଗୃହସ୍ଥ' ବୋଲି କହୁଛି । କିନ୍ତୁ ବିକାରରେ ପରିପୂର୍ଣ୍ଣ ଗୃହସ୍ଥ ବାସ୍ତବରେ ସତ୍ୟ ଗୃହ-ସ୍ଥ (ବ୍ରହ୍ମଲୋକ ଅଥବା ବୈକୁଣ୍ଠର ସ୍ୱ-ଗୃହରେ ସ୍ଥିତ ହେବା) ନୁହେଁ, ମାତ୍ର ଗ୍ରାହ-ସ୍ଥ ଅଟେ, ଅର୍ଥାତ୍ ମାୟାରୂପୀ ଗ୍ରାହର ପେଟରେ ପଡ଼ିରହିବା ସଙ୍ଗେ ସମାନ । ଯେଉଁ ମାନବ ନିଜ ଜୀବନର ଲକ୍ଷ୍ୟକୁ ପ୍ରାପ୍ତ କରିବାକୁ ଚାହୁଁଛି କିମ୍ବା ନରରୁ ଶ୍ରୀନାରାୟଣ ହେବାପାଇଁ ଚାହୁଁଛି, ତା ପକ୍ଷରେ ବ୍ରହ୍ମଚର୍ଯ୍ୟ ପାଳନ କରିବା ଏକାନ୍ତ ଆବଶ୍ୟକ ।

ହାତୀପରି ବଳବାନ ପଶୁ କାମ-ବିକାରରେ ବଶୀଭୂତ ହୋଇଥିବା ସମୟରେ ଅତି ସହଜରେ ଧରିହୁଏ । ଆପଣମାନେ ମଧ୍ୟ ଶୁଣିଥିବେ ଯେ ପ୍ରାଚୀନ କାଳରେ ହାତୀକୁ ଧରିବାପାଇଁ ଏକ ବଡ଼ ଏବଂ ଗଭୀର ଗର୍ତ୍ତ ଖୋଳାଯାଇ କାଗଜନିର୍ମିତ ଏକ 'ହାତୀଣୀ'କୁ ରଖାଯାଉଥିଲା ଏବଂ ହାତୀ କାମ-ନିଶାରେ ମାତାଲ ହୋଇ ହାତୀଣୀ ପାଖକୁ ଆସିବା ଫଳରେ ଗର୍ତ୍ତରେ ପଡ଼ିଯାଉଥିଲା ଏବଂ ତା'ପରେ ତାକୁ ବାନ୍ଧିକରି ଧରାଯାଉଥିଲା । ସେହିପରି ମନୁଷ୍ୟ ମଧ୍ୟ ଜନ୍ମ-ଜନ୍ମାନ୍ତର କାମରୂପୀ ଗର୍ତ୍ତରେ ପଡ଼ି ବିକର୍ମର ବନ୍ଧନରେ ବାନ୍ଧି ହୋଇଯାଇଛି ।

## କାମ-ନିଶା, ଭାଙ୍ଗ ମଦ-ନିଶାଠାରୁ ଅଧିକ ଖରାପ

ଆଜି ମନୁଷ୍ୟ କାମ-ବାସନାର ନିଶାରେ ଏପରି ମାତି ଯାଇଛି ଯେ ଉପରୋକ୍ତ ମାଦକ ପଦାର୍ଥ ମଧ୍ୟ ସେହି ନିଶାକୁ ଛଡ଼ାଇବା ପାଇଁ କେତେକ ସମୟରେ ବିଫଳ ହୁଅନ୍ତି । ଭାଙ୍ଗ ଏବଂ ମଦ ଇତ୍ୟାଦିର ନିଶା ହୁଏତ ଶୀଘ୍ର ଛୁଟିଯାଉଛି; କିନ୍ତୁ କାମ-ବିକାରର ନିଶା ବର୍ଷ ବର୍ଷ ଏବଂ ଜନ୍ମ-ଜନ୍ମାନ୍ତର ଧରି ମଧ୍ୟ ଛୁଟୁ ନାହିଁ । କିନ୍ତୁ ଆଶ୍ଚର୍ଯ୍ୟର କଥା ହେଉଛି ଯେ ଅନେକାନେକ ସହରରେ ନିଶା ନିବାରଣ ଉପରେ ବିଭିନ୍ନ ମଣ୍ଡଳୀ (Committee) ଗଢ଼ାଯାଇଛି ଏବଂ ସରକାର

ମନଃ ମଦ ପ୍ରଭୃତି ଉପରେ କିଛି ନା କିଛି ନିୟନ୍ତ୍ରଣ ଏବଂ ପ୍ରତିବନ୍ଧକ ବା କଟକଣା ରଖିଛନ୍ତି, ମାତ୍ର କାମ-ବିକାରରୂପୀ ନିଶାକୁ ଅବୈଧ କରାଯାଇ ନାହିଁ । ଯଦିଓ ଏହି ନିଶା ସର୍ବାପେକ୍ଷା ଅଧିକ ଦୁଃଖଦାୟୀ ତଥାପି ଦୁନିଆଁରେ ଏହାକୁ ନିଶାରୂପେ ପରିଗଣିତ କରାଯାଏ ନାହିଁ । ମାଦକ ନିଶାରେ ମନୁଷ୍ୟ ମଧ୍ୟ ଅପରାଧ କରେ ଅଥବା ଆଳସ୍ୟ କିମ୍ବା ଉନ୍ମତ୍ତତାର ବଶୀଭୂତ ହୁଏ ସତ, କିନ୍ତୁ କାମ-ନିଶାଦ୍ୱାରା ମନୁଷ୍ୟ ପାଖରେ କ୍ରୋଧ, ହିଂସା, ଦ୍ୱେଷ, ଈର୍ଷା, ଅହଙ୍କାର ଇତ୍ୟାଦି ସମସ୍ତ ବିକାର ବା ଅପରାଧ ଜନ୍ମ ନିଏ ।

ଆଜି ଲୋକେ ଯେଉଁ 'କାମ'କୁ ସୁଖର ସାଧନ ବୋଲି ଭାବୁଛନ୍ତି, ବାସ୍ତବରେ ସେହି କାମ ହିଁ ଏହି ସଂସାରକୁ ଶୁଷ୍କ କରିଦେଇଛି ଏବଂ ସୁଖ ଓ ସରସତାକୁ ନଷ୍ଟ କରିଦେଇଛି । ହଳାହଳ ବିଷଠାରୁ ଏହା ଅଧିକ ମାରାତ୍ମକ, ପରନ୍ତୁ ସଂସାରରେ ଏହି ବିଷକୁ ପିଇବାକୁ ଏବଂ ପିଆଇବାକୁ ଏକ ସୁଖର ସାଧନ ମାନିନେଇଛନ୍ତି ଏବଂ ଲୋକମାନେ 'କାମ'ର ସମ୍ବନ୍ଧ ଯୋଡ଼ିବା ପାଇଁ କ'ଣ ନ କରୁଛନ୍ତି ? ଯେଉଁ କାମ-ବିକାର ସଂସାରକୁ ନରକରେ ପରିଣତ କରିଛି ତାକୁ ଲୋକେ 'କାମ-ଦେବ' କହି ସ୍ୱାଗତ କରୁଛନ୍ତି । ଆଜି କାମର ସଙ୍କଳ୍ପ ନେଇ କୌଣସି ନାରୀକୁ ବିବାହ କରିବାପାଇଁ ଇଚ୍ଛା କରୁଥିବା ବ୍ୟକ୍ତିକୁ ଫୁଲ ଇତ୍ୟାଦିରେ ସଜାଇ ଏବଂ ଘୋଡ଼ା ଉପରେ ବସାଇ ତା'ର ପଛେ ପଛେ ଗୀତ ଗାଇ ଗାଇ ଚାଲନ୍ତି । ଏମାନେ ତ 'ସ୍ୱୟଂ'କୁ ଭୁଲି ଯାଇଛନ୍ତି ମାତ୍ର 'ବର'କୁ ସ୍ମରଣ କରି 'ସ୍ୱୟଂ-ବର' କରିବାରେ ଲାଗିଛନ୍ତି । ଆଜିର ବଧୂ ଏବଂ ବର ସତ୍ୟଯୁଗୀ ଶ୍ରୀଲକ୍ଷ୍ମୀ ଏବଂ ଶ୍ରୀନାରାୟଣ ସଦୃଶ୍ୟ ନ ହୋଇ ସେମାନଙ୍କ ଜାଗାରେ 'କୁଲକ୍ଷଣୀ' ଏବଂ 'କାମାୟଣ'— ରୂପେ ତାଙ୍କର କର୍ତ୍ତବ୍ୟ ସମ୍ପାଦନ କରୁଛନ୍ତି । ଏମାନେ ବର (ଶ୍ରେଷ୍ଠ) ଭାବକୁ ପରିତ୍ୟାଗ କରି ନିକୃଷ୍ଟ ଭାବ ( କାମ-ବାସନା )କୁ ଜୀବନରେ ଧାରଣା କରୁଛନ୍ତି । ଏଣୁକରି ବର୍ତ୍ତମାନ କାମ-ବାସନାରୂପୀ ତରବାରି-ଦ୍ୱାରା ଘରେ ଘରେ ରକ୍ତପାତ ହେଉଛି । ତେଣୁ ପରମପିତା

ପରମାତ୍ମା ଶିବ କହୁଛନ୍ତି—"ହେ ସନ୍ତାନଗଣ, ବର୍ତ୍ତମାନ କାମରୂପୀ କୁଠାରଘାତରୁ ନିବୃତ୍ତ ହୁଅ । ଏହି ଜୀବଘାତ, ଆତ୍ମାଘାତ, ଅର୍ଥାତ୍ କାମରୂପୀ ତରବାରିଦ୍ୱାରା ଅନ୍ୟକୁ ବଧ କରିବା ମଧ୍ୟ ବନ୍ଦ କର । ବର୍ତ୍ତିମାନ ପବିତ୍ର ସତ୍ୟଯୁଗୀ ଏବଂ ଦୈବୀ ଦୁନିଆଁର ପୁନର୍ସ୍ଥାପନା କରିବାପାଇଁ ମୁଁ ଅବତରିତ ହୋଇପାରିଛି । ଏଣୁ 'କାମ'କୁ ଦେବତା ନ ମାନି ସ୍ୱୟଂକୁ ଦେବତାରୂପେ ଗଢ଼, ଅର୍ଥାତ୍ ଏହି କାମରୂପୀ ଦାନବ-ଭାବକୁ ତ୍ୟାଗ କର । ସର୍ବଦା ଏହି 'ସ୍ଲୋଗାନ'କୁ ମନରେ ରଖ ଯେ "କାମ ହିଁ ହାରାମ", ଯାହା ଫଳରେ ଜୀବନ ଆରାମ ହୋଇପାରିବ ଅର୍ଥାତ୍ ଆପଣଙ୍କୁ ଜୀବନ-ମୁକ୍ତି ପ୍ରାପ୍ତ ହୋଇପାରିବ ।

ଏଣୁ ଯଦି ମନରେ ଅଶୁଦ୍ଧ ସଂକଳ୍ପ ଉତ୍ପତ୍ତି ହେଉଛି ବୋଲି ଅନୁଭବ କରୁଛନ୍ତି ତେବେ ଭାବନ୍ତୁ ଯେ ଆପଣ ଠିକ୍ ରାସ୍ତା ଉପରେ ଅଛନ୍ତି । କାରଣ ଜ୍ଞାନ-ଯୋଗ ମାର୍ଗରେ ଏସବୁ ଆସେ । ମାତ୍ର ବର୍ତ୍ତିମାନ ଏସବୁ ସଂକଳ୍ପକୁ ଚିରଦିନ ପାଇଁ ବିଦାୟ ଦେବାପାଇଁ ଶୀଘ୍ର ଶୀଘ୍ର ପୁରୁଷାର୍ଥ କରିବା ଦରକାର । ଜ୍ଞାନ-ଯୋଗ ମାର୍ଗ ହିଁ ହେଉଛି ମାୟା ସହିତ ଯୁଦ୍ଧ କରିବା ମାର୍ଗ । ଏହି ହେତୁରୁ ମାୟାର ବିଘ୍ନ ଆସିବା ସ୍ୱାଭାବିକ, ମାତ୍ର ଜ୍ଞାନ-ବଳ ଏବଂ ଯୋଗ-ବଳଦ୍ୱାରା ତା' ଉପରେ ବିଜୟପ୍ରାପ୍ତ କରିବା ହେଉଛି ଆମର କାମ । ଏହିସବୁ ବିଘ୍ନକୁ ଅତିକ୍ରମ କରିବା ହେଉଛି ଆଧ୍ୟାତ୍ମିକ ମାର୍ଗରେ ଅଗ୍ରସର ହେବା । ଯଦି ଏହିସବୁ ସଂକଳ୍ପ-ବିକଳ୍ପ ନ ଆସେ ତେବେ ଆମ୍ଭେମାନେ କିପରି ଜାଣିବା ଯେ କେଉଁ ଖରାପ ସଂସ୍କାର କେତେ ଦୃଢ଼ ଏବଂ ତାକୁ ବିଦାୟ ଦେବାପାଇଁ କେଉଁଭଳି ପ୍ରଯତ୍ନ ଆବଶ୍ୟକ ? ତେଣୁ ଏଥିରେ ହତୋତ୍ସାହିତ ନ ହୋଇ ଏସବୁକୁ ଜୀବନରୂପୀ ପରୀକ୍ଷାର ପ୍ରଶ୍ନ-ପତ୍ର ଭାବି ସେଥିରେ କୃତକାର୍ଯ୍ୟ ହେବାପାଇଁ ତୀବ୍ର ପୁରୁଷାର୍ଥ କରିବା ବିଧେୟ ।

ପବନର ତୀବ୍ରତା ନୌକାର ଗତିକୁ ମଧ୍ୟ ତୀବ୍ର କରିଦିଏ, ମାତ୍ର ଏଥିରେ ସର୍ତ୍ତ ହେଉଛି ଯେ ନୌକାର ନାବିକ ସମର୍ଥ ହୋଇଥିବା

ଏକାନ୍ତ ଆବଶ୍ୟକ, ଯାହା ଫଳରେ ସେ ନୌକାକୁ ସଠିକ୍‌ଭାବେ ନିୟନ୍ତ୍ରଣ କରିପାରିବ । ଆପଣ ତ ଆପଣଙ୍କ ଜୀବନରୂପୀ ନୌକାର ସର୍ବ-ସମର୍ଥ ନାବିକରୂପେ ପରମପିତା ପରମାତ୍ମାଙ୍କୁ ବାଛି ନେଇଛନ୍ତି । ତେଣୁ କୌଣସି ବିପଦରେ ଅଧୀର ହେବା ଆପଣଙ୍କ ପକ୍ଷେ ଅନାବଶ୍ୟକ । ହଁ, ସାବଧାନ ହୋଇ ପୂର୍ଣ୍ଣଭାବେ ପୁରୁଷାର୍ଥ କରିବା ଆବଶ୍ୟକ ।

**ପ୍ରଶ୍ନ**—ଭଉଣୀ, ଏସବୁ କଥା ଶୁଣିବାପରେ ବାସ୍ତବରେ ବହୁତ ଉତ୍ସାହ ମିଳୁଛି । ମୁଁ ଏପରି ଏକ ରାସ୍ତା ଖୋଜୁଥିଲି ଯେଉଁ ରାସ୍ତାର ପଥିକ ହୋଇ ମନେ ଏସବୁ ବିକାରକୁ ତ୍ୟାଗକରି ଭବିଷ୍ୟତରେ ପୂର୍ଣ୍ଣ ସୁଖ-ଶାନ୍ତି ପାଇପାରିବ । ଗୋଟିଏ ପକ୍ଷରେ ଭକ୍ତି ଓ ପ୍ରାର୍ଥନା କରିବା ଏବଂ ଅନ୍ୟ ପକ୍ଷରେ ବିକାରର ଦାସ ହୋଇ ରହିବାକୁ ମୁଁ ପସନ୍ଦ କରେ ନାହିଁ । ନଅ ଶହ ମୂଷାଙ୍କୁ ଖାଇକରି ବିରାଡ଼ି କ୍ଷମାଭିକ୍ଷା କରିବା ଭଳି ମନୁଷ୍ୟ ଦିନସାରା ପାପ କରୁଛି ଏବଂ ତା' ପରଦିନ ତା'ର ପାପକୁ ହରଣ କରିବାପାଇଁ ଏବଂ କାମ-ବାସନାରୁ ରକ୍ଷା ପାଇବାପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଛି; ତାହା ଏକାନ୍ତ ଅଶୋଭନୀୟ ଏବଂ ଏପରି ଜୀବନକୁ ମୁଁ ମଧ୍ୟ ପସନ୍ଦ କରେ ନାହିଁ । ଏଣୁ ଏହିସବୁ ବିକାର ସହିତ ଯୁଦ୍ଧ କରିବା ମାର୍ଗକୁ ହିଁ ମୁଁ ପୂର୍ଣ୍ଣପ୍ରାଣରେ ସମର୍ଥନ କରେ । ବର୍ତ୍ତମାନ ଆପଣ ମୋତେ କୁହନ୍ତୁ ଯେ ମନକୁ ପବିତ୍ର କରିବାପାଇଁ ଶିବବାବା କେଉଁ କେଉଁ ଯୁକ୍ତି ଉପସ୍ଥାପନା କରିଛନ୍ତି ?

**ଉତ୍ତର**—ବାସ୍ତବରେ ଜୀବନକୁ ଉଚ୍ଚ ଏବଂ ଶ୍ରେଷ୍ଠ କରି ଗଢ଼ିବା ପାଇଁ ପରମପିତା ପରମାତ୍ମା ଶିବ ଈଶ୍ୱରୀୟ ଜ୍ଞାନ ଦେଇଛନ୍ତି । ଏପରି ସବୁ ଯୁକ୍ତି ମଧ୍ୟ ରହିଛି ଯାହାକୁ ଜୀବନରେ ଧାରଣା କଲେ ମନ, ବାଣୀ ଏବଂ କର୍ମ ପୂର୍ଣ୍ଣତଃ ପବିତ୍ର ହୋଇପାରିବ । ନିଜର ଅନୁଭବ ଆଧାରରେ ସେଥିରୁ କେତେକ ଯୁକ୍ତି ଆପଣଙ୍କୁ ବତାଉଛି । ସର୍ବପ୍ରଥମେ ଦୃଷ୍ଟି ଏବଂ ବୃତ୍ତିକୁ ଶୁଦ୍ଧ କରିବା ଏକାନ୍ତ ଆବଶ୍ୟକ, କାରଣ କାମ-ବିକାର ଯୋଗୀର ମହାଶତ୍ରୁ ।

କାମ ବିକାର ମନୁଷ୍ୟକୁ ପବିତ୍ରରୁ ପତିତ କରାଏ ଅର୍ଥାତ୍ ଆକାଶରୁ ଖସାଇ ନାଲି ନର୍ଦ୍ଦମାରେ ପକାଏ । ଈଶ୍ୱରୀୟ ଆନନ୍ଦ ଏବଂ ଆତ୍ମିକ ସୁଖରୂପୀ ଅମୂଲ୍ୟ ଖଜଣାର ଲୁଣ୍ଠନକାରୀ ଏବଂ ଦେବୀ ପଦବୀକୁ ଛଡ଼ାଇ ନେବାବାଲା ମହାଶତ୍ରୁ ହେଉଛି ଏହି 'କାମ' । ଏଣୁ ଲଲାଟପଟରେ ଏହା ଲେଖି ରଖିବା ଯୋଗ୍ୟ ଯେ ଈଶ୍ୱରଙ୍କ ସଙ୍ଗ ଲଭ କରିବା ପରେ ଯଦି ମାନବ 'କାମ', ବାସନା ଭୋଗ କରେ ତେବେ ତା'ର ମାନସିକ ଅବସ୍ଥାର ଏପରି ଅଧୋଗତି ହୁଏ ଯେ ତାକୁ ପୁନର୍ବାର 'ଯୋଗ'ର ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ବହୁତ ସମୟ ଧରି ତୀବ୍ର ପୁରୁଷାର୍ଥ କରିବାକୁ ପଡ଼େ, ତେଣୁ ସର୍ବପ୍ରଥମେ ଦୃଷ୍ଟି ଏବଂ ବୃତ୍ତିକୁ ପବିତ୍ର କରିବା ଏକାନ୍ତ ଆବଶ୍ୟକ । ଯଦି ଯୋଗାଭ୍ୟାସ କରୁଥିବା ବ୍ୟକ୍ତି ଜ୍ଞାନନେତ୍ର ଅବସ୍ଥାକୁ ସଦା ଧାରଣ କରେ ତେବେ ତା'ର ଆଖି ତାକୁ ଧୋକା ଦେବେ ନାହିଁ କିମ୍ବା ତା'ର ବୃତ୍ତି ଦେହର ରୂପରଙ୍ଗରେ ଆବଦ୍ଧ ବା ଆକୃଷ୍ଟ ହୁଏନା । ଆଖିଦ୍ୱାରା ଅପରାଧ ନ କରିବା ପାଇଁ ଜ୍ଞାନ ଏବଂ ବ୍ରହ୍ମଚର୍ଯ୍ୟର ମୂଳଦୁଆକୁ ବର୍ତ୍ତମାନ ଅଧିକ ମଜଭୁତ କରିବା ଆବଶ୍ୟକ ।

**ପ୍ରଶ୍ନ** – ହଁ, ଉପରୋକ୍ତ ତଥ୍ୟ ତ ଠିକ୍ । ବ୍ରହ୍ମଚର୍ଯ୍ୟର ନିୟମ ମୁଁ କର୍ମରେ ପାଳନ କରୁଛି, ମାତ୍ର ଏପରି ଅବସ୍ଥା ପ୍ରାପ୍ତ କରିବାକୁ ମୁଁ ଚାହୁଁଛି ଯେପରିକି ମୋର ଦୃଷ୍ଟି ଓ ବୃତ୍ତି ନିରନ୍ତର ଶୁଦ୍ଧ ରହିବ । ମୁଁ ମୋର ମନକୁ ସମ୍ପୂର୍ଣ୍ଣ ପବିତ୍ର କରିବାକୁ ଚାହେଁ, ମାତ୍ର ଘର-ଗୃହସ୍ଥର ବାତାବରଣରେ ରହିବା ଫଳରେ ଅଶୁଦ୍ଧ ସଙ୍କଳ୍ପ ସୃଷ୍ଟି ଉତ୍ପନ୍ନ ହେଉଛି । ଏହାର ସମାଧାନର ଉପାୟ କ'ଣ ?

## ବାତାବରଣକୁ ଠିକ୍ ରଖିବାପାଇଁ ଶିବ ପରମାତ୍ମା ଏବଂ ଦେବୀଦେବତାଙ୍କର ଚିତ୍ର

**ଉତ୍ତର**—ବାତାବରଣକୁ ଠିକ୍ ରଖିବା ହେଉଛି ଆପଣଙ୍କ ହାତର କଥା । ଆପଣଙ୍କ ଘରେ ଆପଣ ଶ୍ରୀଲକ୍ଷ୍ମୀ, ଶ୍ରୀ ନାରାୟଣ, ପରମପିତା ପରମାତ୍ମା ଶିବ ଏବଂ ତାଙ୍କର ଦୈବୀ ରଚନା ( ବ୍ରହ୍ମା, ବିଷ୍ଣୁ ଏବଂ ଶଙ୍କର )

ଏବଂ ଯୋଗାଭ୍ୟାସ ଇତ୍ୟାଦିର ବିଭିନ୍ନ ଚିତ୍ର ଲଗାନ୍ତୁ । ଏତଦ୍‌ବ୍ୟତୀତ ବର୍ତ୍ତମାନ ଏହି ଭାବନାରେ ରହନ୍ତୁ ଯେ ଏହି ଗୃହ ପୂର୍ବଭଳି ଏକ ଅପବିତ୍ର ଗୃହ ନୁହେଁ ବରଂ ଏକ ପ୍ରକୃତ ମନ୍ଦିର ଯେଉଁଠାରେ କି ଭଗବାନ ତଥା ଦେବୀଦେବତାଙ୍କର ଚିତ୍ର ରହିଛି । ତେଣୁ ଏଠାରେ ଅଶୁଦ୍ଧ ସଂକଳ୍ପ ଆଣିବା ଅନୁଚିତ । ବର୍ତ୍ତମାନ ଆପଣ ଜ୍ଞାନବାନ ଏବଂ ଯୋଗାଭ୍ୟାସୀ, ତେଣୁ ଘରକୁ ଘର ନ ଭାବି ଆଶ୍ରମ ଭାବିବା ଉଚିତ । ଆଜି ପର୍ଯ୍ୟନ୍ତ ଆପଣ ଏହାକୁ ଘର ଭାବୁଥିବା ଦୃଷ୍ଟିରୁ ବାସନା ଉତ୍ପନ୍ନ ହେଉଥିଲା, ମାତ୍ର ବର୍ତ୍ତମାନ ସ୍ୱୟଂ ଭଗବାନଙ୍କର ନିମିତ୍ତ ( Trustee ) ବୋଲି ନିଷ୍ଠୟ ବୁଦ୍ଧି ହେବା ଉଚିତ । ବାସ୍ତବରେ ଏ ସବୁକିଛି ହେଉଛି ଶିବବାବାଙ୍କର ଏବଂ ଆମ୍ଭେମାନେ ଏହାକୁ ତଦାରଖ କରିବା ପାଇଁ ନିମିତ୍ତ । ଆମ୍ଭମାନଙ୍କର ଆଦର୍ଶ ଜୀବନକୁ ଦେଖି ଅନ୍ୟମାନେ ପ୍ରେରଣା ପାଇବେ ଏବଂ ଖୁସିରେ ଆମ୍ଭମାନଙ୍କ ବିଷୟରେ କହିବେ ଯେ ଈଶ୍ୱରୀୟ ଜ୍ଞାନଲାଭ କରିଥିବା ଜୀବନର ଏହା ଏକ ନମୁନା । ଯଦି ଆପଣ ଆପଣଙ୍କର ଘରକୁ 'ଆଶ୍ରମ' ଭାବିବେ ଏବଂ ଚିତ୍ରଗୁଡ଼ିକୁ ଦେଖି ସ୍ମରଣ କରିବେ ଯେ—"ମୁଁ ହେଉଛି ଶ୍ରୀଲକ୍ଷ୍ମୀ ଏବଂ ଶ୍ରୀନାରାୟଣଙ୍କର ବଂଶଜ, ଏଣୁକରି ମୁଁ ପବିତ୍ର ଏବଂ ଦୈବୀକର୍ମହିଁ କରିବି; ଆସୁରୀ ଅଥବା ଅପବିତ୍ର କର୍ମ କରିବି ନାହିଁ, କାରଣ ମୁଁ ପତିତପାବନ ଶିବ ପରମାତ୍ମାଙ୍କର ସନ୍ତାନ ଅଟେ ଏବଂ ଅନ୍ୟ ପତିତ ଆତ୍ମାକୁ ପାବନ କରିବା ହେଉଛି ମୋର ସର୍ବଶ୍ରେଷ୍ଠ ସେବା ।" "ତେବେ ସ୍ୱୟଂକୁ ପତିତ କରିବାପାଇଁ କୌଣସି ସଂକଳ୍ପ ମଧ୍ୟ ଆସିବ ନାହିଁ ।"

ଏତଦ୍‌ବ୍ୟତୀତ ଘରେ ଚଳଚ୍ଚିତ୍ର ଅଭିନେତା ଏବଂ ଅଭିନେତ୍ରୀ ତଥା ଦେବୀ-ଦେବତାମାନଙ୍କର ଗ୍ଲାନି ସମ୍ବନ୍ଧୀୟ କୌଣସି ଚିତ୍ର ରଖିବା ଉଚିତ ନୁହେଁ । କାରଣ ମନୁଷ୍ୟ ମନରେ ଏସବୁ ଚିତ୍ରର ଖରାପ ପ୍ରଭାବ ପଡ଼େ । ବାସ୍ତବରେ ଦେବୀ-ଦେବତାମାନଙ୍କ ଉପରେ ବାସନା-ଭୋଗର କଳଙ୍କ ଲେପନ କରିବା ଫଳରେ ଭାରତର ଆଜି ପତନ ଘଟିଛି ଏବଂ ମନୁଷ୍ୟ ସମ୍ମୁଖରେ କୌଣସି ଉଚ୍ଚ ଆଦର୍ଶ ମଧ୍ୟ ଆଜି ନାହିଁ । ତେଣୁ ବର୍ତ୍ତମାନ ସୁନ୍ଦର ଏବଂ ପ୍ରେରଣାଦାୟକ ଚିତ୍ର ଲଗାଇବା ଏକାନ୍ତ ବିଧେୟ । ମନୁଷ୍ୟ

ଜୀବନର ଯାହା ଲକ୍ଷ୍ୟ, ତଦନୁଯାୟୀ ଚରିତ୍ର ଗଢ଼ିବା ଉଚିତ । ଖରାପ ଲକ୍ଷ୍ୟ ରଖିବା ଫଳରେ ଜୀବନରେ ଖରାପ ଲକ୍ଷଣ ମଧ୍ୟ ପ୍ରତିଫଳିତ ହୁଏ । ତେଣୁ ଶ୍ରେଷ୍ଠ ଲକ୍ଷ୍ୟ ( ଦେବ-ପଦ ) ସମ୍ମୁଖରେ ରଖି ଉଚ୍ଚ ଲକ୍ଷଣ ଜୀବନରେ ଧାରଣା କରିବା ଉଚିତ ।

ଉପରୋକ୍ତ ଯୁକ୍ତିରୁ ଯଦିଓ ସହାୟତା ମିଳିବ ତଥାପି ଜୀବନରେ ସମ୍ପୂର୍ଣ୍ଣ ଲାଭ ପାଇବାପାଇଁ ଆପଣ ଶାରୀରିକ-ଦୃଷ୍ଟିକୁ ତ୍ୟାଗକରି ଆତ୍ମିକ ଦୃଷ୍ଟିକୁ ଧାରଣା କରିବା ପାଇଁ ସର୍ବଦା ପୁରୁଷାର୍ଥ କରନ୍ତୁ । ସର୍ବଦା ସ୍ୱୟଂକୁ ଆତ୍ମା ବୋଲି ଅନୁଭବ କରନ୍ତୁ ଏବଂ ଅନ୍ୟ ସମସ୍ତଙ୍କୁ ମଧ୍ୟ ଆତ୍ମା ଭାବି ସେମାନଙ୍କ ସହିତ ବାକ୍ୟାଳାପ ଏବଂ ଆଚାର-ବ୍ୟବହାର କରନ୍ତୁ । ଆପଣ ସେମାନଙ୍କ ଶରୀରକୁ ଦେଖି ମଧ୍ୟ ନ ଦେଖିଲା ଭଳି ଅନୁଭବ କରନ୍ତୁ । ସମସ୍ତଙ୍କ ଭ୍ରୂକୁଟୀ ମଧ୍ୟରେ ବାସ କରୁଥିବା ଜ୍ୟୋତିବିନ୍ଦୁ ଆତ୍ମାକୁ ହିଁ ଦେଖନ୍ତୁ ଏବଂ ନିଜ ବିଷୟରେ ଆପଣ ଏହା ସ୍ମରଣ ରଖନ୍ତୁ ଯେ— "ମୁଖଦ୍ୱାରା ମୁଁ ଆତ୍ମା କହୁଛି, ଆଖିଦ୍ୱାରା ମୁଁ ଆତ୍ମା ଦେଖୁଛି ଇତ୍ୟାଦି ଇତ୍ୟାଦି ।" ଯଦି ଆପଣଙ୍କ ବୁଦ୍ଧି ଅଥବା ସ୍ମୃତିରେ ସର୍ବଦା ଆତ୍ମିକ-ଭାବନା ରହେ ତେବେ ଆପଣଙ୍କ ଦୃଷ୍ଟି ଏବଂ ବୃତ୍ତି ଅପରାଧୀ (Criminal) କିମ୍ବା ଅଶୁଦ୍ଧ ହୋଇ ନ ପାରେ, କାରଣ ଆତ୍ମିକ ଦୃଷ୍ଟି ଯୋଗୁଁ ଆପଣଙ୍କ ମନରେ ଏହି ଭାବନା ଆସିବ ଯେ ସମସ୍ତେ ଏକ ପରମପିତା ପରମାତ୍ମାଙ୍କର ସନ୍ତାନ ଏବଂ ପରସ୍ପର ଭାଇ-ଭାଇ ଏବଂ ଭାଇ ଭାଇ ସମ୍ବନ୍ଧରେ କାମ-ଭୋଗର ସଂକଳ୍ପ ମଧ୍ୟ ଉତ୍ପନ୍ନ ହୋଇ ନ ପାରେ ।

ଉଦାହରଣସ୍ୱରୂପ, ଯଦି କୌଣସି ପତି-ପତ୍ନୀ ମନ୍ଦିରକୁ ଯାଆନ୍ତି ତେବେ ପରମପିତା ପରମାତ୍ମା ଶିବଙ୍କର ମୂର୍ତ୍ତି ସମ୍ମୁଖରେ ଦଣ୍ଡାୟମାନ ହୋଇ କହନ୍ତି—"ତ୍ୱମେବ ମାତା ଚ ପିତା ତ୍ୱମେବ...." ଅଥବା 'ତୁମେ ହିଁ ପିତା ମାତା-ସହାୟକ-ସ୍ୱାମୀ-ସଖା...." । ପତ୍ନୀ କହେ—"ହେ ଭଗବାନ ! ଆପଣ ଆମ୍ଭର ପିତା"; ପତି କହେ—"ଆପଣ ହିଁ

ଆମ୍ଭର ପିତା ।'' ଏଥିରୁ ସ୍ପଷ୍ଟ ହୁଏ ଯେ ଆତ୍ମିକ ସମ୍ବନ୍ଧରେ ଦୁହେଁ ଏକ ପରମପିତା ପରମାତ୍ମାଙ୍କର ସନ୍ତାନ, ମାତ୍ର ଶାରୀରିକ ସମ୍ବନ୍ଧରେ ପତିର ପିତା, ପତ୍ନୀର ଶ୍ୱଶୁର ରୂପେ ବିବେଚିତ । ଯେତେ ସମୟ ଧରି ସେମାନେ ଆତ୍ମିକ ସମ୍ବନ୍ଧରେ ରହିବେ ସେତେ ସମୟ ପର୍ଯ୍ୟନ୍ତ ସେମାନଙ୍କୁ କାମ-ବିକାରର ସଙ୍କଳ୍ପ ମଧ୍ୟ ସ୍ପର୍ଶ କରି ନ ପାରେ । ତେଣୁ ମନ୍ଦିରରେ କୌଣସି ଅପବିତ୍ର ସଙ୍କଳ୍ପ ଜାଗ୍ରତ ନ ହେବାର ଏହାହିଁ ହେଉଛି ଏକମାତ୍ର କାରଣ । ଏଣୁ ଏଥିରୁ ସ୍ପଷ୍ଟ ଅନୁମେୟ ହୁଏ ଯେ ଘରେ ମଧ୍ୟ ଆପଣ ଅନ୍ୟକୁ ଯେପର୍ଯ୍ୟନ୍ତ ଆତ୍ମିକ ଦୃଷ୍ଟିରେ ଦେଖିନାହାନ୍ତି ଏବଂ ସ୍ୱୟଂକୁ ମଧ୍ୟ ଆତ୍ମା-ନିଷ୍ଠସ୍ଥ ( Soul-consciousness ) ସ୍ଥିତିରେ ସ୍ଥିତ କରିନାହାନ୍ତି, ସେପର୍ଯ୍ୟନ୍ତ ଦୃଷ୍ଟି ଏବଂ ବୃତ୍ତି ନିର୍ଦ୍ଦୋଷ ( Civil ) ହେବ ନାହିଁ, ବରଂ କ୍ରମଶଃ ବିଶେଷ ଅପରାଧୀ ହୋଇ ଗତି କରିବ ।

ଏହି ଆତ୍ମିକ-ସ୍ମୃତିରୂପୀ ତିଳକକୁ ମଥିରେ ମଥିରେ ପୋଛି ସଦା ଲଗାଇ ରଖିବା ଉଚିତ । ଭକ୍ତମାନେ ମନ୍ଦିରକୁ ଯାଇ ଭ୍ରୂକୁଟୀରେ ଯେଉଁ ତିଳକ ଲଗାନ୍ତି ସେ ତା' ପରଦିନକୁ ଲିଭିଯାଇଥାଏ, ମାତ୍ର ଜ୍ଞାନରୂପୀ ଚନ୍ଦନଦ୍ୱାରା ଆପଣ ଯେଉଁ ତିଳକ ଲଗାଇଛନ୍ତି ତାକୁ ସବୁକାଳ ପାଇଁ ସତେଜ ରଖନ୍ତୁ ଅର୍ଥାତ୍ ସ୍ମରଣ ରଖନ୍ତୁ ସେ ଭ୍ରୂକୁଟୀରେ ବାସ କରୁଥିବା ଆପଣ ଏକ ଚେତନ ଆତ୍ମା ।

ଆପଣ ତ ବାସ୍ତବରେ ଆତ୍ମା । ତେଣୁ ଆପଣଙ୍କୁ ନିଜର ସ୍ୱରୂପରେ ସଦା ସ୍ଥିର ହୋଇ ରହିବା ଉଚିତ । ଚାଲିବା-ବୁଲିବା ଏବଂ ବସି-ଉଠିବା ସମୟରେ ସ୍ମରଣ କରନ୍ତୁ ଯେ 'ମୁଁ ଏକ ପ୍ରକାଶମୟ ତାରା; ଚେତନ, ଅନାଦି ଏବଂ ଅବିନାଶୀ ଅଟେ; ମୋଠାରୁ ପବିତ୍ରତା, ପ୍ରକାଶ ତଥା ଶାନ୍ତିର କିରଣ ବିଚ୍ଛୁରିତ ହେଉଛି ।' ଏହି ତିଳକକୁ ସଦା ଅଲିଭା ରଖନ୍ତୁ ।

## ସ୍ଥୂଳ ନେତ୍ର ସହିତ ଜ୍ଞାନ-ନେତ୍ର ମଧ୍ୟ ଖୋଲ ରଖନ୍ତୁ

ପ୍ରାୟ ସମସ୍ତେ ଜାଣନ୍ତି ଯେ ପବିତ୍ର ହେବା ପାଇଁ ସୁରଦାସ ତାଙ୍କର ଚକ୍ଷୁଦ୍ୱୟକୁ ଛୁଞ୍ଚିଦ୍ୱାରା ଡାଙ୍ଗି ଦେଇଥିଲେ ଏବଂ ଏ ସମ୍ବନ୍ଧରେ ତାଙ୍କର ଏହି ଧାରଣା ଥିଲା ଯେ "ଆଖି ରହିବ ନାହିଁ କି ଧୋକା ଖାଇବ ନାହିଁ ।" ମାତ୍ର ବାସ୍ତବରେ ଆଖିର ଏଥିରେ କୌଣସି ଦୋଷ ନାହିଁ । ଦୋଷ ହେଉଛି ଦେହ-ଅଭିମାନର । ତେଣୁ ଜ୍ଞାନରୂପୀ ଛୁଞ୍ଚି-ଦ୍ୱାରା ଦେହ-ଅଭିମାନକୁ ଦୂର କରିବା ଦରକାର । ଏଥିରେ ମଧ ବିଶେଷ କଷ୍ଟ ନାହିଁ ।

ଲୋକେ ମଧ୍ୟ କହନ୍ତି ଯେ ଶିବ ତାଙ୍କର ତୃତୀୟ ନେତ୍ର ଖୋଲିବା ସଙ୍ଗେ ସଙ୍ଗେ 'କାମ' ଭସ୍ମୀଭୂତ ହୋଇଥିଲା । ବାସ୍ତବରେ ଏ ଯୁକ୍ତି ଆମ୍ଭମାନଙ୍କ ପକ୍ଷରେ ଅତି ଅମୂଲ୍ୟ ଅଟେ । ଆମ୍ଭେ ଆତ୍ମାମାନେ ଶିବ-ବଂଶୀ ଅର୍ଥାତ୍ ପରମପିତା ପରମାତ୍ମା ଶିବଙ୍କର ସନ୍ତାନ । ଯଦି ଆମ୍ଭମାନଙ୍କର ଜ୍ଞାନ-ନେତ୍ର ଅର୍ଥାତ୍ ତୃତୀୟ-ନେତ୍ର ଖୋଲି ରହେ ତେବେ 'କାମ' ନିଶ୍ଚୟ ଭସ୍ମ ହୋଇଯିବ । ଯଦି ଆମ୍ଭେମାନେ ଜ୍ଞାନ-ନେତ୍ରକୁ ବନ୍ଦ କରିଦେବା, ତେବେ ଆମର ଦୃଷ୍ଟି ଆମକୁ ଧୋକା ନିଶ୍ଚୟ ଦେବ—ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ପ୍ରଶ୍ନ—ତୃତୀୟ ନେତ୍ରକୁ ପ୍ରୟୋଗ କରିବାର ଉଦ୍ଦେଶ୍ୟ ହେଉଛି ସଦା ଆତ୍ମିକ ଦୃଷ୍ଟିରେ ଦେଖିବା । ମାତ୍ର ସାରା ଦିନ ଦୈହିକ ଏବଂ ଲୌକିକ କର୍ମରେ ବ୍ୟସ୍ତ ରହିବାଦ୍ୱାରା ପୁନଃ ପୁନଃ ଦୈହିକ ଦୃଷ୍ଟି ସ୍ୱତଃ ଚାଲି ଆସୁଛି, ଫଳରେ ଧୋକା ଖାଇବାକୁ ପଡ଼ୁଛି ଏବଂ ବାରମ୍ବାର ଆତ୍ମା ସମ୍ମୁଖକୁ ଆସିବା ପରିବର୍ତ୍ତେ ଶରୀର ଆସିଯାଉଛି । ତେଣୁ ଏହାର ନିବାରଣର ଉପାୟ କ'ଣ ?

# ଶରୀରର ବାସ୍ତବତାକୁ ସ୍ମରଣ କରନ୍ତୁ

**ବ୍ରହ୍ମାକୁମାରୀ**--ଅଚ୍ଛା, ଯଦି ଶରୀର ହିଁ ସମ୍ମୁଖକୁ ଆସୁଛି ତେବେ ଶରୀରର ବାସ୍ତବତାକୁ ସମ୍ମୁଖକୁ ଆଣନ୍ତୁ । ଶରୀରର ଆଭ୍ୟନ୍ତରୀଣ ଅବସ୍ଥା ପ୍ରତି କିଛି ଧ୍ୟାନ ଦିଅନ୍ତୁ । ଶରୀରକୁ ଦେଖିବା ସମୟରେ ଆପଣଙ୍କ ମନରେ ଏହି ବିଚାର ଆସିବା ଉଚିତ ଯେ—ଏହା 'ଅସ୍ଥି'ର ଏକ ପିଞ୍ଜରା ଅଥବା ମାଂସର ଏକ ପିତୁଳା ଅଟେ । ଏହା ତ କଳିଯୁଗୀ, ରୋଗଗ୍ରସ୍ତ ଏବଂ ମିଥ୍ୟା ଶରୀର ଅଟେ ଏବଂ କଳିଯୁଗର ତମୋ-ଗୁଣୀ ତତ୍ତ୍ୱଦ୍ୱାରା ନିର୍ମିତ । ଏହା କାମ ବାସନା ଅଥବା 'ବିଷୟ'-ଦ୍ୱାରା ଜନ୍ମ ନେଇଛି । ଏହା ମଧ୍ୟରେ, କଫ, ରକ୍ତ, ବିଷ୍ଠା, ମଇଳା ଇତ୍ୟାଦିର ଶ୍ରେଷ୍ଠ ଶ୍ରେଷ୍ଠ ନଦୀ ଉପନଦୀ ବହୁଛି ଏବଂ ଅସଂଖ୍ୟ ଜୀବାଣୁ ଏଥିରେ ପରିପୂର୍ଣ୍ଣ ହୋଇ ରହିଛନ୍ତି । ମାତ୍ର ଏହାର ଉପରିଭାଗ ଚର୍ମ-ଦ୍ୱାରା ଆଚ୍ଛାଦିତ ହୋଇଥିବାରୁ ଏହାର ଆଭ୍ୟନ୍ତରୀଣ ଦୃଶ୍ୟ ସ୍ଥୂଳ ଦୃଷ୍ଟିରୁ ଲୁଚି ରହିଛି । ଏଣୁକରି ଏପରି ରକ୍ତମାଂସର ଶରୀର ପ୍ରତି ଆକର୍ଷିତ ହୋଇ ପତିତ ହେବା କେବଳ ମୂର୍ଖତା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି କଳିଯୁଗୀ, ବିକାରୀ, ମିଥ୍ୟା ଚମଡ଼ା ଅର୍ଥାତ୍ ମାଟିର ପିତୁଳାଦ୍ୱାରା ଆକର୍ଷିତ ହୋଇ ପତିତ ହେବାର ଅର୍ଥ ହେଉଛି ନିଜ ଆଖିରେ ପଟି ବାନ୍ଧି ଏକ ବିଷପୂର୍ଣ୍ଣ ଗର୍ତ୍ତ ମଧ୍ୟରେ ପ୍ରବେଶ କରିବା । ଏହାର ଯେଉଁ ରୂପ ଲାବଣ୍ୟ ଅଥବା ରଙ୍ଗ-ଢଙ୍ଗ ମୋତେ ଆକର୍ଷିତ କରୁଛି, ସେସବୁ ବାସ୍ତବରେ କ୍ଷଣଭଙ୍ଗୁର ଏବଂ ପରିବର୍ତ୍ତନଶୀଳ । ଏଣୁ ଏହି ମାଟି ପିତୁଳା ପଛରେ ମୁଁ ପାଗଳ ହେବି ନାହିଁ କି ଏହାର ଆକର୍ଷଣର ବନ୍ଧନରେ ବାନ୍ଧି ହେବି ନାହିଁ । ମୁଁ ତ ବାସ୍ତବରେ ଚମଡ଼ାକୁ ବ୍ୟବହାର କରିବାବାଲା 'ମୋଚି' ନୁହେଁ । ମୁଁ ହେଉଛି ସର୍ବଶକ୍ତିମାନ୍, ସମ୍ପୂର୍ଣ୍ଣ ପବିତ୍ର, ଆନନ୍ଦସ୍ୱରୂପ ପରମପିତା ପରମାତ୍ମା ଶିବଙ୍କର ସନ୍ତାନ ଏବଂ ଏହି ହେତୁରୁ ନୀଚ କର୍ମ ମୁଁ କଦାପି କରିବି ନାହିଁ । ମୁଁ ଏହି ଜନ୍ମରେ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ କରି ନରକର ବନ୍ଦୀଶାଳାରୁ ମୁକ୍ତ

ପାଇବ ଏବଂ ଏତେକୋଇଣ ଜନ୍ମ ପାଇଁ ବୈକୁଣ୍ଠରେ ରାଜ୍ୟ-ଅଧିକାରୀ ହେବ । ଏହା ତ ହେଉଛି ମାୟା ଯିଏ କି ମୋର ବୁଦ୍ଧିରେ ଏବଂ ମାନବ ଶରୀରର ବାସ୍ତବତା ଉପରେ ପର୍ଦ୍ଦା ପକାଇ ମୋର ଜ୍ଞାନ-ଧ୍ୟାନକୁ ମାଟିରେ ମିଶାଇ ଦେବାକୁ ଚାହୁଁଛି ଏବଂ ପରମପ୍ରିୟ ପରମାତ୍ମାଙ୍କ ଠାରୁ ମୋତେ ଦୂର କରି ନିଜର ଦାସ ରୂପେ ରଖିବା ପାଇଁ ଚାହୁଁଛି । ବାସ୍ତବରେ ଦେହକୁ ତ ମୋତେ ଦିନେ ନା ଦିନେ ତ୍ୟାଗ କରିବାକୁ ପଡ଼ିବ । ଦେହ ତ ଶେଷରେ ମରିବ, ତେଣୁ ମୁଁ କାହିଁକି ଏହା ପଛରେ ମରିବି ?

ଜିଜ୍ଞାସୁ—ଭଉଣୀ, ଉପରୋକ୍ତ ଚର୍ଚ୍ଚା ଶୁଣି ବାସ୍ତବରେ ଶରୀର ପ୍ରତି ଅନାସକ୍ତି-ଭାବ ଉତ୍ପନ୍ନ ହେଉଛି ସତ, ପରନ୍ତୁ ଜାଣିହୁଏ ନାହିଁ ଏହି ଜ୍ଞାନ କାହିଁକି ବେଳେ ବେଳେ ବୁଦ୍ଧିରୂପୀ ଶରୀରରୁ ଖସିଯାଉଛି ; ଯେପରିକି ପାରଦକୁ ହାତରେ ରଖିଲେ ଖସିଯାଏ ? ଆଜି ଘରିଆଡ଼େ ମାୟାର ଚମତ୍କାରିତା ଉପଲବ୍ଧ ହେଉଛି । ଏଣୁ ଏହି ମାୟା ନଗରୀରେ ମନୁଷ୍ୟର ପାଦ ସମୟେ ସମୟେ ଖସି ଯାଉଛି । ତେଣୁ ସଦା ଅନାସକ୍ତ ରହିବାପାଇଁ ସହିଜ ଉପାୟ କ'ଣ ?

ବ୍ରହ୍ମାକୁମାରୀ— ଦେଖନ୍ତୁ ! ସର୍ବଶକ୍ତିମାନ୍ ପରମପିତା ପରମାତ୍ମାଙ୍କର ସନ୍ତାନ ହୋଇ କିପରି ଦୁର୍ବଳ ବାକ୍ୟ ଉଚ୍ଚାରଣ କରୁଛନ୍ତି ? ମାୟାର ଶକ୍ତିକୁ ଦେଖୁଛନ୍ତି, ମାତ୍ର ଯେଉଁ ସର୍ବଶକ୍ତିମାନ ପରମପିତା ପରମାତ୍ମାଙ୍କର ଆଶ୍ରୟ ନେଇଛନ୍ତି ତାଙ୍କର ଶକ୍ତିକୁ ଆପଣ ଭୁଲି ଯାଉଛନ୍ତି ।

ଜନ୍ମ-ଜନ୍ମାନ୍ତର ଧରି ଆପଣ ଭକ୍ତିରେ ପ୍ରାର୍ଥନା କରି ଆସିଲେ—"ହେ ପ୍ରଭୁ, ମୁଁ ମୂର୍ଖ, ଖଳ, କାମୀ ଅଟେ । ହେ ପ୍ରଭୁ, ମୋତେ କୃପାକର ଇତ୍ୟାଦି ।" ଅଥଚ ବର୍ତ୍ତମାନ ଯେତେବେଳେ ଭଗବାନ ଈଶ୍ୱରୀୟ ଜ୍ଞାନ ଦାନ କରି କୃପା କରୁଛନ୍ତି ସେତେବେଳେ ଆପଣ ପଛକୁ ଫେରିଯିବା କଥା କହୁଛନ୍ତି । ଭକ୍ତିରେ ଭଜନ କଲେ—"ହେ ପ୍ରଭୁ, ଆପଣ ପରମ ପବିତ୍ର,

ଙ୍କ ନଯାଗର, ସର୍ବଶକ୍ତିମାନ୍——" ଏବଂ ଆପଣ ନିଜ ପାଇଁ କହୁଛନ୍ତି ଯେ—"ମୁଁ ମୂର୍ଖ, ଖଳ ଏବଂ କାମୀ ।" ପିତାଙ୍କର ଉପାଧି ଗାୟନ ଏବଂ ପୂଜନଯୋଗ୍ୟ ହୋଇଥିବା ସ୍ଥଳେ ପୁତ୍ରର ଉପାଧି ପତନର ସୂଚନା । କ'ଣ ଏପରି ପଦକ ( Medals ) ଦ୍ଵାରା ଆପଣ ସୁସଜ୍ଜିତ ହେବାକୁ ଚାହାନ୍ତି ? ଆଜି ପର୍ଯ୍ୟନ୍ତ ପରମପିତା ପରମାତ୍ମାଙ୍କର ଯେଉଁସବୁ ଗୁଣ ଗାୟନ କରିଆସିଲେ ବର୍ତ୍ତମାନ ସ୍ୱୟଂ ସେସବୁ ଗୁଣ ଧାରଣ କରନ୍ତୁ । ଏଣୁ କାମରୂପୀ ଆଘାତକୁ ବର୍ତ୍ତମାନ ବନ୍ଦ କରନ୍ତୁ ।

ବର୍ତ୍ତମାନ ମାୟାର ରୂପରଙ୍ଗକୁ ଭୁଲି ସ୍ୱର୍ଗର ରୂପରଙ୍ଗକୁ ଦେଖନ୍ତୁ କାରଣ ମାୟାର ଏହି ରୂପରଙ୍ଗ ସମାପ୍ତ ହେବାକୁ ଯାଉଛି ଏବଂ ସ୍ୱର୍ଗୀୟ ସୁଖର ସୃଷ୍ଟି ସ୍ଥାପିତ ହେଉଛି । ଆପଣ କ'ଣ ଆଜିକାଲିର ବ୍ୟକ୍ତିମାନଙ୍କ ପ୍ରତି ଆକର୍ଷଣ ଅନୁଭବ କରୁଛନ୍ତି ? ମୃତ୍ୟୁ ଶଯ୍ୟାରେ ଶୟନ କରିଥିବା ସ୍ତ୍ରୀ ଅଥବା ମୂର୍ତ୍ତିର ପ୍ରତି ଆପଣଙ୍କ ମନରେ କେବେ କାମ-ଭୋଗର ସଙ୍କଳ୍ପ ଜାଗ୍ରତ ହୁଏ କି ?

**ଜିଜ୍ଞାସୁ**—ଏପରି ନିକୃଷ୍ଟ ସଙ୍କଳ୍ପ କ'ଣ କେଉଁ ମାନବ ମନରେ ଆସିପାରେ ?

## ଏହି ସଂସାର ବର୍ତ୍ତମାନ ମୃତ୍ୟୁ ଶଯ୍ୟାରେ, ତେଣୁ ଭଗବାନଙ୍କୁ ସ୍ମରଣ କରନ୍ତୁ

**ବ୍ରହ୍ମାକୁମାରୀ**—ବର୍ତ୍ତମାନ ଦୁନିଆକୁ ଦେଖି ଆପଣ କ'ଣ ଭାବୁଛନ୍ତି ? ସତରେ ଏ ସୃଷ୍ଟି ମୃତ୍ୟୁ ଅପେକ୍ଷାରେ ଶଯ୍ୟାଶାୟୀ ନୁହେଁ କି ? ଉଦ୍‌ଜାନ ଅଣୁ ଓ ପରମାଣୁ ବୋମା ଇତ୍ୟାଦି ମରଣାସନ୍ନ ସୃଷ୍ଟିର ଦାହ-ସଂସ୍କାର ପାଇଁ ଇନ୍ଧନ ଏକତ୍ର କଲାଭଳି ମନେ ହୁଏନି କି ? ଲୋକମାନଙ୍କ ମଧ୍ୟରେ ଦେଖା ଦେଉଥିବା ମତ-ଭେଦ, ପ୍ରାନ୍ତ-ଭେଦ ଏବଂ କ୍ରୋଧରୂପୀ ଅଗ୍ନି ଏ ସମସ୍ତଙ୍କୁ ଜଳାଇ ସାରା ସୃଷ୍ଟିକୁ ପାଉଁଶରେ ପରିଣତ କଲାଭଳି କ'ଣ

ବର୍ତ୍ତମାନ ମନେ ହୁଏନା କି ? ଧର୍ମହୀନ ପ୍ରାଣହୀନ ସୃଷ୍ଟି ବର୍ତ୍ତମାନ କ'ଣ ଆପଣଙ୍କୁ ଆକର୍ଷିତ କରୁଛି ? ଜ୍ଞାନରୂପୀ ନେତ୍ରଦ୍ୱାରା ଦେଖି କହନ୍ତୁ ଯେ ଏ ଦୁନିଆଁର ଅବସ୍ଥା କ'ଣ ?

ଏଣୁ ବର୍ତ୍ତମାନ ଭଗବାନ ଶିବ କହୁଛନ୍ତି—ହେ ବତ୍ସ, ଏବେ ସମସ୍ତେ ମୃତ୍ୟୁମୁଖରେ ପଡ଼ିଛନ୍ତି ବୋଲି ମାନିବାକୁ ହେବ । ବର୍ତ୍ତମାନ ଏଥିରେ ମନ ଲଗାଇଲେ ଆପଣଙ୍କୁ ପଶ୍ଚାତ୍ତାପ କରି ଲୁହ ଗଡ଼ାଇବାକୁ ପଡ଼ିବ ।

ଆଚ୍ଛା କହନ୍ତୁ, ଯଦି କେହି ମୃତ୍ୟୁ ଶଯ୍ୟାରେ ପଡ଼ିରହି ଅନ୍ତିମ ଶ୍ୱାସ ନେଉଥାଏ, ସେତେବେଳେ ତା'ର ମନରେ କାମ-ବାସନାର ସଙ୍କଳ୍ପ ଆସେ କି ? ସେତେବେଳେ ଲୋକମାନେ ଭଗବାନଙ୍କୁ ସ୍ମରଣ କରିବାପାଇଁ ତାକୁ କହନ୍ତି ଏବଂ ଗୀତାଜ୍ଞାନ ମଧ୍ୟ ଶୁଣାନ୍ତି । ସ୍ତ୍ରୀ କିମ୍ବା ପୁତ୍ରକୁ ସ୍ମରଣ କରିବାପାଇଁ କେହି କହନ୍ତି ନାହିଁ । କାରଣ ସମସ୍ତେ ଜାଣନ୍ତି ଯେ ମୃତ୍ୟୁ ସମୟରେ ମାନବର ଯେପରି ସ୍ମୃତି ରହେ ସେପରି ତାର ଗତି ହୁଏ । ଏଣୁ ଆପଣ ମଧ୍ୟ ବର୍ତ୍ତମାନ ନିଜ ସମ୍ବନ୍ଧରେ କିଛି ବିଚାର କରନ୍ତୁ । ଚାରି ଯୁଗ ମଧ୍ୟରୁ ବର୍ତ୍ତମାନ କଳିଯୁଗୀ ଶାସନ ଚାଲିଛି ଏବଂ ଏହି ସମସ୍ତ ହେଉଛି ଅନ୍ତିମ ଜନ୍ମର ଅନ୍ତିମ ଘଡ଼ି । ତେଣୁ ଦୁନିଆରେ ଅନାସକ୍ତ ଏବଂ ନିମିତ୍ତ (Trustee) ରୂପେ କର୍ତ୍ତବ୍ୟ ସମ୍ପାଦନ କରି ପରମପିତା ପରମାତ୍ମାଙ୍କ ସ୍ମୃତିରେ ସ୍ଥିତ ହେବା ହେଉଛି କଲ୍ୟାଣର ଏକମାତ୍ର ପନ୍ଥା ।

**ଜିଜ୍ଞାସୁ**—ବାସ୍ତବରେ 'ମାୟା'ର ରଙ୍ଗଢଙ୍ଗରୁ ମନେହୁଏ ଯେ ବର୍ତ୍ତମାନ ଏହାର ଅନ୍ତ ସମୟ, କାରଣ ଅତି ପରେ ହିଁ ଅନ୍ତ ହୁଏ । କଳିଯୁଗ ପରେ ସତ୍ୟଯୁଗ ଆସିବ । ପରନ୍ତୁ, ବର୍ତ୍ତମାନ ସମସ୍ତେ ବଦଳିବା ଆବଶ୍ୟକ କି ?

## ବର୍ତ୍ତମାନ ଶିବରାତ୍ରି, ଅମୃତବେଳା, ବ୍ରହ୍ମ-ମୁହୂର୍ତ୍ତ
## ଅଥବା ସଙ୍ଗମର ମେଳା

**ବ୍ରହ୍ମାକୁମାରୀ**—ଆପଣ ସର୍ବଦା ସମୟ ପ୍ରତି ସଚେତନ ରହନ୍ତୁ । ସ୍ମରଣ ରଖନ୍ତୁ ଯେ ବର୍ତ୍ତମାନ କଳିଯୁଗର ଅନ୍ତ ଏବଂ ସତ୍ୟଯୁଗର ଆରମ୍ଭର ସଙ୍ଗମ ସମୟ, ଯେତେବେଳେ କି ପରମପିତା ପତିତପାବନ ପରମାତ୍ମା ଶିବ ଏହି ସୃଷ୍ଟିରେ ସତ୍ୟଯୁଗୀ, ପବିତ୍ର ଏବଂ ଦୈବୀ ସୃଷ୍ଟିର ସ୍ଥାପନା କରୁଛନ୍ତି ଏବଂ ବେଶ୍ୟାଳୟରୂପୀ ଭାରତକୁ ଶିବାଳୟରୂପୀ ଭାରତରେ ପରିବର୍ତ୍ତନ କରୁଛନ୍ତି । ଯେହେତୁ ପରମପିତା ପରମାତ୍ମା ଶିବ ଭାରତରେ ଅବତରିତ ହୋଇଛନ୍ତି ସେହି ହେତୁରୁ ଏହା ହେଉଛି ପ୍ରକୃତ ଶିବାଳୟ । ତେଣୁ ଏହି ସମୟରେ ବେଶ୍ୟାଳୟର କର୍ମ କେହି କରିପାରେ କି ? ଏହି କଳିଯୁଗରୂପୀ ଅଜ୍ଞାନ ରାତ୍ରିରେ ପରମପିତା ପରମାତ୍ମା ଶିବଙ୍କର ଅବତରଣର ଉଦ୍ଦେଶ୍ୟ ହେଉଛି ଅଜ୍ଞାନରୂପୀ ଅନ୍ଧକାରକୁ ବିନାଶ କରିବା । ତେଣୁ ବର୍ତ୍ତମାନ ସମୟ ହେଉଛି ଶିବରାତ୍ରି, ଯେଉଁ ସମୟରେ କି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ଏକାନ୍ତ ଆବଶ୍ୟକ ।

ଯଦି ଆପଣ ଏହିପରି ମନେ କରିବେ ତେବେ ରାତ୍ରିର ବାତାବରଣ ଆପଣଙ୍କ ମନରେ ବିକାର ଉତ୍ପନ୍ନ କରିବ ନାହିଁ, କାରଣ ରାତ୍ରିକୁ ଦେଖି ଆପଣଙ୍କ ମନରେ ଶିବରାତ୍ରିର ସ୍ମୃତି ଆସିବ ଏବଂ କଳିଯୁଗର ଅନ୍ତ ଓ ସତ୍ୟଯୁଗର ଆଦି ସମୟ ଅର୍ଥାତ୍ ଅମୃତବେଳା ବା ବ୍ରହ୍ମ-ମୁହୂର୍ତ୍ତକୁ ଅନୁଭବ କରି ଜ୍ଞାନରୂପୀ ଅମୃତ ପାନ କରିବାପାଇଁ ନିଶ୍ଚୟ ଉତ୍ସୁକ ହେବେ । ଅମୃତବେଳାରେ ଯୋଗ କରାଯାଏ, ନା କାମ-ଭୋଗରେ ଫସାଯାଏ ?

## ବର୍ତ୍ତମାନର ସଂସାରରେ ସଙ୍କଟକାଳୀନ ସ୍ଥିତି—ଭଗବାନଙ୍କର ଆଜ୍ଞା 'ପବିତ୍ର ହୁଅ'

ବର୍ତ୍ତମାନ ପରମାତ୍ମା ଶିବ ସତ୍ୟଯୁଗୀ ପବିତ୍ର ଦୁନିଆଁ ସ୍ଥାପନ କରୁଛନ୍ତି । ତେଣୁ କାମ-ବିକାରକୁ ତ୍ୟାଗ କରିବା ହିଁ ହେଉଛି ପ୍ରଭୁଙ୍କର ଆଜ୍ଞା । ଯଦି ସଙ୍କଟକାଳୀନ ସ୍ଥିତି (Emergency) ରେ ଦେଶର ସରକାରଙ୍କ ଆଜ୍ଞା (Ordinance) କୁ ପ୍ରତ୍ୟେକ ନାଗରିକ ପାଳନ କରନ୍ତି, ତେବେ ଆପଣ କ'ଣ ସର୍ବୋଚ୍ଚ ସରକାର (ତ୍ରିଲୋକନାଥ)ଙ୍କର ଆଜ୍ଞାକୁ ପାଳନ କରିବେନି ? ଯେହେତୁ ସଂସାର ବର୍ତ୍ତମାନ ଧର୍ମ-ସଙ୍କଟ ମଧ୍ୟରେ ଉପସ୍ଥିତ ବିନାଶ ଅଦୂରରେ ଦଣ୍ଡାୟମାନ ଏବଂ ଏ ଜନ୍ମ ହେଉଛି ଆପଣଙ୍କର ଅନ୍ତିମ ଜନ୍ମ, ତେଣୁ ଶେଷ ସମୟରେ ଏହି କେତେ ଦିନପାଇଁ ଆପଣ ପବିତ୍ର ରହି ଏହି ଈଶ୍ୱରୀୟ କାର୍ଯ୍ୟରେ କ'ଣ ସହଯୋଗ କରି ପାରିବେନି ?

## ଭାବନ୍ତୁ ଯେ ଆପଣ ତୀର୍ଥଯାତ୍ରା କିମ୍ବା ଜ୍ଞାନ-ଯଜ୍ଞ କରୁଛନ୍ତି

ଯଦି କେହି ତୀର୍ଥଯାତ୍ରା କରେ ତେବେ ସେ ସମୟରେ ସେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରେ । ଆପଣ ମଧ୍ୟ ବର୍ତ୍ତମାନ ଈଶ୍ୱରୀୟ ସ୍ମୃତିରୂପୀ ଯାତ୍ରାରେ ଅଛନ୍ତି । ଭକ୍ତମାନେ ପଦଯାତ୍ରା କରୁଥିବାସ୍ଥଳେ ଆପଣ ବୁଦ୍ଧି ଦ୍ୱାରା ଅମର-ନାଥ ଧାମ (ବ୍ରହ୍ମଲୋକ) ଏବଂ ଶ୍ରୀନାଥପୁରୀ (ବୈକୁଣ୍ଠ)ରେ ପହଞ୍ଚିବା ପାଇଁ ପୁରୁଷାର୍ଥ କରୁଛନ୍ତି । ତେଣୁ ଆପଣ ନିଜକୁ ଏକ ଯାତ୍ରୀ ଭାବି ଅଥବା ଜ୍ଞାନ-ଯଜ୍ଞର କର୍ତ୍ତା ଭାବି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରନ୍ତୁ ।

**ଜିଜ୍ଞାସୁ**—ଯାତ୍ରୀ ହେବା ହେତୁ ଆମ୍ଭେମାନେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ଉଚିତ । ମାତ୍ର 'ଯଜ୍ଞ' କ'ଣ ?

**ବ୍ରହ୍ମାକୁମାରୀ**—କେତେକ ବ୍ୟକ୍ତି ବାତାବରଣକୁ ଶୁଦ୍ଧ କରିବାପାଇଁ ଅଗ୍ନିରେ କାଠ ଏବଂ ଘିଅ ପ୍ରଭୃତି 'ସ୍ୱାହା' କରି ଯଜ୍ଞ ରଚନା କରନ୍ତି ।

କିନ୍ତୁ ପରମାତ୍ମା ଶିବ କହୁଛନ୍ତି ଯେ ଜ୍ଞାନ ଏବଂ ଯୋଗରୂପୀ ଅଗ୍ନିକୁ ଜଳାଇ ତନ୍ମଧ୍ୟରେ ବିକାର ଅର୍ଥାତ୍ କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦିକୁ ଆପଣ ଆହୁତି ଦିଅନ୍ତୁ, ଯାହାଫଳରେ ଆପଣଙ୍କ ଜୀବନ ଦିବ୍ୟ ଗୁଣରେ ଶୁଦ୍ଧ ଏବଂ ସୁଗନ୍ଧିତ ହୋଇ ଉଠିବ ଏବଂ ସାରା ବିଶ୍ୱ ହିଁ ପବିତ୍ର ହେବ । ଏପରି ଜ୍ଞାନ ଯଜ୍ଞଦ୍ୱାରା ସୃଷ୍ଟି ମଧ୍ୟ ପବିତ୍ର ହେବ ।

ଜିଜ୍ଞାସୁ—ବ୍ରହ୍ମଚର୍ଯ୍ୟ ପାଳନଦ୍ୱାରା ଲାଭ କ'ଣ ?

**ବ୍ରହ୍ମଚର୍ଯ୍ୟ ପାଳନଦ୍ୱାରା ହେଉଥିବା ଲାଭ ଏବଂ**
**କାମ-ବିକାରଦ୍ୱାରା ହେଉଥିବା କ୍ଷତିର ବିଚାର**

ବ୍ରହ୍ମାକୁମାରୀ—ଯଦିଓ ଏହାର ନାମ 'କାମ' ତଥାପି ଏ ହେଉଛି କାମ (କର୍ମ)କୁ ବିଗାଡ଼ିବାବାଲା ତଥା ମାନବର ଶକ୍ତି ଏବଂ ଶାନ୍ତିକୁ ଛିନ୍ନ କରିବାବାଲା ଶତ୍ରୁ । ଏହି କାମ ମାନବକୁ ନିକମା କରିଦିଏ ଓ ସମ୍ପୂର୍ଣ୍ଣ ଶାନ୍ତି ଲାଭ କରିବାରେ ମଧ୍ୟ ଅସଫଳ କରାଏ । ବିଚାର କରନ୍ତୁ ଯେ ଯଦି ଜଣେ ବ୍ୟକ୍ତି ଖଜୁରି ଗଛର ଉପରକୁ ଚଢ଼ି ଚଢ଼ି ବୃକ୍ଷର ଶିଖରରେ ପହଞ୍ଚିବା ସମୟରେ ଦୈବାତ୍ ତଳକୁ ଖସିପଡ଼େ, ତେବେ ତା'ର ଅବସ୍ଥା କ'ଣ ହେବ ? ମରିବ କିମ୍ବା ହାତ ଗୋଡ଼ ଭାଙ୍ଗି ଚୂରମାର ହୋଇଯିବ । ସେ ମିଠା ଖଜୁରିକୁ ତ ପାଇପାରିବ ନାହିଁ, ତାଛଡ଼ା ମୁଣ୍ଡ ମଧ୍ୟ ଭାଙ୍ଗିବ । ଯେତେବେଳେ ମନରେ "କାମ-ଭାବ" ଉତ୍ପନ୍ନ ହେଉଛି ସେତେବେଳେ ଏପରି ଦୃଶ୍ୟ ସମ୍ମୁଖକୁ ଆଣନ୍ତୁ । ବ୍ରହ୍ମଚର୍ଯ୍ୟ ପାଳନଦ୍ୱାରା ବୈକୁଣ୍ଠ-ରସ ମିଳିବ, ମୁକ୍ତି ଏବଂ ଜୀବନ ମୁକ୍ତିର ରାସ୍ତା ମିଳିବ, ମାତ୍ର ପବିତ୍ରତାରୂପୀ ବୃକ୍ଷର ତଳକୁ ଖସିଲେ ଆତ୍ମା ନରକରେ ପଡ଼ି ସ୍ୱର୍ଗୀୟ ରାଜ୍ୟ-ଭାଗ୍ୟ ଲାଭ କରିବାରୁ ସବୁକାଳ ପାଇଁ ବଞ୍ଚିତ ହେବ ।

ତେଣୁ ଆପଣ ସର୍ବଦା ସ୍ମରଣ ରଖନ୍ତୁ ଯେ "ମୁଁ ବ୍ରହ୍ମଚର୍ଯ୍ୟ ବଳଦ୍ୱାରା ପବିତ୍ର ସୃଷ୍ଟିର ଅଟଳ, ଅଖଣ୍ଡ ନିର୍ବିଘ୍ନ ଏବଂ ଅତି ସୁଖଦାୟକ ସ୍ୱରାଜ୍ୟ ଲାଭ କରିବି ।" ଯଦି କେହି କାମ ବାସନାର ବଶୀଭୂତ

ହୁଏ, ତେବେ ଜାଣିବାକୁ ହେବ ଯେ ସେ ତା'ର ମୁକୁଟ ଏବଂ ସିଂହାସନକୁ ଗୋଇଠା ମାରି ନରକକୁ ଯିବାପାଇଁ ଠିକ୍ ଉପାୟ ବାଛି ନେଉଛନ୍ତି । ଯଦି ସମ୍ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ତେବେ ନିଶ୍ଚୟ ଜାଣିରଖନ୍ତୁ ଯେ ଆପଣ ୨୧ ଜନ୍ମ ପାଇଁ ବୈକୁଣ୍ଠସ୍ଥ ଦୈବୀ-ସ୍ୱରାଜ୍ୟର ଐଶ୍ୱର୍ଯ୍ୟ ଜନ୍ମସିଦ୍ଧ ଅଧିକାର ଲାଭ କରୁଛନ୍ତି । ଏହିପରି ଆପଣ ଯଦି ଚିନ୍ତନ କରିବେ ତେବେ ଅଶୁଦ୍ଧ ସକଳକୁ ଜିଣିପାରିବେ ।

**ବ୍ରହ୍ମଚର୍ଯ୍ୟ ପାଳନଦ୍ୱାରା ପ୍ରାପ୍ତ ହେଉଥିବା ଲାଭକୁ ମଧ୍ୟ ସ୍ମରଣ ରଖନ୍ତୁ, କାରଣ ତା'ର ପନରାବୃତ୍ତି ମଧ୍ୟ ହୁଏ ।**

'ବିଶ୍ୱ ଇତିହାସର ସଦା ପୁନରାବୃତ୍ତି ରହିଛି'—ଏ ସିଦ୍ଧାନ୍ତକୁ ଆପଣ ନିଶ୍ଚୟ ସ୍ୱୀକାର କରିବେ । ସେହିପରି ଏହି ମନୁଷ୍ୟ ସୃଷ୍ଟିର ଇତିହାସ ପ୍ରତ୍ୟେକ କଳ୍ପରେ ପୂର୍ବନିର୍ଣ୍ଣିତ ସମୟ ଅନୁଯାୟୀ ପୁନରାବୃତ୍ତି ହୁଏ । ଏଣୁ ଯେପରି କର୍ମ ଆଜି କରିବା, ତାହା ପ୍ରତ୍ୟେକ ୫୦୦୦ ବର୍ଷ ପରେ ପୂର୍ବପରି ପୁନରାବୃତ୍ତି ହେବ । ଏହି ଯୁକ୍ତି ଯଦି ସର୍ବଦା ମନରେ ରହେ ତେବେ ଖରାପ ବିଚାର ମନରେ ଉତ୍ପନ୍ନ ହେବା ଅସମ୍ଭବ । କଳିଯୁଗର ଅନ୍ତ ଏବଂ ସତ୍ୟଯୁଗର ଆଦିକୁ ଏହି ସଙ୍ଗମ ଯୁଗରେ ଆତ୍ମା ପୁରୁଷାର୍ଥ କରି ଯେଉଁ ଅବସ୍ଥା ଲାଭ କରେ, ସେହି ଅବସ୍ଥା ଉପରେ ଆଗାମୀ କଳ୍ପରେ ତା'ର ଅଭିନୟ ଆଧାରିତ ହୁଏ । ତେଣୁ ସଦା ସ୍ମରଣ ରହିବା ଉଚିତ ଯେ ବର୍ତ୍ତମାନ ହେଉଛି ସଙ୍ଗମ ଯୁଗ । ଆଗାମୀ କଳ୍ପର ସାରା ଅଭିନୟର ନିର୍ମାଣ ( shooting ) ବର୍ତ୍ତମାନ ଚାଲିଛି । ତେଣୁ ଅତି ସାବଧାନତାର ସହିତ ନିଜର ମନ-ବାଣୀ-କର୍ମକୁ ଠିକ୍ ରଖିବା ଉଚିତ । ଯଦି ବିକାରର ବଶୀଭୂତ ହୋଇ କୌଣସି କର୍ମ ଆପଣ ବର୍ତ୍ତମାନ କରନ୍ତି, ତେବେ ଆପଣଙ୍କର ଉକ୍ତ ସଂସ୍କାର ଦୃଢ଼ୀଭୂତ ହୋଇ ଭବିଷ୍ୟତରେ ପୁନରାବୃତ୍ତି କରିବା ପାଇଁ ଉତ୍ତେଜିତ କରାଇବ । ଯଦି ବର୍ତ୍ତମାନ ଆପଣ ଏହା ଉପରେ ବିଜୟଲାଭ କରନ୍ତି, ତେବେ ଭବିଷ୍ୟତରେ ସେ ମଧ୍ୟ ଆପଣଙ୍କଦ୍ୱାରା

ପତ୍ନୀଙ୍କ ପରବଶ ହେବ ଏବଂ ଶେଷରେ ଆପଣଙ୍କୁ ସେ ତ୍ୟାଗ କରିବ । ଏହି ଅନ୍ତିମ ଜନ୍ମର ଅନ୍ତିମ ସମୟରେ ଯଦି ଆପଣ ପବିତ୍ର ରହନ୍ତି ଏବଂ କାମ ବିକାର ଉପରେ ବିଜୟଲାଭ କରନ୍ତି, ତେବେ କଳ୍ପ-କଳ୍ପ ପାଇଁ ଆପଣ ସ୍ୱର୍ଗରେ ରାଜ୍ୟ ଅଧିକାରୀ ହେବେ ଏବଂ ଯଦି ପରାଜିତ ହୁଅନ୍ତି ତେବେ କଳ୍ପ-କଳ୍ପ ନରକଗାମୀ ହେବାକୁ ପଡ଼ିବ । ତେଣୁ ପବିତ୍ରତାର ଲାଭ-କ୍ଷତି ଅନୁପାତକୁ ସମ୍ମୁଖରେ ରଖି ସଦା କର୍ତ୍ତବ୍ୟ କରନ୍ତୁ ।

ଏତଦ୍‌ବ୍ୟତୀତ ଏହାକୁ ମଧ୍ୟ ଭଲ ଭାବରେ ମନେ ରଖନ୍ତୁ ଯେ ବ୍ରହ୍ମଚର୍ଯ୍ୟ ହିଁ ମହାନତାର ଆଧାର । ଲୋକମାନେ 'ମହାତ୍ମା'ଙ୍କ ସମ୍ମୁଖରେ ନତମସ୍ତକ ହୁଅନ୍ତି କାହିଁକି ? ମହାତ୍ମା କିମ୍ବା ସନ୍ନ୍ୟାସୀ ଯଦିଓ ମନୁଷ୍ୟ, ସେମାନେ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି । ତେଣୁ ବିକାରୀ ଗୃହସ୍ଥମାନେ ସେମାନଙ୍କୁ ଆଗେ ନମସ୍କାର କରନ୍ତି । ବର୍ତ୍ତମାନ ଆପଣ ଗୃହସ୍ଥ ଧର୍ମରେ ରହି ପବିତ୍ର ରହନ୍ତୁ ।

ବର୍ତ୍ତମାନ ଭଗବାନ କହୁଛନ୍ତି, "ହେ ବତ୍ସ, ତୁ ଯେଉଁ କାମକ୍ରୋଧାଦି ବିକାରକୁ ଅମୂଲ୍ୟ ମନେକରି ଗଣ୍ଠିଲିରେ ସାଇତି ରଖିଛୁ, ସେ ତୋତେ ଦୁଃଖ ଦେଉଛି । ତେଣୁ ତାକୁ ମତେ ଦେଇ ଦେ, ମୁଁ ତୋତେ ସ୍ୱର୍ଗରେ ସ୍ୱରାଜ୍ୟ ଦେବି ।"

ଜିଜ୍ଞାସୁ—ଭଉଣୀ, ମୋର ତ ମନେ ହେଉଛି ସବୁଦିନ ପାଇଁ ସେ ଦୂଷିତ ସଙ୍କଳ୍ପ ତ୍ୟାଗକରି ମୁଁ ଈଶ୍ୱରୀୟ ଜ୍ଞାନ ଲାଭ କରିଛି ।

ବ୍ରହ୍ମାକୁମାରୀ—ତେବେ ଏଣିକି ସ୍ୱରୂପସ୍ଥ ରହନ୍ତୁ, ଯେପରି ସେ କଣ୍ଟା ଆଉ ଆପଣଙ୍କ ଦେହରେ ନ ଲାଗେ । ଆଚ୍ଛା, ଆପଣ କହୁଥିଲେ ପରା ଆପଣଙ୍କ ଚଞ୍ଚଳମତି ପିଲା ଉପରେ ଆପଣଙ୍କର କ୍ରୋଧ ଆସୁଛି ଏବଂ ଆତ୍ମୀୟ-ମାନଙ୍କ ପ୍ରତି ମୋହ ଜନ୍ମୁଛି । ଏ ସମ୍ପର୍କରେ ଯେଉଁ ଈଶ୍ୱରୀୟ ଜ୍ଞାନ ଅଛି, ଶୁଣନ୍ତୁ ।

# କ୍ରୋଧରୂପୀ ଅଗ୍ନିକୁ ଶାନ୍ତ କରିବାର ଉପାୟ କ'ଣ ?

ଆଜି ସଂସାରର ଅନେକ ଦୁଃଖର କାରଣ କ୍ରୋଧ । ଯଦି ଏ ବିକାର ଶାନ୍ତ ହୋଇଯିବ ତେବେ ସାରା ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ହୋଇଯିବ । ଏହା ଯୋଗୁଁ ଆଜି ପ୍ରତି ଘରେ ଘରେ କଳହ ଏବଂ ନ୍ୟାୟାଳୟଗୁଡ଼ିକ ମଧ୍ୟ ମକଦ୍ଦମାରେ ଭରପୂର । ଏହି କ୍ରୋଧ ଯୋଗୁଁ ସାରା ବିଶ୍ୱରେ ପ୍ରତି ବର୍ଷ କୋଟି କୋଟି ଟଙ୍କାର ସମ୍ପତ୍ତି ଭସ୍ମୀଭୂତ ହେଉଛି । ବାସ୍ତବରେ ଏହା ହେଉଛି ନରକର ଦ୍ୱାର । ଜ୍ଞାନବାନ୍ ମାନବର ସମସ୍ତ ଜ୍ଞାନ ଏହି ବିକାରର ଧୂଆଁରେ ଲୁଚିଯାଇଛି ଏବଂ ତା'ର ବୁଦ୍ଧି ପତନୋନ୍ମୁଖୀ ହେଉଛି । ଯଦିଓ ମାନବ ଏଥିପାଇଁ ପରେ ପଶ୍ଚାତ୍ତାପ କରୁଛି, ତଥାପି ତା'ର ଏପରି ସଂସ୍କାର ଲୋପ ପାଉନାହିଁ । ଏହି ବିକାର ମାନବକୁ ପରମାତ୍ମାଙ୍କ ନିକଟରେ ପହଞ୍ଚିବା ପାଇଁ ସହଯୋଗ କରେ ନାହିଁ ଏବଂ ମନକୁ ଅନନ୍ତ ପ୍ରାପ୍ତିରୁ ବଞ୍ଚିତ କରେ । ତେଣୁ ମାନବକୁ ପତନୋନ୍ମୁଖୀ କରିବାରେ କ୍ରୋଧର ସ୍ଥାନ ଦ୍ୱିତୀୟ ।

**ବ୍ରହ୍ମାକୁମାରୀ**—ଗତକାଲି ମୁଁ ଆପଣଙ୍କୁ କହିଥିଲି ଯେ କାହିଁ ବ୍ୟବହାର ସମୟରେ ମଧ୍ୟ ଆପଣ ସ୍ମୃତିରେ ରହିବା ଦରକାର ଯେ— "ମୁଁ ଏକ ଜ୍ୟୋତିର୍ବିନ୍ଦୁ ଆତ୍ମା" । ଯେତେବେଳେ ଆପଣ ଅନ୍ୟକୁ ଦେଖୁଛନ୍ତି ସେତେବେଳେ ଭାବନ୍ତୁ ଯେ —"ଏହି ଆଖିଦ୍ୱାରା ଦେଖିଲାବାଲା ମୁଁ ଏକ ଅବିନାଶୀ ଆତ୍ମା, ମୁଁ ପରମପିତା ପରମାତ୍ମା ଶିବଙ୍କର ସନ୍ତାନ; ମୁଁ ପରମଧାମରୁ ଏହି ସୃଷ୍ଟି ମଞ୍ଚ ଉପରେ ଅବତରଣ କରିଛି——— ।" ଆପଣ କ'ଣ ଏପରି ଆତ୍ମିକ ସ୍ଥିତିର ଅଭ୍ୟାସ କଲେ କି ? ଆପଣ କ'ଣ ଅନୁଭବ କଲେ ?

**ଜିଜ୍ଞାସୁ**—ଭଉଣୀ, ଗତକାଲି ଆପଣ ଯେଉଁ ଈଶ୍ୱରୀୟ ଶିକ୍ଷା ଦେଇଥିଲେ, ତାକୁ ପାଳନ କରିବାପାଇଁ ମୁଁ ଆତ୍ମିକ ଦୃଷ୍ଟିକୁ ଧାରଣ

କରିଥିଲି । ମୁଁ ଅନ୍ୟକୁ ଦେଖିବା ସମୟରେ ଭାବୁଥିଲି ଯେ ସେ ମଧ୍ୟ ଗୋଟିଏ ଜ୍ୟୋତିର୍ବିନ୍ଦୁ ଆତ୍ମା ଏବଂ ଏକ ପରମପିତା ପରମାତ୍ମାଙ୍କର ସନ୍ତାନ ହିସାବରେ ସମସ୍ତେ ଭାଇ ଭାଇ । ଏପରି ଅବ୍ୟକ୍ତ ସ୍ଥିତିରୁ ମୋତେ ବହୁତ ଆନନ୍ଦ ମିଳିଲା । ମୁଁ ଭାବିଲି ଯେ ମୋ ପାଖରୁ କାମ-ବିକାର ଦୂର ହୋଇଗଲା । କିନ୍ତୁ ମୋର ଏକ ସନ୍ତାନ କାଲି ମୋତେ ବିରକ୍ତ କରିବାରୁ, ତା ପ୍ରତି ମୋର ଭୀଷଣ କ୍ରୋଧ ଜାତ ହେଲା ଏବଂ ସେହି କ୍ରୋଧର ବଶୀଭୂତ ହୋଇ ମୁଁ ତାକୁ ମାଡ଼ ଦେଲି । ବର୍ତ୍ତମାନ କହନ୍ତୁ ଯେ କ୍ରୋଧରୁ ରକ୍ଷା ପାଇବାପାଇଁ ଉପାୟ କ'ଣ ?

ବ୍ରହ୍ମାକୁମାରୀ—ଆପଣ ଆପଣଙ୍କ ସନ୍ତାନକୁ ମାଡ଼ ଦେବା ଫଳରେ ନିଜେ ଦୁଃଖୀ ହେଲେ ଏବଂ ସନ୍ତାନକୁ ମଧ୍ୟ ଦୁଃଖୀ କରାଇଲେ । ଏପରି କରିବାଦ୍ୱାରା ଆପଣଙ୍କ ସନ୍ତାନ କ'ଣ ସୁଧୁରିଗଲା କି ? କ୍ରୋଧ କରିବାଦ୍ୱାରା ଆପଣ ତା'ଠାରେ କିଛି ପରିବର୍ତ୍ତନ ଲକ୍ଷ୍ୟ କରୁଛନ୍ତି କି ? ଆପଣ କ'ଣ ଭାବୁଛନ୍ତି ଯେ କ୍ରୋଧ କରିବାଦ୍ୱାରା ସେ ଖରାପ କାର୍ଯ୍ୟରୁ ନିବୃତ୍ତ ହୋଇଯିବ ?

ଏପରି ତ କେତେକ ଲୋକ ମଧ୍ୟ କହନ୍ତି ଯେ ଶ୍ରେଷ୍ଠ ପିଲାମାନଙ୍କୁ ସୁଧାରିବା ପାଇଁ କ୍ରୋଧ କରିବା ଆବଶ୍ୟକ ମନେହୁଏ । ସେମାନେ କହନ୍ତି ଯେ ଆଜିକାଲି ଯୁଗରେ "ସିଧା ଆଙ୍ଗୁଳିରେ ଘିଅ ବାହାରିବ ନାହିଁ ।" କିନ୍ତୁ ସେମାନେ ବୁଝିବା ଦରକାର ଯେ କ୍ରୋଧ କରିବାଦ୍ୱାରା ସନ୍ତାନମାନେ ବେଶୀ ଖରାପ ହୁଅନ୍ତି । ବାସ୍ତବରେ ସତ୍ସଙ୍ଗ ଏବଂ ଶ୍ରେଷ୍ଠ ବିଦ୍ୟାଦ୍ୱାରା ସେମାନେ ସୁଧୁରିବେ । ପ୍ରଥମେ କୁସଙ୍ଗ ଏବଂ ଖରାପ ଶିକ୍ଷା ତଥା ବିରୋଧ ଆଚରଣ ବ୍ୟବହାର ଦ୍ୱାରା ସେମାନଙ୍କୁ ଖରାପ କରି ପରେ କ୍ରୋଧଦ୍ୱାରା ସେମାନଙ୍କୁ ଠିକ୍ ବାଟକୁ ଆଣିବାପାଇଁ ଚେଷ୍ଟା କରିବା ହେଉଛି ସେମାନଙ୍କୁ କ୍ରୋଧର ପ୍ରଶିକ୍ଷଣ ( Training ) ଦେବା । ବାସ୍ତବରେ ସ୍ନେହ ଏବଂ ପ୍ରେମଦ୍ୱାରା ସଂସାରରେ ଯେଉଁସବୁ କାର୍ଯ୍ୟ କରିହୁଏ, ସେ ସବୁକୁ କ୍ରୋଧ, ମାଡ଼ଦ୍ୱାରା କରିହୁଏନି, କାରଣ କ୍ରୋଧୀଠାରୁ ମାନବର ମନ ଦୂରେଇ ଯାଏ

ଏବଂ ଆତଙ୍କ ଯୋଗୁଁ ଭୟଭୀତ ହୋଇ ମାନବର ବୁଦ୍ଧି ବିଶେଷ ଲୋପ ହୋଇଯାଏ । ତେଣୁ କ୍ରୋଧ କରି ଅନ୍ୟକୁ ଠିକ୍ କରିବାପାଇଁ ଚେଷ୍ଟା କରୁଥିବା ମନୁଷ୍ୟ ପ୍ରଥମେ ନିଜ ମନରୁ କ୍ରୋଧ ତ୍ୟାଗ କରି ନିଜକୁ ସୁଧାରିବା ପାଇଁ ଚେଷ୍ଟା କରିବା ଦରକାର । ଯିଏ ନିଜକୁ ପ୍ରଥମେ ନ ସୁଧାରି ଅନ୍ୟକୁ ସୁଧାରିବା ପାଇଁ ଆଗେଇ ଆସେ ସେ କେବେହେଲେ ସଫଳତା ଲଭ କରେ ନାହିଁ ।

ଏଣୁ ପରମପିତା ପରମାତ୍ମା କହୁଛନ୍ତି— 'ହେ ବତ୍ସ ! ଯେପରି ମୁଁ ପ୍ରେମର ସାଗର, ତୁମ୍ଭେମାନେ ମଧ୍ୟ ପ୍ରେମ-ସ୍ୱରୂପ ଏବଂ ମଧୁର ସ୍ୱଭାବଧାରୀ ହୁଅ । ତୁମ୍ଭେମାନେ ସଦା ପ୍ରଫୁଲ୍ଲି ରହି ଏପରି ବାଣୀ ଉଚ୍ଚାରଣ କର ଯେ ଅନ୍ୟକୁ ତାହା ପୁଷ୍ପଭଳି ସୁଗନ୍ଧିତ ଏବଂ ରତ୍ନସଦୃଶ୍ୟ ଅମୂଲ୍ୟ ମନେ ହେବ । ତୁମ୍ଭେମାନେ କ୍ରୋଧର ବଶୀଭୂତ ହୋଇ କିଛି କହ ନାହିଁ । କାରଣ ଏପରି କହିବାବାଲାଙ୍କୁ ସଦ୍‌ଗୁରୁ ପରମାତ୍ମାଙ୍କର ନିନ୍ଦୁକ ବୋଲି କୁହାଯାଏ ଏବଂ ସେମାନଙ୍କୁ ସ୍ୱର୍ଗରେ ସ୍ଥାନ ମିଳେ ନାହିଁ । ବର୍ତ୍ତମାନ ତୁମ୍ଭେମାନେ ଶାନ୍ତ ଆଚରଣ କରି ଅନ୍ୟକୁ ଶାନ୍ତି ପ୍ରଦାନ କରିବାର ଶ୍ରେଷ୍ଠ କର୍ତ୍ତବ୍ୟ କର । ଫଳରେ ଅନ୍ୟମାନଙ୍କର ଶୁଭାଶୀର୍ବାଦ ଦ୍ୱାରା ତୁମ୍ଭମାନଙ୍କୁ ସ୍ୱର୍ଗରେ ସମ୍ପୂର୍ଣ୍ଣ ଏବଂ ସ୍ଥାୟୀ-ସୁଖ ଶାନ୍ତି ମିଳିବ ।''

**ଜିଜ୍ଞାସୁ** —ପିଲାମାନେ ପୁଚ୍ଛୁଛନ୍ତି କେଉଁଠି ? ଜିଦ୍ ସେମାନଙ୍କର ସବୁଠାରୁ ବଡ଼ ବଳ । ତେଣୁ ତ କ୍ରୋଧ କରିବାକୁ ପଡ଼ୁଛି ।

## କ୍ରୋଧଦ୍ୱାରା ସଂଶୋଧନ ନ ହୋଇ ବିଶେଷ କ୍ଷତି ହୁଏ ।

**ବ୍ରହ୍ମାକୁମାରୀ** –ଯଦି ଆପଣ ଜାଣୁଛନ୍ତି ଏବଂ ମାନୁଛନ୍ତି ଯେ ମାରିବା-ପିଟିବା ଦ୍ୱାରା ପିଲାର କୌଣସି ଶ୍ରେଷ୍ଠ ପରିବର୍ତ୍ତନ ହେଉନି, ତେବେ ଆପଣ ତା' ଉପରେ କ୍ରୋଧ କାହିଁକି କରୁଛନ୍ତି ଏବଂ ହାତ କାହିଁକି ଉଠାଉଛନ୍ତି ? ଆପଣ କ'ଣ ଏପରି ଚାହୁଁଛନ୍ତି ଯେ ଦିନେ ସେ ଘର ଛାଡ଼ି ଚାଲିଯାଉ କିମ୍ବା ବିଲ୍‌କୁଲ୍ ନିର୍ଲଜ୍ଜ ହୋଇ ଆପଣଙ୍କ

ସମ୍ମୁଖରେ କିଛି କିମ୍ବା କିମ୍ବା ଆପଣଙ୍କୁ ଡର ଡର ରୋଗୀ ଏବଂ ଦୁର୍ବଳ ହୋଇଯାଉ ଅଥବା ପାଗଳ ତଥା ଜଡ଼ ( Dull ) ହୋଇଯାଉ ? ସନ୍ତାନର ଜୀବନକୁ ଖରାପ କରି ଏବଂ ନିଜେ ପତନ ଏବଂ ଅଶାନ୍ତିର ପଥରେ ପଥିକ ହୋଇ ଆପଣ କ'ଣ ଭାବୁଛନ୍ତି ଯେ ପିତା ହିସାବରେ ଆପଣ ଆପଣଙ୍କର ଦାୟିତ୍ୱ ଠିକ୍ ଭାବରେ ପାଳନ କରୁଛନ୍ତି ?

**ଜିଜ୍ଞାସୁ**—ବାସ୍ତବରେ ନୁହେଁ, ମାତ୍ର ଏହାର ଅନ୍ୟ କୌଣସି ଉପାୟ ମୋତେ ଜଣାନାହିଁ । ମୁଁ ତା'ର ମଙ୍ଗଳ ଚାହୁଁଛି ଏବଂ ନିଜପାଇଁ ମଧ୍ୟ ଶାନ୍ତି ଚାହୁଁଛି, ପରନ୍ତୁ ତା'ର ବିପରୀତ ହେଉଛି । ତେଣୁ ମନରେ ଦୁଃଖ ଆସୁଛି । ବର୍ତ୍ତମାନ ଆପଣ କହନ୍ତୁ ଯେ ମୁଁ କ'ଣ କରିବି ?

## ପ୍ରଥମେ ନିଜକୁ ସୁଧାରନ୍ତୁ, ପରେ ଅନ୍ୟକୁ ଶିକ୍ଷା ଦେବେ ।

**ବ୍ରହ୍ମାକୁମାରୀ**—ଯଦି ଆପଣ ନିଜକୁ ନ ସୁଧାରିବେ ତେବେ ସନ୍ତାନ ଉପରେ ଆପଣଙ୍କର କି ପ୍ରଭାବ ପଡ଼ିବ ? ଆପଣ କ୍ରୋଧ କରୁଛନ୍ତି ତେଣୁ ଆପଣଙ୍କୁ ଦେଖି ଆପଣଙ୍କର ପଡ଼ୋଶୀ ମଧ୍ୟ ତା'ର ସନ୍ତାନମାନଙ୍କ ଉପରେ କ୍ରୋଧ କରୁଛି ଏବଂ ଏବଂ ମାଡ଼ ମଧ୍ୟ ଦେଉଛି । ଏ ସବୁ ଶିକ୍ଷା ତ ସେ ଆପଣଙ୍କଠାରୁ ପାଇଲା । ପ୍ରଥମେ ନିଜର ମନ-ବଚନ-କର୍ମରୁ କ୍ରୋଧକୁ ଦୂର କରନ୍ତୁ ଏବଂ ପରେ ଅନ୍ୟକୁ ଶିକ୍ଷା ଦିଅନ୍ତୁ । ନିଜେ ଠିକ୍ ନ ରହି ଅନ୍ୟକୁ କହିବା କ'ଣ ଠିକ୍ ?

ଆପଣ ତ ପରମପିତା ପରମାତ୍ମା ଶିବଙ୍କର ସନ୍ତାନ । କ୍ରୋଧକୁ ତ୍ୟାଗ କରିବାପାଇଁ ସେହି ପରମପିତା ବାରମ୍ବାର ଆପଣଙ୍କୁ କହୁଛନ୍ତି, ପରନ୍ତୁ ଆପଣ ଶୁଣୁଛନ୍ତି କେଉଁଠି ? ଯେପରି ଆପଣ ବର୍ତ୍ତମାନ ସୁଦ୍ଧା ଆପଣଙ୍କ ପୂର୍ବ ସଂସ୍କାରର ବଶୀଭୂତ, ସେହିପରି ସେ ଶ୍ରେଷ୍ଠ ଶିଶୁ ମଧ୍ୟ ତା'ର ସଂସ୍କାର ବଶୀଭୂତ ।

ଆପଣଙ୍କୁ ମଧ୍ୟ ବୁଝାଯାଇଛି ଯେ ବର୍ତ୍ତମାନ କଳିଯୁଗର ଅନ୍ତିମ ସମୟ । ସମସ୍ତ ଆତ୍ମାମାନଙ୍କର ଅବସ୍ଥା ଅତ୍ୟନ୍ତ ପତିତ ଏବଂ ସମସ୍ତଙ୍କର

ସଂସ୍କାର ଆସୁରୀ ଏବଂ ତମୋପ୍ରଧାନ । ସମସ୍ତେ ବିକାରର ବଶୀଭୂତ ହୋଇ ଦୈବୀ ଗୁଣ, ପବିତ୍ରତା ତଥା ଦୈବୀ ମର୍ଯ୍ୟାଦାକୁ ଭୁଲି ଯାଇଛନ୍ତି । ତେଣୁ ସମସ୍ତଙ୍କ କଲ୍ୟାଣପାଇଁ ପରମପିତା ପରମାତ୍ମା ପତିତପାବନ ଶିବ ଏହି ସୃଷ୍ଟିରେ ଅବତରିତ ହୋଇଛନ୍ତି । ଆପଣ କ'ଣ ଏକଥା ଭୁଲି ଯାଇଛନ୍ତି ?

ଏହି କଳିଯୁଗୀ ସୃଷ୍ଟିକୁ ପଞ୍ଚ ବିକାରରୂପୀ ମାୟା ତା'ର ମାୟା ଜାଲରେ ବାନ୍ଧି ରଖିଛି । ଏଥିରୁ କେହି ଛୁଟି ପାଇନାହାନ୍ତି । ବର୍ତ୍ତମାନ ଯେହେତୁ ସ୍ୱୟଂ ପରମପିତା ପରମାତ୍ମା ଆମ୍ଭମାନଙ୍କୁ ଏଥିରୁ ମୁକ୍ତ କରିବା-ପାଇଁ ଆସିଛନ୍ତି ସେହେତୁ ଆମ୍ଭମାନଙ୍କର ଶ୍ରେଷ୍ଠ ପୁରୁଷାର୍ଥ କରିବା ଉଚିତ ।

**ଜିଜ୍ଞାସୁ**—ଈଶ୍ୱରୀୟ ଜ୍ଞାନଦ୍ୱାରା ଶିଶୁମାନଙ୍କୁ କିପରି ଠିକ୍ ପଥକୁ ଅଣାଯାଇ ପାରିବ ?

**ବ୍ରହ୍ମାକୁମାରୀ**—ଏହି ଈଶ୍ୱରୀୟ ଜ୍ଞାନକୁ ଆପଣ କାର୍ଯ୍ୟ ବ୍ୟବହାରରେ ପ୍ରୟୋଗ କରନ୍ତୁ । ଆପଣ ବିଚାର କରିବା ଦରକାର ଯେ ଶ୍ରେଷ୍ଠ ଶିଶୁ ରୂପରେ ଏହି ଆତ୍ମା ବାସ୍ତବରେ ତା'ର ଅନେକ ଜନ୍ମର ଦୃଢ଼ ସଂସ୍କାରଦ୍ୱାରା ବଶୀଭୂତ । ଯଦି ତାର ସେହି ଖରାପ ସଂସ୍କାରକୁ ପରିବର୍ତ୍ତନ କରାଯାଏ ତେବେ ତା'ର ବିଶେଷ କଲ୍ୟାଣ ହେବ । ତେଣୁ ତା' ଉପରେ ଆପଣଙ୍କର ଦୟାଭାବ ଆସିବା ଉଚିତ, ମାତ୍ର ବାସ୍ତବ କ୍ଷେତ୍ରରେ ଆପଣ ତାକୁ ଘୃଣା କରୁଛନ୍ତି । ଯାହା ଫଳରେ ତା' ଉପରେ ଆପଣଙ୍କ କଥାର କୌଣସି ପ୍ରଭାବ ପଡ଼ୁନାହିଁ ଏବଂ ତା'ର ପ୍ରତିଦାନରେ ସେ ମଧ୍ୟ ଆପଣଙ୍କୁ ଘୃଣା କରିବା ଅଭ୍ୟାସ କରୁଛି ।

## ସଂସ୍କାରର ପରିବର୍ତ୍ତନ ଶିକ୍ଷା, ସତ୍‌ସଙ୍ଗ ଓ ଅଭ୍ୟାସ ଦ୍ୱାରା ସମ୍ଭବ; ମାଡ଼ ଦ୍ୱାରା ନୁହେଁ

ବିଚାର କଲେ ଜାଣିପାରିବା ଯେ ଗୋଟିଏ ଦିନରେ ସଂସ୍କାର ବଦଳି ପାରିବନାହିଁ । ତାକୁ ବଦଳାଇବା ପାଇଁ ଶ୍ରେଷ୍ଠ ଶିକ୍ଷା, ଶ୍ରେଷ୍ଠ

ସର୍ଚ୍ଚ ଏବଂ ଅଭ୍ୟାସ ଅତ୍ୟାବଶ୍ୟକ । ଏଣୁ ଶ୍ରେଷ୍ଠ ଶିଶୁକୁ ମାଡ଼ ଦେବା ପରିବର୍ତ୍ତେ ବୁଝାଇବା ଦରକାର । କାରଣ ବୁଦ୍ଧି ମନକୁ ନିୟନ୍ତ୍ରିତ କରେ ଏବଂ ମନ ନିୟନ୍ତ୍ରିତ ହୋଇପାରିଲେ କର୍ମ ମଧ୍ୟ ସ୍ଥାୟୀରୂପେ ନିୟନ୍ତ୍ରିତ ହୋଇପାରିବ । କର୍ମକୁ ପରିବର୍ତ୍ତନ କରିବାପାଇଁ ମନରେ ପରିବର୍ତ୍ତନ ଆଣିବା ଆବଶ୍ୟକ ଏବଂ ମନକୁ ସୁଧାରିବା ପାଇଁ ବୁଦ୍ଧିକୁ ସାତ୍ତ୍ୱିକ ଏବଂ ଶ୍ରେଷ୍ଠ ବିଚାରଯୁକ୍ତ କରିବା ମଧ୍ୟ ଆବଶ୍ୟକ । ବୁଦ୍ଧିର ସାତ୍ତ୍ୱିକତା ହିଁ ଈଶ୍ୱରୀୟ ଜ୍ଞାନ ଏବଂ ଯୋଗଦ୍ୱାରା ଏକମାତ୍ର ସମ୍ଭବ । ଏଣୁ ସନ୍ତାନକୁ ବାରମ୍ବାର ବୁଝାଇବା ଆପଣଙ୍କର କର୍ତ୍ତବ୍ୟ; ମାତ୍ର କ୍ରୋଧ କରିବା ନୁହେଁ । ଆପଣ ଯେତେବେଳେ ତା' ସହିତ ଆଦର ଏବଂ ସ୍ନେହରେ କଥାବାର୍ତ୍ତା କରିବେ ସେତେବେଳେ ସେ ଜ୍ଞାନ ଏବଂ ଶିକ୍ଷା ଶୁଣିବ ଏବଂ ମାନିବ । ଆପଣ କ୍ରୋଧଦ୍ୱାରା ସେ ହୁଏତ କିଛି ସମୟ ପାଇଁ ଦବିଯିବ, ମାତ୍ର ତାର ଆତ୍ମିକ ଅବନତି ନିଶ୍ଚିତ ଘଟିବ ।

ଜିଜ୍ଞାସୁ—ଏ କଥା ଠିକ୍ ଯେ ଶିଶୁମାନଙ୍କୁ କ୍ରୋଧ ନ କରି ସ୍ନେହ-ଯୁକ୍ତଭାବେ ବୁଝାଇବା ଉଚିତ । ପ୍ରଥମେ ପ୍ରଥମେ ଆମ୍ଭେମାନେ ତାକୁ ସ୍ନେହଯୁକ୍ତ ହୋଇ ବୁଝାଇଲୁ, ମାତ୍ର ଦେଖାଗଲା ଯେ ସେ ବେଶୀ ଖରାପ ଆଡ଼କୁ ଯାଉଛି ଏବଂ ସେତେବେଳେ ତା' ଉପରେ କ୍ରୋଧ କରିବା ଦରକାର ପଡ଼ିଲା, ମାତ୍ର ବର୍ତ୍ତମାନ ବିଶେଷ କ୍ରୋଧ କରିବା ସତ୍ତ୍ୱେ ମଧ୍ୟ ସେ ମାନିବାକୁ ନାହିଁ ।

## ସନ୍ତାନମାନେ ସ୍ନେହଦ୍ୱାରା ଖରାପ ନ ହୋଇ ମୋହଦ୍ୱାରା ଖରାପ ହୁଅନ୍ତି

ବ୍ରହ୍ମାକୁମାରୀ—ଆପଣ ପ୍ରଥମେ ସ୍ନେହ ଆଦରରେ ବୁଝାଇ ନ ଥିବେ; ଆପଣଙ୍କର ପ୍ରଥମେ ତା ସହିତ ମୋହ ଥିବ । ମୋହ ଯୋଗୁଁ ସନ୍ତାନମାନେ ହିଁ ନଷ୍ଟ ହୁଅନ୍ତି । ପ୍ରଥମେ ପ୍ରଥମେ ଶିଶୁ ଯେତେବେଳେ

ଖାଇବାପାଇଁ ବାରମ୍ବାର ମାଗେ କମ୍ବା କୌଣସି ପଦାର୍ଥ କିଣିବାପାଇଁ ପଇସା ମାଗେ ସେତେବେଳେ ମାତା ପିତା ତାର ଉଚିତ, ଅନୁଚିତ ଦାବୀକୁ ମୋହର ବଶୀଭୂତ ହୋଇ ପୂରଣ କରିଥାଆନ୍ତି । ପରନ୍ତୁ ଯେତେବେଳେ ତା'ର ଅଭ୍ୟାସ ହୋଇଯାଏ ଏବଂ ମାଗିବା ପରେ ମଧ୍ୟ ପଇସା ତାକୁ ମିଳେ ନାହିଁ, ସେତେବେଳେ ସେ ଚୋରି କରିବା ଆରମ୍ଭ କରେ ଏବଂ ପିତାମାତା ତାକୁ ମାଡ଼ ଦେବା ମଧ୍ୟ ଆରମ୍ଭ କରନ୍ତି । ଯଦି ପ୍ରଥମରୁ ମା ବାପା ମୋହବଶ ହୋଇ ନ ଥାନ୍ତେ ଏବଂ ତାକୁ ଅଯଥା ଖାଇବାପିଇବା ଏବଂ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ପଇସା ଦେଇ ନଥାନ୍ତେ ତେବେ ତା'ର ଖରାପ ଅଭ୍ୟାସ ହୋଇ ନଥାନ୍ତା କି ସେ ଚୋରି କରି ନ ଥାନ୍ତା । ପିତାମାତାଙ୍କର ମୋହ ଏବଂ ଖରାପ ଲାଳନପାଳନ ଯୋଗୁଁ ସନ୍ତାନମାନଙ୍କ-ଠାରେ ବିଭିନ୍ନ ଖରାପ ଅଭ୍ୟାସ ଦେଖା ଦେଇଥାଏ । ଏପରି କର୍ମକୁ 'ପ୍ରେମ' କହିବା ବଡ଼ ଭୁଲ୍ । ଯାହା ପ୍ରତି ଶୁଦ୍ଧ ପ୍ରେମ ରହେ ତା' ପ୍ରତି ସଦା କଲ୍ୟାଣର ଭାବନା ମନରେ ଜାଗ୍ରତ ହୁଏ । ପ୍ରେମର ବିକୃତ ରୂପକୁ ହିଁ ମୋହ କୁହାଯାଏ । ତେଣୁ ପ୍ରଥମେ ମୋହବଶ ଏବଂ ପରେ କ୍ରୋଧବଶ ହୋଇ ପିତାମାତା ସନ୍ତାନକୁ ଖରାପ କରନ୍ତି ଏବଂ କିଛିଦିନ ପରେ ସେମାନଙ୍କର କ୍ରୋଧର କୌଣସି ପ୍ରଭାବ ମଧ୍ୟ ସନ୍ତାନ ଉପରେ ପଡ଼େନାହିଁ ।

ତେଣୁ ଆପଣଙ୍କର ପ୍ରଥମ ପୁରୁଷାର୍ଥ ହେଉଛି ନିଜକୁ ସଦା ମୋହ ଏବଂ କ୍ରୋଧରୁ ରକ୍ଷା କରିବା ଏବଂ ସନ୍ତାନମାନଙ୍କୁ ଶାନ୍ତିପୂର୍ବକ ସେମାନଙ୍କର କଲ୍ୟାଣ ପାଇଁ ଉପଯୁକ୍ତ ଶିକ୍ଷା ଦେବା । ଏକଥା ମଧ୍ୟ ମନେରଖନ୍ତୁ ଯେ ଶ୍ରେଷ୍ଠ ଶିଶୁମାନଙ୍କର ସଂସ୍କାରକୁ ପରିବର୍ତ୍ତିନ କରିବାପାଇଁ ମଧ୍ୟ କିଛି ସମୟ ଲାଗିବ, ତେଣୁ ହତାଶ ଏବଂ ଅଧୈର୍ଯ୍ୟ ହେବା ମଧ୍ୟ ଠିକ୍ ନୁହେଁ ।

**ଜିଜ୍ଞାସୁ**—ଉପରୋକ୍ତ ଉପାୟ ବହୁତ ଭଲ ଅଛି, ମାତ୍ର ଏସବୁ ସତ୍ତ୍ୱେ ଯଦି ସନ୍ତାନ ଠିକ୍ ନ ହୁଏ ତେବେ କ'ଣ କରାଯିବ ?

## ଶାନ୍ତ ଏବଂ ଗମ୍ଭୀରତାରୂପୀ ଯୁକ୍ତି

**ବ୍ରହ୍ମାକୁମାରୀ** ଯଦି କ୍ରୋଧ କରିବା ପରେ ବି ଶିଶୁ ଠିକ୍ ବାଟକୁ ନ ଆସେ ତେବେ ଆପଣ କ'ଣ କରନ୍ତୁ ? ନିଶ୍ଚୟ ଚୁପ୍‌ଚାପ ହୋଇ ରହୁଥିବେ ନା ? ସେଥିପାଇଁ ପ୍ରଥମେ ସ୍ନେହ ଆଦର କରି ବୁଝାଇବାଦ୍ୱାରା ଏବଂ ଆମ୍ଭମାନଙ୍କର ନିଜ ନିଜ ବାସ୍ତବ ଜୀବନର ପ୍ରଭାବଦ୍ୱାରା ଯଦି ସନ୍ତାନର ଉନ୍ନତି ନ ହୁଏ ତେବେ ଧୈର୍ଯ୍ୟ ଏବଂ ଶାନ୍ତ ଅବଲମ୍ବନ କରିବା ଉଚିତ । ଏହା ଫଳରେ ନିଜର ସ୍ଥିତି ତ ଖରାପ ହେବନାହିଁ, ମନରେ କ୍ରୋଧ ମଧ୍ୟ ଜାତ ହେବନାହିଁ । ବରଂ ଉପଯୁକ୍ତ ଭାବରେ ଆମ୍ଭେମାନେ ନିଜର କର୍ତ୍ତବ୍ୟ ପାଳନ କରିପାରିବା ।

ଧରନ୍ତୁ, ପିଲାଟା ଖୁବ୍ ଦୁଷ୍ଟ ହୋଇଯାଇଛି । ଏପରି ଅବସ୍ଥା ଆସିଛି ଯେ ବହୁତ ବୁଝାଇବା ପରେ ମଧ୍ୟ ସେ କିଛି ମାନୁନାହିଁ । ତେବେ ତା' ସମ୍ମୁଖରେ ଆପଣ ନିଜ ଚେହେରାଟିକୁ ଟିକିଏ ଗମ୍ଭୀର ( Serious ) ରଖନ୍ତୁ, ଯାହାଦ୍ୱାରା ସେ ଅନୁଭବ କରିବ ଯେ ତା'ର କୌଣସି କାର୍ଯ୍ୟ ଆପଣଙ୍କୁ ଭଲ ଲାଗୁନାହିଁ, ମାତ୍ର ବାହାରେ ଗମ୍ଭୀର ରୂପ ଧାରଣ କରିଥିଲେ ସୁଦ୍ଧା ମନରେ ପ୍ରସନ୍ନ ରହନ୍ତୁ । ଏପରି ଭାବନ୍ତୁ ଯେ "ସନ୍ତାନମାନଙ୍କର କଲ୍ୟାଣ ପାଇଁ ଏବଂ ସେମାନଙ୍କୁ ସୁଧାରିବା ପାଇଁ ଜାଣିଶୁଣି ମୁଁ ଗମ୍ଭୀର ହୋଇଛି ।" ଭିତରେ ସଦା ଶାନ୍ତ ରହନ୍ତୁ । କ୍ରୋଧର ବଶୀଭୂତ ହୋଇ ସନ୍ତାନକୁ କିଛି କହନ୍ତୁ ନାହିଁ । ପ୍ରଥମେ ଆପଣ ନିଜର ଅବସ୍ଥାକୁ ସବୁବେଳେ ଠିକ୍ ରଖିବାପାଇଁ ସାବଧାନ ରହନ୍ତୁ ଏବଂ ପରେ ପିଲାକୁ ସାବଧାନ ରହିବା ପାଇଁ କହନ୍ତୁ । ସାବଧାନ କରାଇବା ସମୟରେ ସାକ୍ଷୀ ଅବସ୍ଥାରେ ରହନ୍ତୁ । କେବେ ଭାବନ୍ତୁ ନାହିଁ ଯେ—"ଏ ହେଉଛି ମୋର ସନ୍ତାନ, ତେଣୁ ମୋ କଥା ତାକୁ ମାନିବାକୁ ପଡ଼ିବ, ନଚେତ୍ ତାକୁ ସିଧା କରିଦେବି ।"

**ଜିଜ୍ଞାସୁ**—ଏ ନିୟମ ଅତି ଉତ୍ତମ ଏବଂ ମୁଁ ମଧ୍ୟ ଭଲଭାବରେ ବୁଝିପାରିଲି । ବର୍ତ୍ତମାନ ଏହି ବାଟରେ ମୁଁ ନିଜକୁ ଚଳାଇବାକୁ ଚେଷ୍ଟା

କରିବ । ମାତ୍ର ଯେତେବେଳେ ମନୁଷ୍ୟ ଦେଖିବ ଯେ ତା'ର ସନ୍ତାନ ବିପଥଗାମୀ ହେଉଛି, ସେତେବେଳେ ତା' ମନରେ ନିଶ୍ଚୟ ଦୁଃଖ ଆସିବ ଏବଂ ଏହି ଦୁଃଖ ଯୋଗୁ ତା' ମନରେ କ୍ରୋଧ କିମ୍ବା ଉଦ୍‌ବେଗ ଦେଖାଦେବ । ଏହାର ସମାଧାନର ଉପାୟ କ'ଣ ?

## ସୃଷ୍ଟି ରୂପୀ ନାଟକରେ ପ୍ରତ୍ୟେକ ଅଭିନେତାର ଭିନ୍ନ ଭିନ୍ନ ଅଭିନୟକୁ ସଦା ସ୍ମରଣ କରନ୍ତୁ

**ବ୍ରହ୍ମାକୁମାରୀ**—ଆପଣ କହୁଛନ୍ତି ଯେ ସନ୍ତାନକୁ ବିପଥଗାମୀ ହେବାର ଦେଖିଲେ ମନରେ ଦୁଃଖ ଆସୁଛି, ମାତ୍ର ନିଜେ କ୍ରୋଧ କରିବାଦ୍ୱାରା ନିଜର ଯେଉଁ ଖରାପ ସଂସ୍କାର ଦୃଢ଼ୀଭୂତ ହେଉଛି ସେଥିରୁ କ'ଣ ଆପଣଙ୍କୁ ସୁଖ ମିଳୁଛି ? କ୍ରୋଧୀ ବ୍ୟକ୍ତି ଅନ୍ୟକୁ ଅଶାନ୍ତ କରିବା ସଙ୍ଗେ ସଙ୍ଗେ ତା'ର ଉଗ୍ର ସ୍ୱଭାବଦ୍ୱାରା ସାରା ବାୟୁମଣ୍ଡଳକୁ ମଧ୍ୟ ଦୂଷିତ କରିଦିଏ । ଏଣୁ ଯେଉଁ ମାନବ ଆଜି ବାସ୍ତବିକ ଶାନ୍ତି ପାଇବା ପାଇଁ ଚେଷ୍ଟା କରୁଛି, ସେ କ୍ରୋଧରୂପୀ ଅଗ୍ନି ନିକଟକୁ ଯିବା ଉଚିତ ନୁହେଁ । କାରଣ ଏହି ଅଗ୍ନି ମାନବର ସୁଖକୁ ଭସ୍ମ କରିଦିଏ ଏବଂ ତାର ଜୀବନକୁ ଆକାଶରୁ ଟାଣିଆଣି ମାଟିରେ ମିଶାଇ ଦିଏ । ଯେଉଁ ମନୁଷ୍ୟ କ୍ରୋଧ କରେ ତା' ବିଷୟରେ ଲୋକମାନେ କହନ୍ତି ଯେ "ସେ ନିଜଠାରୁ ଅଲଗା ହୋଇଯାଇଛି", ଅର୍ଥାତ୍ ସେ ସମୟରେ ନିଜର ପ୍ରକୃତ ଧର୍ମ ଏବଂ ରୂପକୁ ସେ ଭୁଲିଯାଏ । ଆମ୍ଭେମାନେ ମଧ୍ୟ ଦେଖୁଛେ ଯେ କ୍ରୋଧୀ ମାନବ ତା'ର ବୁଦ୍ଧି ଏବଂ ବିବେକକୁ ହରାଇଦିଏ ଏବଂ ସେ ସମୟରେ ସେ ନିଜର କିମ୍ବା ଅନ୍ୟର ଆଗପଛ ମଧ୍ୟ ବିଚାର କରେ ନାହିଁ । ତେଣୁ ନିଜକୁ ସୁଧାରିବା ପାଇଁ ଇଚ୍ଛା କରୁଥିବା ବ୍ୟକ୍ତି କେବେହେଲେ ନିଜକୁ ଭୁଲି ବାହାରକୁ ଯିବନାହିଁ, ଅର୍ଥାତ୍ ସଦା ସ୍ୱଚିନ୍ତନରେ ମଗ୍ନ ରହିବ ।

ଯେତେବେଳେ ମନୁଷ୍ୟ ନିଜ ବୁଦ୍ଧିରେ ପୂରା ସଚେତନ ନ ଥାଏ, ସେତେବେଳେ ସେ ଅନ୍ୟ ଦ୍ୱାରା ଦୁଃଖୀ ହୁଏ । ଆପଣଙ୍କୁ କୁହାଯାଇଛି ଯେ ଏ

ସୃଷ୍ଟି ବଡ଼ ବିଚିତ୍ର, ଯେଉଁଥିରେ କି ଜଣେ ଅନ୍ୟ ଜଣଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏଥିରେ ପ୍ରତ୍ୟେକଙ୍କର କର୍ମ-ସୂଚୀ ମଧ୍ୟ ଭିନ୍ନ ଭିନ୍ନ । ତେଣୁ ଯୁକ୍ତି-ଯୁକ୍ତ ପ୍ରଯତ୍ନ କରିବା ସତ୍ତ୍ୱେ ଯଦି କୌଣସି ସନ୍ତାନର ପୂର୍ବ-ସଂସ୍କାର ନ ବଦଳିଲା ତେବେ ଭାବିବା ଉଚିତ ଯେ—"ଏହି ସନ୍ତାନର କେତେକ ପୂର୍ବ ସଂସ୍କାର ହିଁ ଏପରି କଠିନ ଓ ଦୃଢ଼ ଅଛି । ଏହାର ଭାଗ୍ୟ ଅଥବା କର୍ମ ଏହି ପ୍ରକାରର ଅଛି । ଏହି ବିଶାଳ ସୃଷ୍ଟିରୂପୀ ନାଟକରେ ଏହାର ଅଭିନୟ ଏହିପରି ନିର୍ଦ୍ଦିଷ୍ଟ ରହିଛି । ଏହାର ପୂର୍ବଜନ୍ମର ହିସାବ (କର୍ମଫଳ) ନିକାଶ କରିବା ପାଇଁ ଏ ମୋ ପାଖରେ ଜନ୍ମ ନେଇଛି, ତେଣୁ ଏହି ଆତ୍ମାର ବିଶ୍ୱରଧାରା ମୋର ବିଶ୍ୱରଧାରାଠାରୁ ଭିନ୍ନ । ମୁଁ ଯଥାସମ୍ଭବ ଏପରି ଉଦ୍ୟମ କରୁଛି, ଯେପରିକି ତା'ର ଭବିଷ୍ୟତ ଉଜ୍ଜ୍ୱଳ ହେବ । ମାତ୍ର ଯଦି ସେ ନିଜେ ତା'ର ଅକଲ୍ୟାଣ କରୁଛି, ତେବେ ଜାଣିବାକୁ ହେବ ଯେ ତା'ର ଏ ପୂର୍ବଜନ୍ମର କର୍ମଫଳ !" ଏହିପରି ବିଚାର କରି ସନ୍ତୁଷ୍ଟ ଏବଂ ଶାନ୍ତ ରହିବା ଉଚିତ । କ୍ରୋଧ କଲେ କ'ଣ ଲାଭ ? କ୍ରୋଧ କରିବାଦ୍ୱାରା ନିଜକୁ ଜଳାଇବା ସଙ୍ଗେ ସଙ୍ଗେ ଅନ୍ୟକୁ ଜଳାଇବା ତଥା କନ୍ଦାଇବା ହିଁ ସାର ହେବ । ଏହାର ଅର୍ଥ ନିଜକୁ ଦୁଃଖ ଦେବା ସଙ୍ଗେ ସଙ୍ଗେ ଅନ୍ୟକୁ ମଧ୍ୟ ଦୁଃଖ ଦେବା । ତେଣୁ ମନୁଷ୍ୟ ଏପରି ଅଗ୍ନିଠାରୁ ଦୂରରେ ରହିବାପାଇଁ ଚେଷ୍ଟା କରିବା ଦରକାର, ଯାହା ଫଳରେ ଏହି ଅଗ୍ନିର ତାପ ମଧ୍ୟ ତାକୁ ସ୍ପର୍ଶ କରିପାରିବ ନାହିଁ ।

ଯେତେବେଳେ ବୁଦ୍ଧିରେ ଈଶ୍ୱରୀୟ ଜ୍ଞାନର ମନନ-ଚିନ୍ତନ ନହୁଏ, ସେତେବେଳେ ମନରେ କ୍ରୋଧ ଉତ୍ପନ୍ନ ହୁଏ । ଯଦି ମନୁଷ୍ୟର ସ୍ମରଣ ରହିବ ଯେ—"ବର୍ତ୍ତମାନ କଳିଯୁଗ, ସମସ୍ତଙ୍କର ସଂସ୍କାର ତମୋଗୁଣୀ ସମସ୍ତେ ବିକାରର ବଶୀଭୂତ । ମୋଠାରେ ମଧ୍ୟ କେତେକ ଦୁର୍ଗୁଣ ଅଛି ଏବଂ ଏଗୁଡ଼ିକୁ ଜ୍ଞାନଦ୍ୱାରା ମୋତେ ପରିତ୍ୟାଗ କରିବାକୁ ହେବ । ଜ୍ଞାନ-ନିଷ୍ଠ ହୋଇ ମତେ ଅନ୍ୟ ସଙ୍ଗେ ସହଯୋଗ କରିବାକୁ ହେବ, ଯାହାଦ୍ୱାରା କି ସେ ମାୟାର କବଳରୁ ରକ୍ଷା ପାଇପାରିବ ଏବଂ ସେ

କ୍ରୋଧଠାରୁ ସର୍ବଦା ଦୂରରେ ରହିପାରିବ ।" ଆଜିକାଲିର ସନ୍ତାନମାନେ "ଭୋଗ-ବଳ"ରେ ଜନ୍ମ ନେଉଛନ୍ତି । ଏମାନେ ସତ୍ୟଯୁଗୀ 'ଯୋଗବଳ' ଦ୍ୱାରା ଜନ୍ମ ନେଉଥିବା ଦେବତା ନୁହଁନ୍ତି । ଏମାନେ ମଧ୍ୟ ସତୋପ୍ରଧାନ ବୃତ୍ତି ଏବଂ ସ୍ଥିତିର ବହୁତ ଦୂରରେ । ଯେତେବେଳେ ଅଜ୍ଞାନତା ଦେହ-ଅଭିମାନ ଏବଂ କାମ-ବିକାରରୁ ଏମାନଙ୍କର ଜନ୍ମ, ସେତେବେଳେ ସେମାନେ ଯେ ଜନ୍ମରୁ ଦେବତା ହେବେ, ଏପରି ଆଶା ରଖିବା ସମ୍ପୂର୍ଣ୍ଣ ନିରର୍ଥକ । କାରଣ ଏହା ଏକ ମିଥ୍ୟା ଆଶା । ଏମାନେ ଦେବତା ନୁହନ୍ତି, ତେଣୁ ଜ୍ଞାନ-ବଳ ଏବଂ ପ୍ରେମ-ବଳ ଦ୍ୱାରା ସେମାନଙ୍କୁ ଦେବତାରୂପେ ଗଢ଼ିବାପାଇଁ ଉଦ୍ୟମ କରିବା ଦରକାର ।

ଜ୍ଞାନର ମନନ-ଚିନ୍ତନ ତଥା ଈଶ୍ୱରୀୟ ସ୍ମୃତି ଅର୍ଥାତ୍ ଯୋଗ ହିଁ ହେଉଛି ଏକମାତ୍ର ଅଦ୍ୱିତୀୟ କଟୁରୀ, ଯାହାଦ୍ୱାରା ଆମ୍ଭେମାନେ କାମ, କ୍ରୋଧାଦି ବିକାରରୂପୀ ଜାଲକୁ କାଟି ମୁକ୍ତ ହୋଇପାରିବା । ଆଜିର ଦୁନିଆଁରେ ସମସ୍ତ ଆତ୍ମାରୂପୀ ପକ୍ଷୀ ଏହି ଜାଲର ବନ୍ଧନରେ ବାନ୍ଧି ହୋଇ ରହିଛନ୍ତି । ଏହି ଜାଲକୁ କାଟିବା ପାଇଁ ବର୍ତ୍ତମାନ ପରମପିତା ପରମାତ୍ମା ଆମ୍ଭମାନଙ୍କୁ ଜ୍ଞାନ ଏବଂ ଯୋଗରୂପୀ ଅସ୍ତ୍ର ଦେଇଛନ୍ତି । ଏହାକୁ ପ୍ରୟୋଗ କରିବା ହେଉଛି ଆମ୍ଭମାନଙ୍କର କର୍ତ୍ତବ୍ୟ ଏବଂ ଯଥା ସମୟରେ ଏହି ଜ୍ଞାନ-ବିନ୍ଦୁକୁ ଉପଯୋଗ କରିବାର ନିୟମ ଜାଣି କାର୍ଯ୍ୟକ୍ଷେତ୍ରରେ ତାହା ବ୍ୟବହାର କରିବା ଉଚିତ ।

## କ୍ରୋଧାଗ୍ନି କିପରି ଶାନ୍ତ ହେବ ?

କୌଣସି କୌଣସି କାରଣରୁ ଚାକର, ମାଳୀ ଏବଂ ମୂଲିଆମାନଙ୍କ ଉପରେ ଜ୍ଞାନବାନ ବ୍ୟକ୍ତିମାନେ ମଧ୍ୟ କ୍ରୋଧ କରନ୍ତି ଏବଂ ସମୟେ ସମୟେ ସେମାନଙ୍କ ମନରେ ଧାରଣା ଆସେ ଯେ ମାଡ଼ ଦେଲେ ସେମାନେ ନିଜର ଭୁଲ ମାନିଯିବେ । ମାତ୍ର ଜ୍ଞାନବାନ୍ ବ୍ୟକ୍ତି ସେ ସମୟରେ ବିଚାର କରିବା ଉଚିତ ଯେ କ୍ରୋଧ କରିବା କମ୍ବା ଏପରି

ଏକ ସାଧାରଣ ନିର୍ଦ୍ଧନ ମନୁଷ୍ୟକୁ ମାଡ଼ଦେବା ଅର୍ଥ ଶାନ୍ତ ସ୍ୱଭାବର ଫଳସ୍ୱରୂପ ଅଦୂର ଭବିଷ୍ୟତରେ ସେମାନେ ଯେଉଁ ସ୍ୱର୍ଗର ରାଜ-ସିଂହାସନ ଲାଭ କରିଥାନ୍ତେ, ତାହାକୁ ଚିରଦିନ ପାଇଁ ହରାଉଛନ୍ତି । ଏପରି ଲୋକଙ୍କୁ ମାଡ଼ ମାରି ତା'ର ଇଜ୍ଜତ ନେବା ଅର୍ଥ ପବିତ୍ରତାର ଫଳସ୍ୱରୂପ ନିକଟରେ ଯେଉଁ ଦେବମୁକୁଟ ସେମାନଙ୍କୁ ମିଳିଥାନ୍ତା, ତାକୁ ମସ୍ତକରୁ ଉତ୍ତାରି ସେମାନେ ତଳେ ରଖିଦେଉଛନ୍ତି । କ୍ରୋଧ ବାସ୍ତବରେ ମାନବର ମନକୁ ଜଳାଇବା ସଙ୍ଗେ ସଙ୍ଗେ ଶରୀରକୁ ମଧ୍ୟ ଜଳାଏ । ଭାଗ୍ୟକୁ ଦଗ୍‌ଧ କରେ, ପୁଣ୍ୟକୁ ଭସ୍ମ କରେ ଏବଂ ଦିବ୍ୟ ପୁରୁଷାର୍ଥକୁ ପାଉଁଶରେ ପରିଣତ କରେ । ଏହି କ୍ରୋଧ ଏପରି ଏକ ଅଗ୍ନି, ଯିଏ କି ମାନବର ମନ-ବୁଦ୍ଧିରେ ପ୍ରଜ୍ଜ୍ୱଳିତ ହୋଇ ତାକୁ ସବୁବେଳେ ଅଶାନ୍ତ କରେ । ଏଣୁ ଜ୍ଞାନବାନ୍ ବ୍ୟକ୍ତି ଅଘଟଣ ଘଟିବା ସମୟରେ କ୍ରୋଧ ନ କରି ପ୍ରେମଦ୍ୱାରା ଅନ୍ୟର ମନକୁ ପରିବର୍ତ୍ତନ କରିବା ପାଇଁ ସର୍ବଦା ଚେଷ୍ଟା କରିବା ଉଚିତ ।

ଜିଜ୍ଞାସୁ—ଶିଶୁମାନଙ୍କୁ ସଂଶୋଧନ କରି ଠିକ୍ ବାଟକୁ ଆଣିବାର ନିୟମ ଆପଣ ଶିକ୍ଷାଦେଲେ । ବାସ୍ତବିକ ଶିଶୁମାନଙ୍କର ବୁଦ୍ଧିର ଉପଯୁକ୍ତ ବିକାଶ ଯଦିଓ ବର୍ତ୍ତମାନ ଘଟିନାହିଁ, ସେମାନେ ସମୟକ୍ରମେ ଧୀରେ ଧୀରେ ଅନେକ ଅନେକ କଥା ଠିକ୍ ରୂପେ ବୁଝିପାରିବେ । ଯଦି ଏ ଉପାୟରେ ନ ଶିଖନ୍ତି, ତେବେ ବିପଦରେ ପଡ଼ିଲେ ଶିଖିବେ । ମାତ୍ର ଏହାଛଡ଼ା ଘର ଭିତରେ କ୍ରୋଧ ଏବଂ ଉତ୍ତେଜନା ନିମିତ୍ତ ଅନ୍ୟ କେତେକ କାରଣ ମଧ୍ୟ ଆସି ସମ୍ମୁଖରେ ଉପସ୍ଥିତ ହୁଏ । ଅନେକ ସମୟରେ ଏପରି ହୁଏ ଯେ ସ୍ତ୍ରୀର ବିଚାର ସହିତ ସ୍ୱାମୀର ବିଚାର ମେଳ ଖାଏନି । ଆଜିକାର ସଂସାରରେ ପତି-ପତ୍ନୀ, ବାପ ପୁଅ ଏବଂ ଭାଇ-ଭାଇ ମଧ୍ୟରେ ମତଭେଦ ହେବା ଏକ ସାଧାରଣ କଥା । ଏସବୁ କାରଣରୁ ଅନେକ ସମୟରେ ଘରେ କଳହ ସୃଷ୍ଟି ହୁଏ ଏବଂ ନ ଚାହୁଁଥିଲେ ସୁଦ୍ଧା ମନରେ କ୍ରୋଧ ଜାତ ହୁଏ । ଯଦିଓ କ୍ରୋଧ କରିବା ଏକ ଖରାପ କାର୍ଯ୍ୟ ତଥାପି କେବେ କେବେ ପରିସ୍ଥିତି ଦୃଷ୍ଟିରୁ

ମାନବ ସ୍ୱତଃ କ୍ରୋଧର ବଶୀଭୂତ ହୋଇଯାଏ । ଏହାର ନିବାରଣର ଉପାୟ କ'ଣ ?

ବ୍ରହ୍ମାକୁମାରୀ—ଈଶ୍ୱରୀୟ ଜ୍ଞାନ ଶୁଣିବା ପରେ ଆପଣ ଜାଣିପାରିଛନ୍ତି ଯେ କ୍ରୋଧ ହେଉଛି ଏକ ବଡ଼ ବିକାର । ବର୍ତ୍ତମାନ ଯଦି ଆପଣଙ୍କ ମନରେ କେବେ କ୍ରୋଧ ଆସୁଛି, ସେତେବେଳେ ଆପଣଙ୍କର ବିଗ୍ଭରିବା ଉଚିତ ଯେ, "ମୁଁ ଯାହା କରୁଛି ଠିକ୍ କରୁନି ବରଂ ବିକର୍ମ କରୁଛି ଏବଂ ପାପରେ ଭାଗୀ ହେଉଛି ।" ଯଦି ଆପଣ ବିଶେଷଭାବେ କ୍ରୋଧର ବଶୀଭୂତ ହୋଇଥାଆନ୍ତି, ତେବେ ଚାର୍ଟ୍ ଏବଂ ପରିସ୍ଥିତି ଶେଷରେ ଆପଣ ଆପଣଙ୍କ ଭୁଲ ନିଶ୍ଚୟ ବୁଝିପାରିବେ । ତେଣୁ ଯେ କୌଣସି ପରିସ୍ଥିତି ଆସୁନା କାହିଁକି, କ୍ରୋଧ ନ କରିବାହିଁ ହେଉଛି ସର୍ବୋତ୍କୃଷ୍ଟ ପନ୍ଥା ।

ଜିଜ୍ଞାସୁ—ସାଧାରଣତଃ କ୍ରୋଧ କରିବା ସମୟରେ ମଧ୍ୟ ମଝିରେ ମଝିରେ ମନରେ ଏହି ଭାବ ଆସେ ଯେ—"ମୁଁ ଈଶ୍ୱରୀୟ ଜ୍ଞାନର ବିରୁଦ୍ଧ କର୍ମ କରୁଛି", ମାତ୍ର ଏପରି ଶୁଦ୍ଧ ଭାବନା ଆସି ମଧ୍ୟ କ୍ରୋଧର ଶାନ୍ତ ହୁଏ ନାହିଁ; କାରଣ ସେହି ସମୟରେ ମନରେ ଅନ୍ୟ ଏକ ଭାବ ମଧ୍ୟ ଜାତ ହୁଏ—"ଆଜିର ଦୁନିଆଁରେ କ୍ରୋଧ ନ କଲେ ଲୋକମାନେ କଥା ମାନିବାକୁ ମଧ୍ୟ ନାରାଜ । ତେଣୁ ସମୟ ସମୟରେ ମୁଁ ଭାବୁଛି ଯେ କ୍ରୋଧ କରିବାହିଁ ଠିକ୍, କାରଣ ଲୋକେ ମୋ ସହିତ ଅନୁଚିତ ବ୍ୟବହାର କରୁଛନ୍ତି ଏବଂ ମୋତେ ସମ୍ମାନ ମଧ୍ୟ ଦେଉନାହାନ୍ତି ।"

ବ୍ରହ୍ମାକୁମାରୀ—ଆପଣ କାହିଁକି ଭାବୁଛନ୍ତି ଯେ ଆପଣ ଯାହା କହିବେ ତାକୁ ସମସ୍ତେ ମାନିବେ ଏବଂ ଆପଣ ଯେଉଁ ପ୍ରକାର ସମ୍ମାନ ଚାହୁଁଛନ୍ତି ସେହି ପ୍ରକାର ସମ୍ମାନ ସମସ୍ତେ ଆପଣଙ୍କୁ ଦେବେ ? ଆପଣଙ୍କ ବିଗ୍ଭରଧାରା ସହିତ ଅନ୍ୟମାନଙ୍କର ବିଗ୍ଭରଧାରା ମିଳିଯିବ ଏପରି କିଛି କଥା ଅଛି ? ଆପଣ କହୁଛନ୍ତି ଯେ ଅନ୍ୟମାନେ ଆପଣଙ୍କ ପ୍ରତି ଅନୁଚିତ ବ୍ୟବହାର

ଦେଖାଉଛନ୍ତି; କିନ୍ତୁ ସ୍ଥିର ଚିତ୍ତରେ ଆପଣ ନିଜର ବ୍ୟବହାର ବିଷୟରେ ଟିକିଏ ଚିନ୍ତାକରି କହନ୍ତୁ ତ ଆପଣଙ୍କର ଏତେବଡ଼ ଦାବି କ'ଣ ବାସ୍ତବରେ ଯୁକ୍ତିଯୁକ୍ତ ?

## ଏହି ସୃଷ୍ଟିରେ ବିଭିନ୍ନତା ତଥା ଅନୈକ୍ୟ ତ ରହିଛି, ଏଣୁ ମତଭେଦ ଘଟିଲେ ଉତ୍ତେଜିତ ହେବା ଠିକ୍ ନୁହେଁ ।

ଆପଣଙ୍କୁ ଯେତେବେଳେ ମନୁଷ୍ୟ-ସୃଷ୍ଟିରୂପୀ କଳ୍ପ-ବୃକ୍ଷର ଜ୍ଞାନ ଦିଆଯାଇଥିଲା, ସେତେବେଳେ କୁହାଯାଇଥିଲା କି ସତ୍ୟ ଏବଂ ତ୍ରେତା ଯୁଗରେ ସମସ୍ତେ ସତୋଗୁଣୀ ଏବଂ ଏକମତ ହୁଅନ୍ତି, କାରଣ ପୂର୍ବକାଳରେ ସମସ୍ତେ ଈଶ୍ୱରୀୟ ମତ ଅର୍ଥାତ୍ ଈଶ୍ୱରୀୟ ଜ୍ଞାନକୁ ଧାରଣ କରିଥାଆନ୍ତି, କିନ୍ତୁ ଦ୍ୱାପର ଯୁଗଠାରୁ ଦ୍ୱୈତ ଏବଂ ଅନେକତା ଆରମ୍ଭ ହୁଏ । ଯେପରି ବୃକ୍ଷର ଗଣ୍ଡି ଏକ ହୋଇଥିଲେ ସୁଦ୍ଧା ବୃକ୍ଷ ଧୀରେ ଧୀରେ ବଢ଼ିବା ଫଳରେ ତା'ର ଅନେକ ଶାଖା, ପ୍ରଶାଖା ଏବଂ ପତ୍ର ଇତ୍ୟାଦି ଦେଖାଦିଏ, ମନୁଷ୍ୟ-ସୃଷ୍ଟିର ଅବସ୍ଥା ମଧ୍ୟ ସେହିପରି । ଏହି ସୃଷ୍ଟି ଏକ ବୃକ୍ଷ ସଦୃଶ୍ୟ ବଢ଼େ । କଳିଯୁଗର ଅନ୍ତ ସମୟରେ ଏଥିରେ ଏପରି ମତ-ମତାନ୍ତର ହୁଏ ଯାହାକୁ କି ଗଣନା କରାଯାଇ ନ ପାରେ । ଏତଦ୍‌ବ୍ୟତୀତ ମାୟାର ରଜତ୍ୱ ହେତୁ ଅନେକତା ଦେଖାଦିଏ । ମାତ୍ର ଆପଣ ଜାଣନ୍ତି ଯେ ଈଶ୍ୱର ଏକ, ତାଙ୍କର ମତ ମଧ୍ୟ ଏକ; ତେଣୁ ସେହି ଏକ ଈଶ୍ୱରୀୟ ମତକୁ ଜାଣିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଏକତା ରହେ । କିନ୍ତୁ ମନୁଷ୍ୟ ତ ଅନେକ, ସେମାନଙ୍କର ମତ ମଧ୍ୟ ଅନେକ; ତେଣୁ ଏହି କଳିଯୁଗୀ ସୃଷ୍ଟିରେ ଯେତେବେଳେ ପ୍ରତ୍ୟେକଙ୍କ ପାଖରେ ଈଶ୍ୱରୀୟ ଜ୍ଞାନର ଅଭାବ, ସେତେବେଳେ ଏଠାରେ ଏକମତର ଆଶା ପୋଷଣ କରିବା ମଧ୍ୟ ସମ୍ପୂର୍ଣ୍ଣ ନିରର୍ଥକ । ଯଦି କୌଣସି ବ୍ୟକ୍ତିର ମତ ଆମ୍ଭମାନଙ୍କଠାରୁ ଭିନ୍ନ, ତେବେ ସେ ବ୍ୟକ୍ତିକୁ ନିଜ ସହିତ ସହମତ କରାଇବା ପାଇଁ ତାକୁ ବୁଝାଇବା, ତା ପ୍ରତି ସ୍ନେହଶୀଳ ହେବା ଏବଂ ସହାନୁଭୂତି ଦେଖାଇବା ହିଁ ଉପଯୁକ୍ତ ପନ୍ଥା । ଅନ୍ୟକୁ ସମ୍ମାନ

ଦେଇପାରିଲେ ଆପଣଙ୍କୁ ସ୍ୱତଃ ସମ୍ମାନ ମିଳେ ଏବଂ ଯଦି ଅନ୍ୟ ପ୍ରତି ଆମର ଶୁଭ ସ୍ନେହଭାବ ରହେ, ତେବେ ସେହି ସ୍ନେହ ବଦଳରେ ସେ ଆମପାଇଁ ସବୁକିଛି କରିବାକୁ ପ୍ରସ୍ତୁତ ହୋଇଯାଏ । କ୍ରୋଧଦ୍ୱାରା କେହି କାହାକୁ ବୁଝାଇ ପାରିବେ ନାହିଁ, ବରଂ କ୍ରୋଧଦ୍ୱାରା ଜଣେ ଅନ୍ୟ ଜଣକ ମନରେ ଭୟ ଏବଂ ଅଶାନ୍ତି ସୃଷ୍ଟି କରିଦେଇ ଥାଏ । ତେଣୁ କ୍ରୋଧ ହେଉଛି ଏକ ଅସୁସ୍ଥ ଲକ୍ଷଣ ଏବଂ ପ୍ରେମ ହେଉଛି ଏକ ଈଶ୍ୱରୀୟ ଗୁଣ ।

## କ୍ରୋଧୀ ଅନ୍ୟଙ୍କୁ ଦୁଃଖ ଦେଉଥିବା ହେତୁ ନିଜେ ମଧ୍ୟ ଦୁଃଖ ପାଏ ।

କ୍ରୋଧୀ ମାନବର ଜିହ୍ୱା ତରବାରିର ତୀକ୍ଷ୍ଣ ଧାରଠାରୁ ମଧ୍ୟ ଅଧିକ ଶକ୍ତିଶାଳୀ । ତା'ର କଥାଗୁଡ଼ାକ ଅନ୍ୟକୁ ଖଣ୍ଡେ ଖଣ୍ଡେ ପଥର ପରି ଆଘାତ କରେ । ତା'ର ଶବ୍ଦଗୁଡ଼ିକ ଲୁହାବୁହା ଟ୍ୟାସ୍‌ଠାରୁ ଅଧିକ ମାରାତ୍ମକ । ତେଣୁ ଲୋକମାନେ ଆଖିରୁ ଲୁହ ଗଡ଼େଇବା ସଙ୍ଗେ ସଙ୍ଗେ ମନ ଭିତରେ ମଧ୍ୟ କାନ୍ଦନ୍ତି । କ୍ରୋଧୀର ଶବ୍ଦ ମନୁଷ୍ୟର ହୃଦୟକୁ ବିଦ୍ଧ କରି ତାକୁ କଷ୍ଟ ଦିଏ । ଏଣୁ ଦୁଃଖୀ ମନୁଷ୍ୟର ହୃଦୟ ଭିତରୁ ଯେଉଁ ନିଆଁ ବାହାରେ ତାହା କ୍ରୋଧୀ ମାନବକୁ ଦଗ୍‌ଧ କରି ତା ଜୀବନକୁ ମଧ୍ୟ ଦୁଃଖମୟ କରିଦିଏ । ତେଣୁ କ୍ରୋଧାବିଷ୍ଟ ଲୋକ କଥା କହୁଥିଲାବେଳେ ମନେହୁଏ ଯେ ଯେପରି କହୁଛି, "ମୋ ଭିତରେ ନିଆଁ ଜଳୁଛି ।"

କ୍ରୋଧୀ ମନୁଷ୍ୟ କହେ, "ଲୋକେ ମୋ କଥା ମାନୁନାହାନ୍ତି, ତେଣୁ ମୋତେ ରାଗିବାକୁ ପଡ଼ୁଛି ।" ତା'ର ଏପରି ଉକ୍ତିର ଅର୍ଥ ହେଉଛି ଯେ ତା' ମଧ୍ୟରେ କ୍ରୋଧରୂପୀ ଶିଖା ଜଳୁଛି । ପରନ୍ତୁ ବର୍ତ୍ତମାନ ପରମପିତା ପରମାତ୍ମା କହୁଛନ୍ତି କି ଯଦି କେହି ଅନ୍ୟ ଉପରେ କ୍ରୋଧରୂପୀ ଗୁଳି ଚଳାଏ, କଡ଼ା ବଚନରୂପୀ ପଥର ବର୍ଷଣ କରେ, ଦୁଃଖଦାୟକ ଶବ୍ଦରୂପୀ ବୋମା ଫୁଟାଏ, ତେବେ ସେ ନିଜେ ତା'ର ମୃତ୍ୟୁ ସମୟରେ ଏପରି କଷ୍ଟ ପାଇବ ଯେପରିକି କାହାର ଗୁଳିଦ୍ୱାରା ସେ ଛଟପଟ ହେଉଛି, କେହି ତା' ମୁଣ୍ଡ

ଉପରେ ବୋମା ପକାଇଦେଉଛୁ ଅଥବା ତା'ର ମୁଣ୍ଡ ଉପରେ କେହି ପଥରରେ ଆଘାତ କରୁଛୁ । ଏଣୁ ଯଦି ବର୍ତ୍ତମାନ ନିଜର ଜୀବନକୁ ସୁଖମୟ କରିବାକୁ ଆପଣ ଚାହୁଁଛନ୍ତି ଏବଂ ସ୍ୱର୍ଗର ରାଜ୍ୟ-ଭାଗ୍ୟ ପାଇବାକୁ ଇଚ୍ଛା କରୁଛନ୍ତି, ତେବେ କ୍ରୋଧକୁ ଦମନ କରି ବର୍ତ୍ତମାନ ହୃଦୟରେ ପ୍ରେମ-ଗଙ୍ଗା ବୁହାନ୍ତୁ । ଅତୀତରୁ ଗୋଟିଏ ପ୍ରଥା ଚାଲିଆସୁଛି କି ଯେତେବେଳେ କେହି ହରିଦ୍ୱାର ଯାଆନ୍ତି, ସେତେବେଳେ ସେ ସନ୍ଧ୍ୟା ସମୟରେ ଗଙ୍ଗାକୂଳରେ ବସି ପତ୍ରଦ୍ୱାରା ଗ୍ରେଷ୍ଟ ଗ୍ରେଷ୍ଟ ଡଙ୍ଗାରେ ଫୁଲ ଭର୍ତ୍ତି କରି ଏବଂ ଦୀପ ଜଳାଇ ତାହାକୁ ନଈରେ ଭସାଇ ଦିଅନ୍ତି । ସେହି ଡଙ୍ଗା ଦୃଷ୍ଟିରୁ ଅତୀତ ହେବା ପର୍ଯ୍ୟନ୍ତ ସେଥିରେ ଥିବା ଦୀପ ଯଦି ଜଳୁଥାଏ, ତେବେ ସେହି ଡଙ୍ଗା ଛାଡ଼ିଥିବା ବ୍ୟକ୍ତିକୁ ଅନ୍ୟମାନେ ଆନନ୍ଦରେ କହନ୍ତି, "ଭାଇ, ତୁମେ ତ ନିଶ୍ଚୟ ସ୍ୱର୍ଗରେ ପହଞ୍ଚିବ ।" ମାତ୍ର ଯାହାର ଦୀପ ଲିଭିଯାଏ, ତାକୁ ଅନ୍ୟମାନେ ଥଟ୍ଟାରେ କହନ୍ତି, "ତୁମେ ନରକକୁ ଯିବ ।" ଏହି କଥାର ତାତ୍ପର୍ଯ୍ୟ ହେଉଛି ଯେଉଁ ମାନବ ନିଜ ଜୀବନରେ ଜ୍ଞାନରୂପୀ ଦୀପକୁ ସଦା ପ୍ରଜ୍ୱଳିତ କରି ରଖେ ଏବଂ ଯାହାର ଜୀବନ-ଡଙ୍ଗା ପବିତ୍ରତାରୂପୀ ପୁଷ୍ପରେ ସୁସଜ୍ଜିତ ରହେ, ସେହି ମାନବ ସ୍ୱର୍ଗକୁ ଯାଏ ଏବଂ ଯାହାର ଜୀବନ କାମ, କ୍ରୋଧ-ରୂପୀ କଣ୍ଟାରେ ଭରପୂର ଅଥବା ଘୃଣା, ଦ୍ୱେଷ ତଥା କ୍ରୋଧଦ୍ୱାରା ଯାହାର ଦୀପ ଲିଭି ଯାଇଛି ସେ ନରକଗାମୀ ହୁଏ ।

ବାସ୍ତବରେ କେତେବେଳେ ଯେ କାହାର ଜୀବନ-ଦୀପ ଲିଭିଯିବ, ତାହା କେହି କହିପାରିବେ ନାହିଁ । ତେଣୁ ସମସ୍ତଙ୍କ ସହିତ ସ୍ନେହ-ଯୁକ୍ତ ବ୍ୟବହାର କରିବା ଏବଂ ସମସ୍ତଙ୍କୁ ମଧୁର କଥା କହିବା ପ୍ରତ୍ୟେକ ଲୋକର ଉଚିତ ।

## କ୍ରୋଧ ଗୋଟିଏ ଭୂତ ଅଟେ

ପରମପିତା ପରମାତ୍ମା ଶିବ କହୁଛନ୍ତି କି, 'କାମ' କ୍ରୋଧ ଇତ୍ୟାଦି ଗୋଟିଏ ଗୋଟିଏ ଭୂତ । ଯଦି କେବେ ଆପଣଙ୍କ ମନରେ କ୍ରୋଧ ଜାତ ହେଉଛି, ତେବେ ଭାବନ୍ତୁ ଯେ ଭୂତ ଆପଣଙ୍କ ଭିତରେ ପ୍ରବେଶ କରୁଛି ।

କାରଣ ମନୁଷ୍ୟକୁ ଭୂତ ଗ୍ରାସ କଲେ ଯେପରି ତାର ଚେହେରା ଏବଂ କଥାବାର୍ତ୍ତା ପରିବର୍ତ୍ତିତ ହୋଇଯାଏ, ସେହିପରି କ୍ରୋଧାନ୍ୱିତ ବ୍ୟକ୍ତିର ଚେହେରାରେ ପରିବର୍ତ୍ତନ ଆସିବା ସଙ୍ଗେ ସଙ୍ଗେ ତା'ର କଥାବାର୍ତ୍ତା ମଧ୍ୟ ଅତି ନିକୃଷ୍ଟ ଏବଂ ଦୁଃଖପ୍ରଦ ହୋଇଥାଏ । ଏଣୁ କ୍ରୋଧକୁ ଏକ ଭୂତ ବୋଲି ଭାବି ତା'ଠାରୁ ସର୍ବଦା ଦୂରରେ ରହନ୍ତୁ । ଏପରିକି ଯଦି ଅନ୍ୟ କୌଣସି ବ୍ୟକ୍ତି ଆପଣଙ୍କ ଉପରେ କ୍ରୋଧ କରେ ଏବଂ ବାରମ୍ବାର ବୁଝାଇବା ସତ୍ତ୍ୱେ ମଧ୍ୟ ଅବୁଝା ହୁଏ, ତେବେ କ୍ରୋଧରୂପକ ଭୂତ ଗ୍ରାସ କରିଛି ଭାବି ତା'ଠାରୁ ଦୂରେଇ ଯାଆନ୍ତୁ । କାରଣ ଏହା ଏପରି ଏକ ଭୂତ ଯିଏକି ସେଠାରେ ଉପସ୍ଥିତ ଥିବା ବ୍ୟକ୍ତି ଭିତରେ ମଧ୍ୟ ଅନାୟାସରେ ପ୍ରବେଶ କରିପାରେ । ତେଣୁ କଥାରେ ଅଛି ଯେ ଯେଉଁ ଘରେ କ୍ରୋଧରୂପୀ ଭୂତ ଥାଏ, ସେଠାରେ ପାଣି ମଧ୍ୟ ଶୁଖିଯାଏ । କ୍ରୋଧରୂପୀ ଭୂତ ଯୋଗୁ ସବୁ କାର୍ଯ୍ୟ ମଧ୍ୟ ଓଲଟପାଲଟ ହୋଇଯାଏ ଏବଂ ସେଠାରେ ହାହାକାର ଦେଖାଦିଏ ।

ଜିଜ୍ଞାସୁ—'କ୍ରୋଧ ଏକ ଭୂତ'—ଏ କଥା ଶୁଣି ବାସ୍ତବରେ ମନରେ କ୍ରୋଧ ପ୍ରତି ଘୃଣାଭାବ ଜାତ ହେଉଛି । ପୁନଶ୍ଚ, ଏକଥା ମଧ୍ୟ ଠିକ୍ ଯେ ପୃଥିବୀରେ ସମସ୍ତଙ୍କର ଗୋଟିଏ ମତ ହୋଇ ନ ପାରେ । ଏଣୁ ନିଜର କର୍ତ୍ତବ୍ୟ ହେଉଛି ଅନ୍ୟକୁ ନିଜର ମତାମତ ଶୁଣାଇଦେବା ଅଥବା ନିଜର ବିଚାରଧାରା ବତାଇଦେବା । ତେଣିକି ସେ ଯଦି ନ ମାନେ, ତେବେ ସେ ତା'ର ଇଚ୍ଛା; କିନ୍ତୁ ଏଥିରେ ଆମ୍ଭେମାନେ ଦୁଃଖୀ ହେବା ଉଚିତ ନୁହେଁ । ମାତ୍ର ଦୁନିଆଁରେ ଏପରି ବ୍ୟକ୍ତି ଅଛନ୍ତି, ଯେଉଁମାନଙ୍କର କଲ୍ୟାଣ ଆମ୍ଭେମାନେ ଚାହୁଁଥିଲେ ମଧ୍ୟ ସେମାନେ ତାହା ସ୍ୱୀକାର ନ କରି ପ୍ରତ୍ୟକ୍ଷ ବା ପରୋକ୍ଷରେ କୃତଘ୍ନତା ପ୍ରକାଶ କରନ୍ତି । ଆମ୍ଭେମାନେ ଯଦିଓ ସେମାନଙ୍କ ଉପକାର କରିଛୁ ତଥାପି ସେମାନେ ଆଜି ଆମର ନିନ୍ଦା କରୁଛନ୍ତି । କେହି କେହି ଛୋଟ ହୋଇ ମଧ୍ୟ ଏପରି କଥାବାର୍ତ୍ତା କରନ୍ତି ଯେପରିକି ସେମାନେ ଆମଠାରୁ ବଡ଼ ଏବଂ ଅଧିକ ବିଚକ୍ଷଣଶୀଳ । ଯେତେବେଳେ ଏପରି ପରିସ୍ଥିତି ଆମ ସମ୍ମୁଖରେ ପହଞ୍ଚେ ସେତେବେଳେ କ୍ରୋଧାଗ୍ନି ପ୍ରଜ୍ୱଳିତ ହୋଇଉଠେ । ଏଥିରୁ ମୁକ୍ତ ହୋଇବାର ଉପାୟ କ'ଣ ?

## ଲୋକମାନଙ୍କୁ ପତିତ ହେବାର ଦେଖି ମଧ୍ୟ ନିଜେ କ୍ରୋଧଦ୍ୱାରା ପତିତ ହେବା ଏକ ଅଜ୍ଞାନତା

ବ୍ରହ୍ମାକୁମାରୀ—ଆପଣ ତ ନିଜେ ସ୍ୱୀକାର କରୁଛନ୍ତି ଯେ ଆଜିକାଲିର ଲୋକେ ବହୁତ ଖରାପ । ତେବେ କ'ଣ ସେମାନଙ୍କ ଯୋଗୁଁ ଆପଣ କ୍ରୋଧର ବଶବର୍ତ୍ତୀ ହୋଇ ଆପଣଙ୍କର ବର୍ତ୍ତମାନ ଓ ଭବିଷ୍ୟତକୁ ନଷ୍ଟ କରିବେ ? ଆପଣ ତ ସେମାନଙ୍କର କର୍ମକୁ କେବଳ ଦେଖୁଛନ୍ତି, ନିଜର କର୍ମକୁ କାହିଁକି ଦେଖୁନାହାନ୍ତି ? ସେମାନଙ୍କର ଦାୟିତ୍ୱ ସେମାନଙ୍କ ଉପରେ ଛାଡ଼ିଦିଅନ୍ତୁ ଏବଂ ଆପଣ ସର୍ବପ୍ରଥମେ ସ୍ୱକର୍ମର ଦାୟିତ୍ୱ ନିଜେ ବହନ କରନ୍ତୁ । ବର୍ତ୍ତମାନ ଭଗବାନ କହୁଛନ୍ତି—"କ୍ରୋଧ ତ୍ୟାଗ କର ।" ତେଣୁ ଆପଣ ଭଗବାନଙ୍କୁ ଦେଖିବେ ନା ଆଜିକାଲିର ଲୋକଙ୍କୁ ଦେଖିବେ ? ସେମାନଙ୍କର କର୍ମର ଫଳ ସେମାନେ ନିଜେ ଭୋଗିବେ ଏବଂ ସେମାନଙ୍କୁ ନିମ୍ନଗାମୀ ହେବାର ଦେଖି ଯଦି ଆପଣ ସେମାନଙ୍କୁ ଉଠାଇ ପାରୁନାହାନ୍ତି ତେବେ ନିଜକୁ କାହିଁକି ନିମ୍ନଗାମୀ କରାଉଛନ୍ତି ? "ଲୋକେ ଏପରି ହେଉଛନ୍ତି" ଅଥବା "ଲୋକମାନେ "ଖରାପ"—ଏସବୁ କଥା ବର୍ତ୍ତମାନ ତ୍ୟାଗ କରନ୍ତୁ । ନିଜକୁ ଠିକ୍ କରି ଗଢ଼ିବାରେ ମନ ଦିଅନ୍ତୁ ।"

ଯଦି ବାସ୍ତବରେ ଆପଣ କ୍ରୋଧର ମୂଳ କାରଣକୁ ବୁଝିପାରିବେ ତେବେ ତା'ର ସ୍ଥାୟୀ ନିରାକରଣ ପାଇଁ ପ୍ରଚେଷ୍ଟା କରିପାରିବେ । ଆପଣ ଜାଣିଥିବେ, ଯେତେବେଳେ ଅନ୍ୟ ଜଣେ ଆପଣଙ୍କ ସମ୍ପର୍କରେ ଅହଂକାର ଦେଖାଏ ଅଥବା କୌଣସି କାମନା ଆପଣଙ୍କର ଅପୂରଣୀୟ ରହେ, ସେତେବେଳେ କ୍ରୋଧର ଉତ୍ପତ୍ତି ହୁଏ । ମନେକରନ୍ତୁ, ଆପଣ ଲୋକମାନଙ୍କଠାରୁ ସମ୍ମାନ ପାଇବା ପାଇଁ କାମନା ରଖିବାକୁ କିମ୍ବା ଅନ୍ୟପାଇଁ କିଛି କର୍ମ ସମ୍ପାଦନ କରି ତା' ବଦଳରେ ତାଙ୍କଠାରୁ କିଛି ପ୍ରତିଦାନ ପାଇବା ଆଶା ରଖିଛନ୍ତି, କିନ୍ତୁ ଏଗୁଡ଼ିକ ପୂରଣ ହେଲା ନାହିଁ; ତେବେ ଆପଣଙ୍କ ମନରେ ନିଶ୍ଚୟ କ୍ରୋଧ ଆସିବ । ସମୟେ ସମୟେ ମନରେ ଏପରି ଅହଙ୍କାର ଆସେ ଯେ—"ମୁଁ ବଡ଼, ମୁଁ ବିଚାରଶୀଳ ଏବଂ

ଅଭିଜ୍ଞ—ଏଣୁ ମୋ କଥାକୁ ସମସ୍ତେ ମାନିବା ଉଚିତ ।" ବାସ୍ତବରେ ଏପରି ବିଚାରଧାରା ଜ୍ଞାନର ଧାରଣାଠାରୁ ବହୁ ଦୂରରେ । ଆପଣ ଆପଣଙ୍କର ଆଭିଜାତ୍ୟ, ବଡ଼ପଣ ଅଥବା ବୁଦ୍ଧିର ଅଭିମାନରୂପୀ ନିଶାରେ ବୁଡ଼ି ନ ରହି ସର୍ବଦା ଆତ୍ମ-ସାକ୍ଷାତ୍କାରରୂପୀ ନିଶାରେ ବୁଡ଼ି ରହନ୍ତୁ ଏବଂ ଭାବନ୍ତୁ କି—"ମୁଁ ଗୋଟିଏ ଆତ୍ମା, ମୁଁ ତ୍ରିଲୋକୀନାଥ ପରମପିତା ପରମାତ୍ମା ଶିବଙ୍କର ସନ୍ତାନ, ଯିଏ କି ଶାନ୍ତିର ସାଗର, ପ୍ରେମର ସାଗର, ଆନନ୍ଦର ସାଗର ଏବଂ ପତିତ-ପାବନ ।"ଓଲଟା ନିଶା ଯୋଗୁ ଆପଣଙ୍କୁ କ୍ରୋଧ କିମ୍ବା ଦୁଃଖର ବଶୀଭୂତ ହେବାକୁ ପଡ଼ୁଛି । ଯଦି ଠିକ୍ ନିଶା ଆପଣଙ୍କୁ ଧରେ, ତେବେ ଆପଣ ନିଶ୍ଚୟ ସୁଖ ଅନୁଭବ କରିବେ । ନିଜକୁ ନିରାକାରୀ ସ୍ଥିତି ଅର୍ଥାତ୍ ଆତ୍ମିକ ସ୍ଥିତିରେ ସ୍ଥିତ କରିବା ହିଁ ହେଉଛି ନିରହଙ୍କାରୀ ଅବସ୍ଥା ଏବଂ ନିରହଙ୍କାରିତାଦ୍ୱାରା କ୍ରୋଧାଗ୍ନି ଶାନ୍ତ ହୋଇପାରିବ ।

## କ୍ରୋଧର କାରଣରୂପୀ 'ଅହଂକାର'ର ନିବାରଣ

ବାସ୍ତବରେ ଆଜିର ମାନବ ବହୁତ ନମ୍ର ହେବା ଉଚିତ, କାରଣ ତା' ପାଖରେ ଏପରି କୌଣସି ବସ୍ତୁ ନାହିଁ ଯାହାପାଇଁ ସେ ଅଭିମାନ କରିବ । ଆଜିକାଲିର ମନୁଷ୍ୟ ପାଖରେ ବିକର୍ମର ଗୋଦାମ, ବିକାରର କାରଖାନା ଏବଂ ବିକାରର ପୁଞ୍ଜି ପରିଲକ୍ଷିତ ହୁଏ । ଶ୍ରୀଲକ୍ଷ୍ମୀ, ଶ୍ରୀନାରାୟଣ, ଶ୍ରୀସୀତା, ଶ୍ରୀରାମ ପ୍ରଭୃତି ଦେବୀଦେବତାଙ୍କ ତୁଳନାରେ ଏମାନେ କାଙ୍ଗାଳ ଏବଂ କଉଡ଼ି-ତୁଲ୍ୟ । ଆଜିର ମନୁଷ୍ୟ ନିର୍ମଳ ସୁଖ କଣ ଜାଣେନା । ଶ୍ରୀଲକ୍ଷ୍ମୀ, ଶ୍ରୀନାରାୟଣଙ୍କର ରାଜପ୍ରାସାଦ, ପୋଷାକ, ଖାଦ୍ୟ ଏବଂ ସୁଖ ଶାନ୍ତି ତୁଳନାରେ ଆଜିର ପ୍ରଧାନମନ୍ତ୍ରୀ ଏବଂ ପୁଞ୍ଜିପତିମାନଙ୍କର ବାସଭବନ ଆଦି ପୁରାପୁରି ତୁଚ୍ଛ । କେତେବେଳେ ଯେ ମୃତ୍ୟୁର ଡାକରା ଆସିଯିବ କେହି ଜାଣନ୍ତି ନାହିଁ । ବର୍ତ୍ତମାନ ଯେଉଁ ମନୁଷ୍ୟ ନିଜକୁ ବହୁତ ବିଚାରଶୀଳ, ବୁଦ୍ଧିମାନ୍ ଏବଂ ଧନବାନ୍ ବୋଲି ଭାବୁଛି, କିଛି ସମୟ ପରେ କୌଣସି ଏକ ଭ୍ରଷ୍ଟ ଘଟଣାର ପରିଣାମସ୍ୱରୂପ ଅସହାୟ ଅବସ୍ଥାରେ ତା'ର ମୃତ୍ୟୁ ଘଟିବା ଅସମ୍ଭବ ନୁହେଁ । ଏସବୁ ସତ୍ତ୍ୱେ କେଉଁ ବସ୍ତୁ ପାଇଁ

ଯେ ମାନବର ଏତେ ଅଭିମାନ, ତାହା ଜାଣିହୁଏନା । ତ୍ରିଲୋକୀନାଥ ଏବଂ ସର୍ବଶକ୍ତିମାନ୍ ପରମପିତା ପରମାତ୍ମା ଶିବଙ୍କୁ ଦୁନିଆଁରେ ମଧ୍ୟ କେତେକ ନାସ୍ତିକ ବ୍ୟକ୍ତି ମାନୁନାହାନ୍ତି ଏବଂ କେତେକ ବ୍ୟକ୍ତି ତାଙ୍କ ଉଦ୍ଦେଶ୍ୟରେ ଅନାଦର-ସୂଚକ ବାକ୍ୟ ଉଚ୍ଚାରଣ କରୁଛନ୍ତି, କେତେକ ଜ୍ଞାନୀ ସନ୍ତାନ ମଧ୍ୟ ତାଙ୍କର ଆଜ୍ଞାକୁ ଲଙ୍ଘନ କରୁଛନ୍ତି, ତଥାପି ସେହି ପରମପିତା ପରମାତ୍ମା ପତିତମାନଙ୍କୁ ପାବନ କରିବା ପାଇଁ ତାଙ୍କର ଶ୍ରେଷ୍ଠ କର୍ତ୍ତବ୍ୟ ସମ୍ପାଦନ କରୁଛନ୍ତି । ଏହା ବାସ୍ତବରେ ନିରହଙ୍କାରିତାର ଶ୍ରେଷ୍ଠ ନିଦର୍ଶନ । ସମସ୍ତଙ୍କ ପ୍ରତି ସର୍ବଦା ତାଙ୍କର କଲ୍ୟାଣମୟ ଦୃଷ୍ଟି ରହିଛି । ଏଣୁ କୌଣସି ମନୁଷ୍ୟ ଯଦି ନିଜକୁ ଉଚ୍ଚ ବୋଲି ଭାବୁଛି ତେବେ ସୁଦ୍ଧା ସେ ନମ୍ର ଏବଂ ଶାନ୍ତ ହେବା ଉଚିତ, କାରଣ ମହାନ୍ ବ୍ୟକ୍ତିଙ୍କ ପାଖରେ କ୍ରୋଧ ଆଦୌ ଶୋଭା ପାଏନା, ବରଂ କ୍ରୋଧ ତାଙ୍କର ପତନର ସୂଚନା ଦିଏ । ମନୁଷ୍ୟ ଯେତେବେଳେ ନିଜକୁ ଭାବିବ ଯେ ସେ 'ପରମଧାମରୁ ଆସିଥିବା ଏକ ଜ୍ୟୋତିବିନ୍ଦୁ ଅଶରୀରୀ ଆତ୍ମା ସେତିକିବେଳେ ହିଁ ସେ ଶରୀରରେ ଥାଇ ମଧ୍ୟ ନିରାକାରୀ ହୋଇପାରିବ ଏବଂ ଅହଂକାରକୁ ତ୍ୟାଗ କରିପାରିବ । ତା'ଛଡ଼ା ବୈଜ୍ଞାନିକମାନେ ମଧ୍ୟ କହନ୍ତି ଯେ କ୍ରୋଧ କରିବାଦ୍ୱାରା ଶରୀର ଗ୍ରନ୍ଥିମାନଙ୍କରୁ ଯେଉଁ ରସ ନିର୍ଗତ ହୁଏ, ତାହା ବିଭିନ୍ନ ରୋଗ ଜାତ କରେ ତେଣୁ କ୍ରୋଧକୁ ତ୍ୟାଗ କରିବା ଏକାନ୍ତ ଆବଶ୍ୟକ ।

## କ୍ରୋଧର କାରଣରୂପୀ 'କାମନା'ର ନିବାରଣ

ଦ୍ୱିତୀୟତଃ କୌଣସି କାମନା ଅଥବା ଆଶା ପୂରଣ ନ ହେଲେ ମଧ୍ୟ ମନୁଷ୍ୟର ଉତ୍ତେଜିତ ହେବା ଉଚିତ ନୁହେଁ । ଏହା ସତ୍ୟ ଯେ ମନରେ ଶୁଭକାମନା ପୋଷଣ ନ କରି ମନୁଷ୍ୟ ବଞ୍ଚି ପାରିବ ନାହିଁ । ମାତ୍ର "ଆମର ସବୁ କାମନା ପୂରଣ ହୋଇଯାଉ"—ଏ ଆଶା ତ୍ୟାଗ କରିବା ଉଚିତ; କାରଣ ଆମ୍ଭମାନଙ୍କର ପୂର୍ବ କର୍ମର ଫଳସ୍ୱରୂପ ଅଥବା ବର୍ତ୍ତମାନର ପୁରୁଷାର୍ଥରେ କୌଣସି ଅଭାବର ପରିଣାମସ୍ୱରୂପ କିମ୍ବା ଆଜିକାଲିର

ଲୋକମାନଙ୍କର ତମୋଗୁଣୀ ସ୍ୱଭାବ ଯୋଗୁ କେତେକ କାମନା ପୂରଣ ହୋଇ ନ ପାରେ ତେଣୁ ଏପରି କୌଣସି ପରିସ୍ଥିତି ଆସିଲେ ଆମର ଭାବିବା ଉଚିତ ଯେ ଏହି ଯୁକ୍ତିଯୁକ୍ତ ସଂସାରରୂପୀ ନାଟକରେ ପୂର୍ବକର୍ମର ଫଳ ଯୋଗୁଁ ଅଥବା ପୁରୁଷାର୍ଥ କାରଣରୁ ଆମର ମନୋରଥ ପୂରଣ ହୋଇପାରିଲ ନାହିଁ । ଏହା ଫଳରେ ମନରେ ଦୁଃଖ ଆସିବ ନାହିଁ କି ଅନ୍ୟ ପ୍ରତି ମଧ୍ୟ କ୍ରୋଧ ଆସିବ ନାହିଁ ।

ଭାବି ଦେଖିଲେ ଆପଣ ଜାଣିପାରିବେ ଯେ କୌଣସି ଇପ୍ସିତ ପଦାର୍ଥର ଅଭାବ ବା ସ୍ୱଳ୍ପତା କାମନାର କାରଣ । ଅପୂର୍ଣ୍ଣତାକୁ ଅଭାବ ବା ଅଳ୍ପତା ଅନୁଭୂତ ହୁଏ । ଏ କଥା ମଧ୍ୟ ଆପଣ ସ୍ୱୀକାର କରିବେ ଯେ ମନୁଷ୍ୟ ସର୍ବଦା ସୁଖ ଶାନ୍ତି କାମନା କରେ । ତେଣୁ ଯେଉଁ ପରମପିତା ପରମାତ୍ମା ସ୍ୱୟଂସମ୍ପୂର୍ଣ୍ଣ, ଯେ ସର୍ବ ସୁଖଦାତା ଏବଂ ଶାନ୍ତିର ଆଧାର, ତାଙ୍କଠାରେ ମନେ ରଖିବା ଉଚିତ । ସେହି ପରମାତ୍ମାଙ୍କଠାରେ ଯୋଗଯୁକ୍ତ ହେଲେ ପୂର୍ଣ୍ଣ ସନ୍ତୋଷ ମିଳିପାରିବ । ଏଥିରୁ ଏହାହିଁ ସ୍ପଷ୍ଟ ହେଲା ଯେ ନିଜକୁ 'ଆତ୍ମା' ଜାଣି ଶାନ୍ତିଯୋଗର ପରମପିତାଙ୍କ ସ୍ମୃତିରେ ମଗ୍ନ ରହିବା ଆବଶ୍ୟକ ।

**ଜିଜ୍ଞାସୁ**—ଏ ତ ଠିକ୍ କଥା ଯେ ଅହଂକାର ଏବଂ କାମନାର ଅପୂର୍ଣ୍ଣତା ଯୋଗୁ ମାନବ ମନରେ କ୍ରୋଧ ଉତ୍ପନ୍ନ ହୁଏ । ତା'ଛଡ଼ା ଏକଥା ମଧ୍ୟ ମୋତେ ବହୁତ ପସନ୍ଦ ଲାଗୁଛି ଯେ—'ପରମାତ୍ମା ନିରାକାର ଏବଂ ନିରହଂକାର, ତେଣୁ ଆତ୍ମମାନଙ୍କୁ ଆତ୍ମିକ ସ୍ଥିତିରେ ରହି ନିରହଙ୍କାରିତା ଅଭ୍ୟାସ କରିବା ଉଚିତ । ମାତ୍ର ମୋର ଦୁର୍ବଳତା ଯୋଗୁ କୌଣସି ବ୍ୟକ୍ତି ମୋତେ ଉତ୍ତେଜିତ କଲେ ମୁଁ ମୋର ପୂର୍ବ-ସଂସ୍କାରର ବଶୀଭୂତ ହୋଇ ହଠାତ୍ ଅଶାନ୍ତ ହୋଇପଡ଼ୁଛି ଏବଂ କେତେକ କଠୋର ଶବ୍ଦ ମଧ୍ୟ ପ୍ରୟୋଗ କରିପକାଉଛି । ତେଣୁ ମୋର ଏପରି ସ୍ୱଭାବକୁ ପରିବର୍ତ୍ତନ କରିବାପାଇଁ ଉପାୟ କ'ଣ ?

ବ୍ରହ୍ମାକୁମାରୀ—ବର୍ତ୍ତମାନ ଆପଣଙ୍କର ଏପରି ଖରାପ ସ୍ୱଭାବ ଏବଂ ସଂସ୍କାରକୁ ବଦଳାଇବା ପାଇଁ ଆପଣ ନୂତନ ଏବଂ ଶୁଭ ସଂସ୍କାରରେ ଅଭ୍ୟସ୍ତ ହୁଅନ୍ତୁ । ମାତ୍ର ଏହି ନୂତନ ସଂସ୍କାରକୁ ଅଭ୍ୟାସ କରିବାପାଇଁ ପ୍ରଥମେ ଗୁରୁତ୍ୱପୂର୍ଣ୍ଣ ଧାରଣାକୁ ପକ୍କା କରିବାକୁ ପଡ଼ିବ ।

## (୧) ଆତ୍ମାର ସ୍ୱଧର୍ମର ସ୍ମୃତିଦ୍ୱାରା କ୍ରୋଧ ଶାନ୍ତ ହୁଏ ।

ପ୍ରଥମତଃ ଆପଣଙ୍କୁ କ୍ରୋଧାନ୍ୱିତ କରିବାଭଳି ଯଦି କୌଣସି ପରିସ୍ଥିତି ଆସେ, ତେବେ ସେତେବେଳେ ଏହି ଚାରି ସତ୍ୟକୁ ସ୍ମରଣ କରନ୍ତୁ "ଆତ୍ମାର ସ୍ୱଧର୍ମ ହେଉଛି ଶାନ୍ତି । ଏଣୁ ମୁଁ ମୋର ଆଦି ସ୍ୱରୂପରେ ସଦା ଶାନ୍ତ ଏବଂ ଶୁଦ୍ଧ ଅଟେ । କ୍ରୋଧ ମୋର ମୌଳିକ ସ୍ୱଭାବ କିମ୍ବା ସ୍ୱରୂପ ନୁହେଁ । କ୍ରୋଧୀ ବ୍ୟକ୍ତି ନିଜେ ତ ଦୁଃଖ ଭୋଗ କରେ, ତା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ଦୁଃଖ ଦିଏ । ଏଣୁ ମୁଁ କ୍ରୋଧ କରିବି ନାହିଁ । ଶାନ୍ତିଦ୍ୱାରା ହିଁ କାର୍ଯ୍ୟରେ ସଫଳତା ମିଳେ, ଯେହେତୁ ଧର୍ମପଥ ହିଁ ବିଜୟର ପଥ । ଯେପରି ଗରମ ଲୁହାକୁ ଥଣ୍ଡା ଲୁହା ହିଁ କାଟି ଦେଇ ପାରେ, ସେହିପରି ଗରମ ମନୁଷ୍ୟକୁ ମଧ୍ୟ ଆମ୍ଭେ ଆତ୍ମାର ଶୀତଳ ସ୍ୱଭାବ-ଦ୍ୱାରା ହିଁ ଶାନ୍ତ କରିପାରିବା ।" ଏହିପରି ଶାନ୍ତିକୁ ନିଜର ସ୍ୱଧର୍ମ ଭାବି ଶାନ୍ତ ରହିବା ପାଇଁ ଦୃଢ଼ ସଙ୍କଳ୍ପ ନେବା ଆବଶ୍ୟକ ।

## (୨) ନିଜର ଶାନ୍ତ ଶକ୍ତିଦ୍ୱାରା ଅନ୍ୟର କ୍ରୋଧାଗ୍ନି ମଧ୍ୟ ଶାନ୍ତ ହୁଏ ।

ଦ୍ୱିତୀୟତଃ, ସବୁବେଳେ ଏହିପରି ଭାବନ୍ତୁ ଯେ 'କୌଣସି ବ୍ୟକ୍ତି ଯେତେ କ୍ରୋଧୀ ହେଉନା କାହିଁକି, ମୁଁ ତାକୁ ମୋର ଶାନ୍ତି-ଶକ୍ତିଦ୍ୱାରା ନିଶ୍ଚୟ ଶାନ୍ତ କରିପାରିବ ।' ଆପଣ ଶୁଣିଥିବେ ଯେ ପୂର୍ବକାଳରେ ମୁନି-ଋଷିମାନେ ସେମାନଙ୍କର ଶାନ୍ତ ସ୍ୱଭାବଦ୍ୱାରା ବ୍ୟାଘ୍ର ଏବଂ ସିଂହକୁ ମଧ୍ୟ ବଶୀଭୂତ କରି ପାରୁଥିଲେ । ତେଣୁ ଆପଣ ଯଦି ଦୃଢ଼ ସଙ୍କଳ୍ପ କରିବେ ଯେ

—"ମୁଁ ଅପକାରୀର ମଧ୍ୟ ଉପକାର କରିବି; ମୋତେ ମୋର ଶାନ୍ତ-ଶକ୍ତି ଦ୍ୱାରା ଅନ୍ୟକୁ ମଧ୍ୟ ଶାନ୍ତ କରିବାକୁ ହେବ", ତେବେ ଆପଣଙ୍କ କ୍ରୋଧାଗ୍ନି ସ୍ୱତଃ ଶାନ୍ତ ହୋଇଯିବ ।

**(୩) "ଆମ୍ଭେମାନେ ଯାତ୍ରୀ ଏବଂ ଲକ୍ଷ୍ୟସ୍ଥଳର ନିକଟବର୍ତ୍ତୀ"—ଏପରି ଭାବିଲେ ମଧ୍ୟ କ୍ରୋଧ ଶାନ୍ତ ହୁଏ ।**

ତୃତୀୟତଃ ଆପଣଙ୍କର ସର୍ବଦା ମନେରଖିବା ଉଚିତ ଯେ—"ଏହି ସଂସାର ହେଉଛି ଏକ ପ୍ରତୀକ୍ଷାଳୟ । ଆଉ ମାତ୍ର ଦୁଇ ଘଡ଼ିର ରାସ୍ତା ବାକି ଅଛି । ଖୁବ୍ କମ୍ ସମୟ ପରେ ପ୍ରତ୍ୟେକ ଯାତ୍ରୀ ନିଜ ନିଜର ଲକ୍ଷ୍ୟସ୍ଥଳରେ ପହଞ୍ଚିବେ । ତେଣୁ ଏହି ଯାତ୍ରା କାଳରେ ଯଦି କୌଣସି ବ୍ୟକ୍ତିର କୌଣସି କର୍ମ ଯୋଗୁଁ ଅନ୍ୟର କିଛି ଅସୁବିଧା ହୁଏ, ତେବେ ତା'କୁ ସହିନେବା ଉଚିତ । ଆପଣ ଦେଖିଥିବେ ରେଳଗାଡ଼ିରେ ଲୋକମାନେ ଯାତ୍ରା କରିବା ସମୟରେ ଅନ୍ୟ ଯାତ୍ରୀଙ୍କର ଅନୁଚିତ ଏବଂ କଷ୍ଟଦାୟକ କର୍ମକୁ ଜାଣିଶୁଣି ଅଣଦେଖା କରିଦିଅନ୍ତି, କାରଣ ସମସ୍ତଙ୍କୁ ଯାତ୍ରା ସମୟରେ କିଛି ନା କିଛି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ । ସେମାନେ ଜାଣନ୍ତି ଏହି ଯାତ୍ରା ମାତ୍ର ଦୁଇଘଡ଼ି ପାଇଁ ଏବଂ କିଛି ସମୟ ପରେ ସମସ୍ତେ ନିଜ ନିଜ ଘରକୁ ଚାଲିଯିବେ । ତେଣୁ ଆପଣଙ୍କର ସବୁବେଳେ ମନେ ରଖିବା ଉଚିତ ଯେ ବର୍ତ୍ତମାନ କଳିଯୁଗ ଶେଷ ହେବାକୁ ଯାଉଛି ମହାବିନାଶ ନିକଟ ହେଲାଣି, ସତ୍ୟଯୁଗ ସୃଷ୍ଟିରୂପୀ ବୃକ୍ଷ ଅଙ୍କୁରିତ ହେଲାଣି ଏବଂ ପରମଧାମରୂପୀ ଘରକୁ ନେଇଯିବା ପାଇଁ ପରମପିତା ପରମାତ୍ମା ଆସି ସାରିଲେଣି । ତେଣୁ ବର୍ତ୍ତମାନ ସମସ୍ତଙ୍କୁ ନିଜର ଘରକୁ ଫେରିଯିବାକୁ ହେବ । ଅଳ୍ପ କିଛି ସମୟ ପାଇଁ ଯାହା ଟିକିଏ ଅସୁବିଧା ରହୁଛି, ଏ ସମୟ ମଧ୍ୟ କଟିଯିବ, ଯାତ୍ରା ପୂର୍ଣ୍ଣ ହୋଇଯିବ । ତେଣୁ ଏ ଲୋକମାନଙ୍କର କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ଦେବା କାହିଁକି ?"

(୪) ମଧୁର ଏବଂ ଆଦରସୂଚକ ବାକ୍ୟ କ୍ରୋଧକୁ ଶାନ୍ତ କରେ ।

କୌଣସି ବ୍ୟକ୍ତିକୁ ସାକ୍ଷାତ କରିବା ସମୟରେ ପ୍ରଥମେ ତାଙ୍କୁ 'ଓଁ ଶାନ୍ତି' କହି ଅଭିବାଦନ ଜଣାନ୍ତୁ । ଏହି ବାକ୍ୟଦ୍ୱାରା ସର୍ବଦା ଶାନ୍ତ ରହିବା ପାଇଁ ଆପଣଙ୍କୁ ପ୍ରେରଣା ମିଳିବ । ତା' ଛଡ଼ା କଥାବାର୍ତ୍ତା କରିବା ସମୟରେ ଅନ୍ୟକୁ 'ପ୍ରିୟ ମିତ୍ର', 'ସ୍ନେହର ଭାଇ' ଏବଂ 'ଆଦରଣୀୟା ଭଉଣୀ' ପ୍ରଭୃତି କହି ସମ୍ବୋଧନ କରନ୍ତୁ । ଏ ପ୍ରକାର ସମ୍ବୋଧନ ବିଶେଷତଃ କ୍ରୋଧୀ ବ୍ୟକ୍ତିଙ୍କୁ କେତେକ ପରିମାଣରେ ଶାନ୍ତ କରିଦିଏ । ତା' ଛଡ଼ା ନିଜ ମନରେ ରାଗ ଉଦ୍ରେକ ହେଉଥିଲେ ମଧ୍ୟ ତାହା ଦୂର କରିଦିଏ । ଯେପରି କୌଣସି ବ୍ୟକ୍ତିକୁ ଗାଳି ଦେଲେ ସେ ଅଧିକରୁ ଅଧିକତର କ୍ରୋଧାନ୍ୱିତ ହୁଏ, ସେହିପରି କାହାକୁ ଅତି ମଧୁର ଏବଂ ସ୍ନେହସୂଚକ ଶବ୍ଦରେ ସମ୍ବୋଧନ କଲେ ତା'ର ରାଗ ମଧ୍ୟ ଥଣ୍ଡା ହୋଇ ଆସେ ।

**ଜିଜ୍ଞାସୁ**—ହଁ, ଏ ତ ଯଥାର୍ଥ କଥା ଆପଣ କହିଲେ । କୌଣସି ଲୋକକୁ 'ସ୍ନେହର ଭାଇ' ବା 'ଆଦରଣୀୟା ଭଉଣୀ' ବୋଲି କହିଲେ ସେ ନିଶ୍ଚୟ ଶାନ୍ତ ହୋଇଯିବ, କାରଣ ସମସ୍ତେ ଅନ୍ୟଠାରୁ ସ୍ନେହ ଆଦର ପାଇବାକୁ ଇଚ୍ଛା କରନ୍ତି । ଏପରି କହିଲେ ମୋର ମୂଲ୍ୟ ବି କିଛି କମିଯିବ ନାହିଁ, ବରଂ ଅନେକ ଲାଭ ହେବ । ଅନ୍ତତଃ ମୋ ନିଜର କ୍ରୋଧ ତ ଶାନ୍ତ ହୋଇ ଆସିବ । କ୍ରୋଧ ବଡ଼ ଖରାପ ଜିନିଷ, ଭଉଣୀ ।

**ବ୍ରହ୍ମାକୁମାରୀ**—ହଁ, କ୍ରୋଧ ଅଣୁ ବୋମାଠାରୁ ମଧ୍ୟ ଖରାପ ।

**ଜିଜ୍ଞାସୁ**——ଅଣୁବୋମା ତ ସବୁଠାରୁ କ୍ଷତିକାରକ ବସ୍ତୁ । ମାତ୍ର କ୍ରୋଧ ହେଉଛି ଏକ ମାନସିକ ବିକାର । ତେଣୁ କ୍ରୋଧ ଅଣୁ ବୋମାଠାରୁ ବିଶେଷ କ୍ଷତି-କାରକ କିପରି ?

ବ୍ରହ୍ମାକୁମାରୀ—କ୍ରୋଧର ପ୍ରୟୋଗ ଅଣୁବୋମାର ପ୍ରୟୋଗଠାରୁ ଅଧିକ ଭୟଙ୍କର ଏବଂ କ୍ଷତିକାରକ । କାରଣ ବୋମାର ପ୍ରୟୋଗଦ୍ୱାରା ମନୁଷ୍ୟ ଥରେ ମାତ୍ର ମରେ, କିନ୍ତୁ କ୍ରୋଧ ଯୋଗୁଁ ମାନବର ଯେଉଁ ଖରାପ ସଂସ୍କାର ସୃଷ୍ଟି ହୁଏ, ତାହାଦ୍ୱାରା ସେ ଜନ୍ମଜନ୍ମାନ୍ତର ଦୁଃଖ ପାଏ ଏବଂ ଧର୍ମରାଜାଙ୍କର ଦରବାରରେ ତାକୁ ମରଣଠାରୁ ହଜାର ଗୁଣ ଅଧିକ ଦୁଃଖ ଅନୁଭବ କରିବାକୁ ପଡ଼େ । ଅଣୁବୋମାଠାରୁ କ୍ରୋଧ ଭୟଙ୍କର ହେବାର ଅନ୍ୟ ଏକ କାରଣ ହେଉଛି ଯେ ଏହି କ୍ରୋଧ ହିଁ ସେହି ବୋମାକୁ ଜନ୍ମ ଦେଇଛି । ତେଣୁ କ୍ରୋଧକୁ ଅନ୍ତତଃ ଏକ ଅଣୁ ବୋମା ଭାବି ତା'ଠାରୁ ରକ୍ଷା ପାଇବା ପାଇଁ ଉପାୟ ଉଦ୍ଭାବନ କରିବା ଆବଶ୍ୟକ ।

ସୁତରାଂ କେହି ଆପଣଙ୍କ ଉପରେ ରାଗିଲେ ତାକୁ ବୋମା ନିକ୍ଷେପକାରୀ ମନେକରି ଶାନ୍ତିପୂର୍ଣ୍ଣ ଉପାୟରେ ନିଜକୁ ତାଠାରୁ ରକ୍ଷା କରିବା ଉଚିତ ।

ଯେତେବେଳେ ଆପଣ କ୍ରୋଧକୁ ଏକ ବୋମା ବୋଲି ଜାଣିବେ ଅଥବା ଏକ ଅପରାଧ ବୋଲି ଭାବିବେ, ସେତେବେଳେ ତା'ଠାରୁ ରକ୍ଷା ପାଇବା ପାଇଁ ଆପଣଙ୍କୁ ଚେଷ୍ଟା କରିବାକୁ ପଡ଼ିବ । ଭାରତ ସରକାର ଆଜିସୁଦ୍ଧା କେବଳ କ୍ରୋଧର ଅତି ଭୟଙ୍କର ରୂପ ପାଇଁ ଦଣ୍ଡବିଧାନର ଆଇନ ପ୍ରଣୟନ କରିଛନ୍ତି, ଅର୍ଥାତ୍ କ୍ରୋଧର ଆବେଗରେ ଯଦି କେହି କାହାକୁ ହତ୍ୟା କରେ, କିମ୍ବା କୌଣସି ଅସ୍ତ୍ରଶସ୍ତ୍ରଦ୍ୱାରା ଅନ୍ୟର କ୍ଷତି କରିବାକୁ ଚେଷ୍ଟା କରେ, ତେବେ ତାକୁ ଅଦାଲତ 'ଅପରାଧୀ' ଆଖ୍ୟା ଦିଏ ଏବଂ ତା ପ୍ରତି ଦଣ୍ଡବିଧାନ କରେ । ଯଦି କ୍ରୋଧର ହାଲୁକା ରୂପକୁ ଏକ ଅପରାଧ ବୋଲି ସରକାର ମାନନ୍ତେ, ତେବେ ଆଇନ ପ୍ରଣୟନକାରୀ, ନ୍ୟାୟାଧିକାରୀ, ମନ୍ତ୍ରୀ ଏବଂ ଉଚ୍ଚପଦସ୍ଥ କର୍ମଚାରୀମାନେ ମଧ୍ୟ ଦିନେ ନା ଦିନେ ଅପରାଧୀରୂପେ ସାବ୍ୟସ୍ତ ହୁଅନ୍ତେ ଏବଂ ଦେଶରେ ଆଇନକୁ କାର୍ଯ୍ୟକାରୀ କରିବାପାଇଁ କେହି ରହନ୍ତେ ନାହିଁ । ତେଣୁ ସରକାରଙ୍କଦ୍ୱାରା ଏହି ସାଧାରଣ କ୍ରୋଧପାଇଁ କୌଣସି

ଦଣ୍ଡବିଧାନ ନ ହୋଇଥିଲେ ସୁଦ୍ଧା ଏହାର ଅର୍ଥ ନୁହେଁ ଯେ ସାଧାରଣ କ୍ରୋଧର ବଶୀଭୂତ ହୋଇ ଯେଉଁ କର୍ମ କରାଯାଏ ତାହା ବିକର୍ମ ନୁହେଁ କିମ୍ବା ଏହାପାଇଁ କୌଣସି ଦଣ୍ଡ ନାହିଁ । ମାତ୍ର ସମସ୍ତେ ମନେ ରଖିବା ଉଚିତ ଯେ ସର୍ବୋଚ୍ଚ ସରକାର ବା ପରମପିତା ପରମାତ୍ମାଙ୍କ ମହାବାକ୍ୟ ଅନୁଯାୟୀ ସାମାନ୍ୟ କ୍ରୋଧ କଲେ ମଧ୍ୟ ତାହା ପାଇଁ ଦଣ୍ଡ ଭୋଗିବାକୁ ପଡ଼ିବ । ବାସ୍ତବରେ କ୍ରୋଧର ଅଶାନ୍ତିରୂପୀ ଫଳ ତ ଅଳ୍ପ ବହୁତେ ତତ୍‌କ୍ଷଣାତ୍ ଅନୁଭୂତ ହୁଏ । ସୁତରାଂ କ୍ରୋଧର ମାତ୍ରା କମ୍ ହେଉ ବା ବେଶୀ ହେଉ, ଏହା ଏକ ଅପରାଧ । ବିଶେଷତଃ ଯୋଗାଭ୍ୟାସୀ ପକ୍ଷରେ ଏହା ଅନର୍ଥକାରୀ ଏବଂ ଅନିଷ୍ଟକାରୀ, କାରଣ ଏହା ପରମାତ୍ମାଙ୍କ ସହିତ ସ୍ଥାପିତ ହୋଇଥିବା ମାନବର ଲୁକ୍‌କାୟିତ ସମ୍ବନ୍ଧକୁ ଛିନ୍ନ କରିଦିଏ ଏବଂ ସୁଖ ଶାନ୍ତିର ଅମୂଲ୍ୟ ସମ୍ପତ୍ତିରୁ ମଧ୍ୟ ତାକୁ ବଞ୍ଚିତ କରାଏ । କ୍ରୋଧ ମାନବକୁ ଶ୍ରେଷ୍ଠ ଜ୍ଞାନଯୁକ୍ତ ଏକ ଯୋଗଯୁକ୍ତ ଆସନରୁ ତଳକୁ ଖସାଇଦିଏ ।

ଆପଣ ଯଦି ସର୍ବଦା ସ୍ମରଣ ରଖିବେ ଯେ କ୍ରୋଧ ମଧ୍ୟ ବୋମା-ସଦୃଶ କ୍ଷତିକାରକ ଏବଂ ହତ୍ୟାସଦୃଶ ଏକ ବଡ଼ ଅପରାଧ, ତାହାହେଲେ ଆପଣ ଏଥିରୁ ରକ୍ଷା ପାଇବାପାଇଁ ସର୍ବଦା ସାବଧାନ ରହିବେ । କେବଳ ସେତିକି ନୁହେଁ, ଯେତେ ସମୟ ଧରି ଯେତେ ଏବଂ ତୀବ୍ର ଗତିରେ ଆପଣ କ୍ରୋଧ ପ୍ରକାଶ କରିବେ, ସେତେ ଅଧିକ ଦଣ୍ଡ ମଧ୍ୟ ଆପଣଙ୍କୁ ଭୋଗିବାକୁ ପଡ଼ିବ । ତେଣୁ ଯେତେବେଳେ ମନରେ କ୍ରୋଧ ଆସୁଛି, ସେତେବେଳେ ତାକୁ ପାଣିର ଗାର ଭଳି ଲିଭେଇ ଦିଅନ୍ତୁ ।

**ଜିଜ୍ଞାସୁ** – ଉପରୋକ୍ତ ଉପଦେଶଗୁଡ଼ିକ ବାସ୍ତବରେ ମନୁଷ୍ୟକୁ ଅକ୍ରୋଧୀ ଦେବତାରୂପେ ଗଢ଼ିବା ପାଇଁ ଅକାଟ୍ୟ ଯୁକ୍ତି । କିନ୍ତୁ ବହୁ ସମୟରେ ଦେଖାଯାଏ ଯେ ଜଣେ କୌଣସି ଗୋଟିଏ କାର୍ଯ୍ୟକୁ ଶେଷ କରିବା ପାଇଁ ବହୁତ ଉଦ୍ୟମ କରୁଛି, ମାତ୍ର ପରଶେଷରେ ଅକୃତକାର୍ଯ୍ୟ ହେଉଛି ଏବଂ

ଏହାର ପରିଣାମସ୍ୱରୂପ ତା'ର ମନ ଅଶାନ୍ତ ଏବଂ ତାର ସ୍ୱଭାବ ଚିଡ଼ଚିଡ଼ା ହୋଇ-ଯାଇଛି । ଠିକ୍ ସେତିକବେଳେ ଯଦି ଅନ୍ୟ ଜଣେ ତାକୁ କିଛି କହେ ତେବେ ସେ ତା ଉପରେ କ୍ରୋଧାନ୍ୱିତ ହୋଇ କଥାବାର୍ତ୍ତା କରେ । ତେଣୁ ଏଭଳି ଅବସ୍ଥାରୁ ରକ୍ଷା ପାଇବାର ଉପାୟ କ'ଣ ?

ବ୍ରହ୍ମାକୁମାରୀ—ଯଦି ମନୁଷ୍ୟର କୌଣସି କର୍ମ ଅଥବା ପରିଶ୍ରମର ଫଳ ଏପରି ହୁଏ ଯାହାକି ତାକୁ କଷ୍ଟ ଦିଏ, ସେହି ପରିସ୍ଥିତିରେ ସେ ଭାବିବା ଉଚିତ ଯେ ଏହା ଅବଶ୍ୟମ୍ଭାବୀ ଅଥବା ତା'ର ପୂର୍ବ-କର୍ମର ଫଳ । ତେଣୁ ଧୈର୍ଯ୍ୟର ସହିତ ତାକୁ ସହି ସେ ଅଟଳ ଏବଂ ଶାନ୍ତ ରହିବା ଉଚିତ । ବାସ୍ତବରେ ଏ ସଂସାର ପରିବର୍ତ୍ତନଶୀଳ । ଗୋଟିଏ ପରିସ୍ଥିତି ଚିରସ୍ଥାୟୀ ହୋଇ ରହେ ନାହିଁ, ତେଣୁ ବର୍ତ୍ତମାନର ସମୟ ମଧ୍ୟ ଖୁବ୍ ଶୀଘ୍ର ଗ୍ରୁଲିଯିବ ଏବଂ ମନୁଷ୍ୟର ମୁଣ୍ଡ ଉପରେ ଥିବା ପୂର୍ବ ଜନ୍ମର ବିକର୍ମର ବୋଝ ହାଲୁକା ହୋଇଯିବ । ଏପରି ଧାରଣା ମନରେ ଆସିଲେ ତା ମନ ବିକ୍ଷିପ୍ତ ଓ କ୍ରୋଧାନ୍ୱିତ ହେବ ନାହିଁ କି ସେ ଅନ୍ୟ ଉପରେ ରାଗିବ ନାହିଁ ।

ବିଦ୍ୟୁତର ଉତ୍ପନ୍ନ ଅଗ୍ନିକୁ ପ୍ରଜ୍ୱଳିତ କରିବାପାଇଁ କୌଣସି ପ୍ରକାର ତେଲ ଅଥବା ଡିଅଃସିଲ୍ ଆବଶ୍ୟକ ହୁଏ ନାହିଁ । ପରନ୍ତୁ ଏହି ଅଗ୍ନି ମନୁଷ୍ୟର ଶରୀରକୁ କେବଳ ପୋଡ଼ିଦିଏ, ଅନ୍ତରାତ୍ମା ଅଥବା ମନକୁ ପୋଡ଼େ ନାହିଁ । କିନ୍ତୁ କ୍ରୋଧ ଏପରି ଏକ ଅଗ୍ନି ଯିଏକି ମନୁଷ୍ୟର ମନକୁ ଜଳାଇ ତା'ର ଜୀବନର ସାରକୁ ମଧ୍ୟ ନଷ୍ଟ କରିଦିଏ । ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ଯେଉଁ ମାନବ ଜୀବିତ ଅବସ୍ଥାରେ କ୍ରୋଧଦ୍ୱାରା ନିଜକୁ ବାରମ୍ବାର ଜଳାଏ, ସେ ସର୍ବଦା ଅଜ୍ଞାନୀ । ଶବକୁ ଯଦି ଅଗ୍ନି ଉପରେ ରଖାଯାଏ ତେବେ ସେ ଅଗ୍ନିର ତାପ ଅନୁଭବ କରିପାରେ ନାହିଁ, କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ଜୀବିତ ମାନବ କ୍ରୋଧରେ ପ୍ରଜ୍ୱଳିତ ହୋଇ ନିଜକୁ ଦୁଃଖ ଦିଏ ଏବଂ ପୁଣି କହେ ଯେ—"ମୁଁ ଅମୁକକୁ ସିଧା କରିଦେଲି, ତା'ର ମୁଣ୍ଡ ଠିକ୍ କରିଦେଲି, ତା'ର ଚେତା ବୁଡ଼ାଇ ଦେଲି, ତା'ର ମଜ୍ଜା ବାହାର

କରିଦେଲି, ଇତ୍ୟାଦି ।" କିନ୍ତୁ ପ୍ରକୃତରେ ଯେଉଁ ଲୋକ କ୍ରୋଧଦ୍ୱାରା ନିଜର ମୁଣ୍ଡକୁ ଖରାପ କରେ, ନିଜର ସ୍ୱରୂପକୁ ଓଲଟପାଲଟ କରେ ଏବଂ ନିଜର ବୁଦ୍ଧିକୁ ନଷ୍ଟ କରେ, ସେ ଯେ ନିଜେ ନିଜର ମଙ୍କା ନିକାଳି ଦିଏ ଏବଂ ଚେତା ବୁଡ଼ାଏ, ଏଥିରେ ସନ୍ଦେହ ନାହିଁ । ଆପଣମାନେ ମଧ୍ୟ କେତେଥର ଦେଖିଥିବେ ଯେ ମନୁଷ୍ୟ କ୍ରୋଧର **ବଶବର୍ତ୍ତୀ** ହୋଇ ନିଜର ଲୁଗାପଟାକୁ ଚିରି ପକାଏ, କେଶକୁ ଟାଣି ଇତସ୍ତତଃ କରିଦିଏ । ତେଣୁ କ୍ରୋଧ ଏକ ପ୍ରକାର ଭୂତ ଅଟେ, କାରଣ ଭୂତ ପ୍ରେତକୁ ବିଶ୍ୱାସ କରିବାବାଲା ବ୍ୟକ୍ତି କହନ୍ତି ଯେ ଯେତେବେଳେ କାହାଠାରେ ଭୂତର ଆବେଶ ହୁଏ, ସେତେବେଳେ ସେହି ଭୂତ ମଧ୍ୟ ସେହିପରି ଲୁଗାପଟା ଚିରିବାକୁ ଲାଗେ, ମୁଣ୍ଡ ପିଟେ ଅଥବା କୌଣସି ନା କୌଣସି ପ୍ରକାରେ ନିଜକୁ ଓ ଅନ୍ୟକୁ କଷ୍ଟ ଦିଏ । ଏଥିପାଇଁ ପରମପିତା ପରମାତ୍ମା ଶିବଙ୍କ ମହାବାକ୍ୟ ଅନୁଯାୟୀ ବର୍ତ୍ତମାନ ଏହି କ୍ରୋଧରୂପୀ ଭୂତକୁ ସବୁଦିନ ପାଇଁ ଦୂର କରିବା ଉଚିତ ।

**ଜିଜ୍ଞାସୁ**—ଭଉଣୀ, ମୁଁ ଆଜି ଆପଣଙ୍କଠାରୁ କ୍ରୋଧ ଦମନ ସମ୍ପର୍କରେ ବହୁତ ମୂଲ୍ୟବାନ ଉପଦେଶ ଶୁଣିଲି । ମୁଁ ସେଗୁଡ଼ିକ ନିଜ ଆଚରଣରେ ପାଳନ କରି ମୋ ଜୀବନକୁ ଶାନ୍ତିମୟ କରିବାକୁ ଚେଷ୍ଟା କରିବି । ଆଜିଠାରୁ ମୋ ମନରେ ଏହି ଧାରଣ ରଖିବି ଯେ ମୁଁ ବିଷ୍ଣୁଙ୍କ ପରି ସ୍ଥିର ଅଲଙ୍କାର ଧାରଣ କରିଛି ଏବଂ ସର୍ବଦା ତାଙ୍କର ପରି ପ୍ରସନ୍ନ କରିବି । ମୋ ମନରୁ କ୍ରୋଧରୂପିକ ବିଷ ବାହାରି ଯାଇ କ୍ରୋଧର ଜ୍ୱାଳା ଶାନ୍ତ ହୋଇଆସିଲି ପରି ଲାଗୁଛି । ମୋର ଆଶା; ଏଣିକି ମୁଁ କ୍ରୋଧଶୂନ୍ୟ ଜୀବନ ଯାପନ କରିବି । କାଲି ମୁଁ ଅନ୍ୟାନ୍ୟ କଠିନ ପ୍ରଶ୍ନର ଉତ୍ତର ଜାଣିବାକୁ ଇଚ୍ଛା କରୁଛି । ଓଁ ଶାନ୍ତି ।

**ବ୍ରହ୍ମାକୁମାରୀ**—ହଁ, ସେ ସବୁ ଜାଣିବା ତ ନିତାନ୍ତ ଆବଶ୍ୟକ । ଓଁ ଶାନ୍ତି ।

# ମୋହ ଏବଂ ମମତା ତ୍ୟାଗ କର

ମୋହକୁ ଜାଲ ଅଥବା ପଙ୍କ ସହିତ ତୁଳନା କରାଯାଇପାରେ । ଜାଲ ସହିତ ତୁଳନା କରିବାର ଅର୍ଥ ହେଉଛି—ପକ୍ଷୀ ଯେପରି ଶିକାରୀର ଜାଲକୁ ନଜର ନ ଦେଇ ଖାଦ୍ୟ ସଂଗ୍ରହ ଉଦ୍ଦେଶ୍ୟରେ ଆସି ଜାଲ ମଧ୍ୟରେ ପ୍ରବେଶ କରି ଦୁଃଖ ପାଏ, ସେହିପରି ମନୁଷ୍ୟ ମିତ୍ର ଓ ଆତ୍ମୀୟମାନଙ୍କ ମାୟା ମମତାରେ ପଡ଼ି ଦୁଃଖ ଭୋଗ କରେ । ମୋହ ପଙ୍କ ସହିତ ତୁଳନୀୟ, କାରଣ ଜଣେ ପଙ୍କରେ ପଡ଼ି ଯେତେ ଯେତେ ଉପରକୁ ଉଠିବା ପାଇଁ ଚେଷ୍ଟା କରେ ସେ ସେତେ ସେତେ ତଳକୁ ଖସିବାକୁ ଲାଗେ । ମାତ୍ର ଏହାର ଅର୍ଥ ନୁହେଁ ଯେ ଆମ୍ଭେମାନେ କୌଣସି ବ୍ୟକ୍ତି ସହିତ ସମ୍ବନ୍ଧ ରଖିବା ନାହିଁ । ବାସ୍ତବରେ ଏହାର ଭାବାର୍ଥ ହେଉଛି—ଏହି ସଂସାରରେ ମିତ୍ର-ସମ୍ବନ୍ଧୀୟମାନଙ୍କ ସହିତ ସାଧାରଣ ବ୍ୟବହାର କରି ମଧ୍ୟ ଆମ୍ଭେମାନେ ନିଜ ନିଜର ଜୀବନକୁ କମଳ-ପୁଷ୍ପ ପରି ନିର୍ଲିପ୍ତ ରଖିପାରିବା । ସେଥିପାଇଁ ସର୍ବଦା ଚେଷ୍ଟା କରିବା ଉଚିତ । ଏହି ମୋହରୂପୀ ବିକାରକୁ ନଷ୍ଟ କରିବାପାଇଁ ସାର ଗୀତା-ଜ୍ଞାନର ସ୍ମୃତି । ମୋହକୁ ନଷ୍ଟ କରିପାରିଲେ ପ୍ରଭୁଙ୍କ ଆଜ୍ଞା ପାଳନ କରିବା ଏବଂ ସବୁବେଳେ ତାଙ୍କ ସ୍ମୃତିରେ ରହିବା ସହଜ ହେବ । ତେଣୁ ଶୃଙ୍ଖଳିତ ଯୋଗୀ ଜୀବନ ପାଇଁ ମୋହ ନଷ୍ଟ କରିବା ଅତ୍ୟାବଶ୍ୟକ ।

**ବ୍ରହ୍ମାକୁମାରୀ**—ଆପଣ କଣ କାଲି ଯୋଗଯୁକ୍ତ ରହିବା ପାଇଁ ଅଭ୍ୟାସ କରିଥିବେ କି ?

**ଜିଜ୍ଞାସୁ**—କରିଥିଲି ସତ, ମାତ୍ର ଅନୁଭବ କଲି ଯେ ଅଧିକାଂଶ ସମୟ ସନ୍ତାନ ଏବଂ ଆତ୍ମୀୟମାନଙ୍କ ପ୍ରତି ମୋର ଧ୍ୟାନ ଆକର୍ଷିତ ହେଲା । ଏଣୁ ଏକ ଲକ୍ଷ୍ୟ ରହିପାରିଲି ନାହିଁ । ଫଳତଃ ମୋର ଯୋଗାବସ୍ଥା ଗତକାଲି

ଭଲ ଥିଲ, କିନ୍ତୁ ଯଦି ଏମାନଙ୍କର ସ୍ମୃତି ମନକୁ ଆସି ନ ଥା'ନ୍ତା, ତେବେ ବହୁତ ଆନନ୍ଦ ଅନୁଭବ କରିପାରି ଥାଆନ୍ତି । ଭଉଣୀ, ଯୋଗାଭ୍ୟାସରେ ବିଘ୍ନ ଜନ୍ମାଉଥିବା ଆତ୍ମୀୟମାନଙ୍କ ସ୍ମୃତିରୁ ରକ୍ଷା ପାଇବା ପାଇଁ ଏବଂ ଜୀବନକୁ କମଳ-ପୁଷ୍ପ ସଦୃଶ ନିର୍ଲିପ୍ତ ରଖିବାପାଇଁ ଉପଯୁକ୍ତ ଉପାୟଗୁଡ଼ିକୁ ଜାଣିବା ବର୍ତ୍ତମାନ ମୋ ପକ୍ଷେ ଅତ୍ୟାବଶ୍ୟକ । ତେଣୁ ସେ ଉପାୟଗୁଡ଼ିକୁ ଆଜି ବତାଇ ଦିଅନ୍ତୁ ।

ବ୍ରହ୍ମାକୁମାରୀ—ପରମାତ୍ମାଙ୍କ ସୁଖଦାୟକ ସ୍ମୃତି ଅଭ୍ୟାସ କରିବା ସମୟରେ ମନୁଷ୍ୟ ମନରେ ତା'ର ସେହି ପୂର୍ବର ମାୟା ମୋହ ଆସି ବିଭିନ୍ନ ବାଧା ସୃଷ୍ଟି କରେ, ଯେଉଁ ମୋହ ଈଶ୍ୱରୀୟ ଜ୍ଞାନ ପାଇବା ପୂର୍ବରୁ ମିତ୍ର ଓ ଆତ୍ମୀୟମାନଙ୍କ ପ୍ରତି ଏକନିଷ୍ଠ ଥିଲ । ଏଣୁ ଯୋଗାଭ୍ୟାସ ସମୟରେ ଆତ୍ମୀୟମାନଙ୍କର ସ୍ମୃତି ମନକୁ ଆସେ, ଯେହେତୁ ସେମାନଙ୍କୁ ପୂର୍ବରୁ ସ୍ମରଣ କରି କରି ମନରେ ମୋହ ଘନୀଭୂତ ହୋଇଯାଇଥାଏ । ଏଥିରୁ ପ୍ରମାଣିତ ହେଉଛି ଯେ ବର୍ତ୍ତମାନ ମଧ୍ୟ ସେ ମନୁଷ୍ୟର ଦେହ ଅଭିମାନ ବହୁତ ପରିମାଣରେ ରହିଛି, କାରଣ ଦେହକୁ ଦେଖି ଦୈହିକ ସମ୍ବନ୍ଧୀୟମାନଙ୍କ ସ୍ମୃତି ତା ମନରେ ଆସିଯାଉଛି, ଅର୍ଥାତ୍ ତାର ମୋହ ଜାତ ହେଉଛି । ଯଦି ବାସ୍ତବରେ ମନୁଷ୍ୟ ଅନ୍ୟଠାରେ ଆତ୍ମାକୁ ଦେଖୁଥାଆନ୍ତା, ତେବେ ଏପରି ହୁଅନ୍ତା ନାହିଁ । କାରଣ ସେ ଜାଣନ୍ତା ଯେ ଆତ୍ମାର ଘନିଷ୍ଠ ସମ୍ବନ୍ଧ ତ ପରମାତ୍ମାଙ୍କ ସହିତ । ତେଣୁ ନିଜକୁ 'ଆତ୍ମା' ଜ୍ଞାନ କରିବା ପାଇଁ ମନୁଷ୍ୟକୁ ବାରମ୍ବାର ଶିକ୍ଷା ଦେବା ଆବଶ୍ୟକ ପଡ଼ୁଛି । ତାହାହେଲେ ହିଁ ମୋହ ନଷ୍ଟ ହୋଇପାରିବ ।

## ମୋହ କିପରି ଉତ୍ପନ୍ନ ହୁଏ ଏବଂ ଦୃଢ଼ ହୁଏ ?

ଯେପରି ଅହଂଭାବରୁ ଅହଂକାର ଉତ୍ପନ୍ନ ହୁଏ, ସେହିପରି ମମତାରୁ ମୋହ ଉତ୍ପନ୍ନ ହୁଏ । ଦୈହିକ ଦୃଷ୍ଟିରେ ଦେଖୁଥିବା ମନୁଷ୍ୟର ମମତା ଦୈହିକ ସନ୍ତାନମାନଙ୍କ ପାଖରେ ଉତ୍ପନ୍ନ ହୁଏ । ପ୍ରଥମେ ମନୁଷ୍ୟ ନିଜକୁ

ଦେହ ବୋଲି ଭାବେ । ତାପରେ ଏହି ଦେହଦ୍ୱାରା ଜନ୍ମ ଦେଇଥିବା ସନ୍ତାନମାନଙ୍କୁ, 'ମୋର ନିଜର' ସନ୍ତାନ ବୋଲି ଭାବିବାକୁ ଲାଗେ ଏବଂ ଏହାର ପରିଣାମସ୍ୱରୂପ ସେହି ସନ୍ତାନମାନଙ୍କ ସହିତ ରହି ରହି ସେମାନଙ୍କଠାରେ ତା'ର ରାଗ, ମମତା, ମୋହ ଦୃଢ଼ ହୋଇଯାଏ, ଯାହାକି ଯୋଗାଭ୍ୟାସ ସମୟରେ ବିଘ୍ନ ଜାତ କରେ ଏବଂ ତାକୁ ଆତ୍ମିକ ସୁଖ ଏବଂ ପରମାର୍ଥିକ ଆନନ୍ଦ ଅନୁଭବ କରିବାକୁ ଦିଏନାହିଁ । ଏଣୁ ଅନ୍ୟର ହାଡ଼ ମାଂସ ପ୍ରତି ମନୁଷ୍ୟର ଯେଉଁ ମୋହ, ତାହା ଈଶ୍ୱରଙ୍କ ପ୍ରତି ଦ୍ରୋହ ଅଥବା ବିଦ୍ରୋହ ବୋଲି ବୁଝିବାକୁ ହେବ ।

ଏହି ମୋହ ଦୈହିକ ସମ୍ବନ୍ଧୀମାନଙ୍କ ପ୍ରତି ହୋଇପାରେ ଏବଂ ଦେହର ବ୍ୟବହାରରେ ଆସୁଥିବା ବସ୍ତୁମାନଙ୍କ ପ୍ରତି ମଧ୍ୟ ହୋଇପାରେ । ଏପରିକି ଦେଖାଯାଇଛି ଯେ ଆତ୍ମା ଶରୀରକୁ ତ୍ୟାଗ କରିବା ପରେ ମଧ୍ୟ ଭୂତ ହୋଇ ନିଜର ସେହି ପୁରୁଣା ଘରେ ଦେଖାଦିଏ । ମନୁଷ୍ୟ ମନରେ ଥିବା ମୋହର ବିକାର ତା'କୁ ମୃତ୍ୟୁ ସମୟରେ ତ କଷ୍ଟ ଦିଏ ପୁଣି ମୃତ ଆତ୍ମାକୁ ତା'ର ସୂକ୍ଷ୍ମ ଦଉଡ଼ିରେ ବାନ୍ଧି ପୁନର୍ବାର ଗର୍ଭ ଜେଲକୁ ନେଇଆସେ । ପୁନର୍ଜନ୍ମ ପାଇ ଏହି ଆତ୍ମା ପୁଣି ମୋହଗ୍ରସ୍ତ ହୁଏ ଏବଂ କାଳର ଫାଶୀ ମଧ୍ୟ ଭୋଗିବାକୁ ପଡ଼େ । ଏହି ଦୃଷ୍ଟିରୁ ବିଚାର କଲେ ପରିଣାମସ୍ୱରୂପ ବାରମ୍ବାର ତାକୁ ଗର୍ଭ ଜେଲକୁ ଆସିବାକୁ ପଡ଼େ ଏବଂ ଜଣାଯାଏ ଯେ ଜନ୍ମ-ମରଣଜନିତ ଦୁଃଖର ମୂଖ୍ୟ କାରଣ ହେଉଛି ମୋହ । ଏହି ବିକାର ବହୁତ ଶ୍ରେଷ୍ଠ ବୋଲି ଜଣାଯାଏ, ମାତ୍ର ବାସ୍ତବରେ ଏହା ସବୁଠାରୁ କ୍ଷତିକାରକ । ଏହି ହେତୁ ମନୁଷ୍ୟକୁ 'ନଷ୍ଟୋମୋହା' ଏବଂ 'ସ୍ମୃତିଲବ୍ଧା' କରି ଗଢ଼ିବା ହେଉଛି ଗୀତା-ଜ୍ଞାନର ମୁଖ୍ୟ ଉଦ୍ଦେଶ୍ୟ । କାରଣ ଯେତେବେଳ ପର୍ଯ୍ୟନ୍ତ ମନୁଷ୍ୟର ମୋହ ନଷ୍ଟ ନ ହୋଇଛି ସେତେବେଳ ପର୍ଯ୍ୟନ୍ତ ଈଶ୍ୱରୀୟ ସ୍ମୃତି ଅର୍ଥାତ୍ 'ଯୋଗ'ରେ ସେ ପୂର୍ଣ୍ଣ ଭାବରେ ସ୍ଥିତ ହୋଇ ନ ପାରେ ଏବଂ ଯେପର୍ଯ୍ୟନ୍ତ ତା'ର ଯୋଗ ପୂର୍ଣ୍ଣ ନ ହୋଇଛି ସେ ପର୍ଯ୍ୟନ୍ତ ତା'ର ସଦ୍‌ଗତି ମଧ୍ୟ ଅସମ୍ଭବ ।

ମାଛି ମଇଳା ପଦାର୍ଥ ଉପରେ ବସି ତା' ଉପରେ ମୋହ କରିବାକୁ ଲାଗେ । କେହି ତାକୁ ସେଠାରୁ ଉଠାଇବାକୁ ଚେଷ୍ଟା କଲେ ମଧ୍ୟ ସେ ସେଠାରୁ ଉଠେ ନାହିଁ କିମ୍ବା ଯଦି ଉଡ଼ିଯାଏ ପୁନର୍ବାର ଆସି କିଛି ସମୟ ପରେ ତା' ଉପରେ ବସେ । ଆଜି ମନୁଷ୍ୟର ଅବସ୍ଥା ଠିକ୍ ସେହିପରି ଚର୍ମ-ରକ୍ତ ଏବଂ ମଳ-ବିକାରଦ୍ୱାରା ପରିପୂର୍ଣ୍ଣ କଳିଯୁଗୀ ଶରୀର ସହିତ ନିଜର ଘନିଷ୍ଠତମ ସମ୍ବନ୍ଧ ରହିଛି ବୋଲି ଭାବି ଆଜିର ମନୁଷ୍ୟ ଶରୀର ପ୍ରତି ଏପରି ମୋହ, ରାଗ ଅଥବା ଏପରି ସ୍ନେହ ରଖୁଛି ଯାହାକି ମାଛିର ସମ୍ବନ୍ଧ ଠାରୁ ଅଧିକ ଖରାପ । ମାଛି ଗୋଟିଏ ଅପରିଷ୍କାର ସ୍ଥାନରୁ ଉଡ଼ିଯାଇ ଯେତେବେଳେ ଅନ୍ୟ ଗୋଟିଏ ସ୍ଥାନରେ ବସେ; ସେତେବେଳେ ସେ ସ୍ଥାନକୁ ମଧ୍ୟ ସେ ଅପରିଷ୍କାର କରିଦିଏ ଏବଂ ସେଠାରେ ବି ରୋଗ ବୃଦ୍ଧି କରାଏ । ମାତ୍ର ଯେଉଁ ମନୁଷ୍ୟ ମୋହର ପୋକ ଅଥବା ମମତାର ମାଛି ହୋଇଛି, ସେ ଉପରୋକ୍ତ ମାଛିଠାରୁ ଅଧିକ କ୍ଷତିକାରକ । ସେ ସମସ୍ତଙ୍କ ପାଖକୁ ଯାଇ ଦେହ ଅଭିମାନରୂପୀ ସଂକ୍ରାମକ ରୋଗକୁ ବିସ୍ତାର କରେ ଏବଂ ନିଜର ବିକାରୀ ବାଣୀ ଏବଂ ଦୂଷିତ ଚାଲିଚଳନଦ୍ୱାରା ସେ ଅନ୍ୟ ଆତ୍ମାମାନଙ୍କୁ ଜନ୍ମଜନ୍ମାନ୍ତର ପାଇଁ ରୋଗୀ ଏବଂ ଭୋଗୀ କରିଦିଏ । ଏଣୁ ବୁଦ୍ଧିମାନ୍ ବ୍ୟକ୍ତି ଯେପରି ଅପରିଷ୍କାର ମାଛିକୁ ନିଜଠାରୁ ଦୂରରେ ରଖେ, ସେହିପରି ସେ ମୋହ ଓ ମମତାର ମାଛିକୁ ମଧ୍ୟ ନିଜଠାରୁ ଦୂରରେ ରଖିବା ଉଚିତ ।

ଯେଉଁ ମନୁଷ୍ୟ ନିଜକୁ ରାଗ ଏବଂ ଅନୁରାଗର ରଜ୍ଜୁଦ୍ୱାରା ଅନ୍ୟ ସହିତ ବାନ୍ଧେ, ସେ ନିଜର ଏବଂ ଅନ୍ୟର ଭାଗ୍ୟରୂପୀ ଗଳାକୁ ଦଉଡ଼ିରେ ଟାଣିକରି ବାନ୍ଧୁଛି ବୋଲି ବିଚାରିବା ଉଚିତ । ମୋହ କରିବା ଅର୍ଥ ନିଜକୁ ହଜାଇ ଦେବା । ଏହି କାରଣରୁ ଆଜି ବହୁତ ଲୋକଙ୍କର ମନ ଏକାଗ୍ର ରହୁନାହିଁ ଏବଂ ସେମାନେ ସବୁବେଳେ ଅନ୍ୟମନସ୍କ ରହୁଛନ୍ତି; ତେଣୁ ତନ୍ମୟ ହୋଇ କୌଣସି କାର୍ଯ୍ୟ ସମ୍ପାଦନ କରିପାରୁ ନାହାନ୍ତି ।

ଜିଜ୍ଞାସୁ—ଭଉଣୀ, ଆପଣ କହିଲେ ଯେ ମୋହ ଏପରି ଏକ ପ୍ରକାର ଯାହା ଅନ୍ୟ ଆତ୍ମାକୁ ଗର୍ଭରୂପୀ ବନ୍ଦୀଶାଳାକୁ ଟାଣି ଆଣେ

ଏବଂ ମୃତ୍ୟୁ ସମୟରେ ମଧ୍ୟ ପ୍ରାଣକୁ ବହୁତ କଷ୍ଟ ଦିଏ । ବାସ୍ତବରେ ମୋହ-ଦ୍ୱାରା ବଶୀଭୂତ ହେବାର ପ୍ରକୃତ ଲକ୍ଷଣ କ'ଣ ?

## ମୋହର ଆଦି-ମଧ୍ୟ-ଅନ୍ତ ଦୁଃଖଦାୟକ

ବ୍ରହ୍ମାକୁମାରୀ—ମୋହ ତ ଵିକାର, ତେଣୁ ତାକୁ ଏକ ଵିକାର ରୂପେ ଗଣାଯାଏ । 'ଵିକାର' ଶବ୍ଦର ଅର୍ଥ ହେଲା 'ଭ୍ରଷ୍ଟ' ହୋଇଥିବା ରୂପ କିମ୍ବା ଯାହା ମନୁଷ୍ୟକୁ ଭ୍ରଷ୍ଟ କରେ । 'ମୋହ'ର ଶୁଦ୍ଧ ରୂପ ହେଉଛି ପ୍ରେମ ଅଥବା ଆତ୍ମିକ ସ୍ନେହ । ମାତ୍ର ବିକୃତ ରୂପ ହେଉଛି ଵିକାରଯୁକ୍ତ ମୋହ, ଆସକ୍ତି ଅଥବା ମମତା । ଯଦିଓ ଏହା ସୂକ୍ଷ୍ମ ତଥାପି ଏହାର ତନ୍ତୁଗୁଡ଼ିକ ଲୁହା ଶିକୁଳିଠାରୁ ଅଧିକ ଶକ୍ତିଶାଳୀ । ଯେଉଁ ଦଉଡ଼ିରେ ହାତୀ ବନ୍ଧାଯାଏ, ତା'ଠାରୁ ମଧ୍ୟ ଶକ୍ତ । ଏଥିରେ ବାନ୍ଧି ହୋଇଥିବା ମନୁଷ୍ୟକୁ ଆଦି, ମଧ୍ୟ ଏବଂ ଅନ୍ତକାଳରେ ଦୁଃଖ ମିଳେ । ମନୁଷ୍ୟର ଯେଉଁ ବସ୍ତୁରେ ଆସକ୍ତି ରହେ ସେ ତାହାକୁ ପାଇବା ପାଇଁ ବହୁତ କଷ୍ଟ ସହେ । ପୁନଶ୍ଚ ତାକୁ ସୁରକ୍ଷିତ ରଖିବା ପାଇଁ ସେ ସବୁ ପ୍ରକାର ବାଧାବିଘ୍ନ ସହିତ ଲଢ଼େଇ କରେ ଏବଂ ଯଦି କେତେବେଳେ ସେହି ବସ୍ତୁକୁ ଅନ୍ୟ କେହି ନଷ୍ଟ କରିଦିଏ, ତେବେ ସେତେବେଳେ ସେ ବହୁତ ଦୁଃଖ ଅନୁଭବ କରେ । ମନୁଷ୍ୟର ଯେଉଁ ବ୍ୟକ୍ତି ସହିତ ମୋହ ଅଥବା ଘନିଷ୍ଠତା ଥାଏ, ଯଦି ସେ ରୋଗରେ ପଡ଼େ କିମ୍ବା କୌଣସି ଦୁର୍ଘଟଣାର ସମ୍ମୁଖୀନ ହୁଏ, ଅଥବା ଅନ୍ୟ କୌଣସି ପ୍ରକାରର ଅସୁବିଧା ଭୋଗେ, ତେବେ ତା' ମନରେ ବହୁତ କଷ୍ଟ ହୁଏ । ଯଦି ତା'ର ମୃତ୍ୟୁ ହୋଇଯାଏ, ତେବେ ତା'ର ସବୁଠାରୁ ବେଶୀ ଦୁଃଖ ହୁଏ । ସେ ନିଜେ ମୋହଜନିତ ଦୁଃଖ ଭୋଗିବା ସଙ୍ଗେ ସଙ୍ଗେ ମୋହରୂପକ ଦ୍ୱାରା ବାନ୍ଧିଥିବା ଅନ୍ୟର ଆତ୍ମାକୁ ମଧ୍ୟ କନ୍ଦାଏ । ସେ ନିଜେ ତ ଗର୍ଭ-ବନ୍ଦୀଶାଳାରେ କଏଦୀ ହୁଏ, ତାକୁ ମଧ୍ୟ ସେହି ବନ୍ଧନ ମୁହଁକୁ ଠେଲିଦିଏ । ଏଣୁ ମୋହ ଅତ୍ୟନ୍ତ ଦୁଃଖଦାୟକ ।

## ମୋହଯୁକ୍ତ ବ୍ୟକ୍ତି ସଦା ପରାଧୀନ

ମନୁଷ୍ୟର ଯାହା ପ୍ରତି ମୋହ ଥାଏ, ଯେପର୍ଯ୍ୟନ୍ତ ସେହି ବସ୍ତୁ ଅଥବା ବ୍ୟକ୍ତିର ଦର୍ଶନ ତାକୁ ନ ମିଳେ, ସେପର୍ଯ୍ୟନ୍ତ ତାକୁ କିଛି ଭଲ ଲାଗେ ନାହିଁ । ସର୍ବଦା ସେହି ବ୍ୟକ୍ତି ଅଥବା ବସ୍ତୁର ଚିନ୍ତା ତାକୁ ଘାରିଥାଏ । ତା' ମନର ଆନନ୍ଦ ତା' ନିଜ ହାତରେ ନ ରହି ଅନ୍ୟ ହାତରେ ଥାଏ, ଯାହା ସଙ୍ଗେ ସେ ମୋହକଡ଼ିତ । ତେଣୁ ଭଗବାନ କହୁଛନ୍ତି କି—"ହେ ବତ୍ସ, ଯଦି ତୁମେ ପରମ ଶାନ୍ତି ଚାହୁଁଛ, ତେବେ ମୋହକୁ ତ୍ୟାଗ କର ।"

ଜିଜ୍ଞାସୁ—ଭଉଣି, ମୋହ ବ୍ୟତୀତ ମନୁଷ୍ୟ ଗୃହସ୍ଥର ଦାୟିତ୍ୱ କିପରି ସମ୍ପାଦନ କରିବ ? ଏହି ମୋହଯୋଗୁ ମନୁଷ୍ୟ ଆଜି ରୋଜଗାର କରୁଛି, ଗୃହ ନିର୍ମାଣ କରୁଛି, ନିଜର ଦାୟିତ୍ୱକୁ ଉପଲବ୍ଧି କରି ପାଳନ କରୁଛି ଏବଂ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ଅନ୍ୟର ଆଶା ଆକାଂକ୍ଷା ମଧ୍ୟ ପୂରଣ କରୁଛି । ତେଣୁ ମୋହ ବ୍ୟତୀତ ଏଗୁଡ଼ିକ କିପରି ସମ୍ପାଦିତ ହେବ ?

ବ୍ରହ୍ମାକୁମାରୀ—ରୋଜଗାର କରିବା, ଗୃହ ନିର୍ମାଣ କରିବା, ଖାଇବା ଏବଂ ଖୁଆଇବା ଇତ୍ୟାଦି କାର୍ଯ୍ୟ ପଶୁ-ପକ୍ଷୀମାନେ ମଧ୍ୟ ସମ୍ପାଦନ କରୁଛନ୍ତି । ଗ୍ରେଟ ଚଢ଼େଇ ମଧ୍ୟ ନିଜ ଥଣ୍ଟରେ ଖାଦ୍ୟ ଆଣି ତା'ର ଶିଶୁକୁ ଖାଇବାକୁ ଦେଉଛି । ନିଜର ରହିବାପାଇଁ ପକ୍ଷୀ ମଧ୍ୟ ବହୁତ ସୁନ୍ଦର ସୁନ୍ଦର ବସା ନିର୍ମାଣ କରୁଛି । ତେବେ ମନୁଷ୍ୟ ଏବଂ ପଶୁ-ପକ୍ଷୀ ମଧ୍ୟରେ ପ୍ରଭେଦ କ'ଣ ? ଏଥିରୁ ସ୍ପଷ୍ଟ ଅନୁମେୟ, ଯେ ମନୁଷ୍ୟର କର୍ତ୍ତବ୍ୟ ପାଳନ ବିଧି ବହୁତ ଉଚ୍ଚ ଏବଂ ମହାନ ହେବା ଆବଶ୍ୟକ ଏବଂ ସେଥିରୁ କିଛି ନା କିଛି ଶ୍ରେଷ୍ଠଫଳ ମଧ୍ୟ ମିଳିବା ଦରକାର ।

## ବିକାରୀ ବ୍ୟକ୍ତି ସଦା ଅସମର୍ଥ; ସେ ପୂର୍ଣ୍ଣ ଭାବରେ ଦାୟିତ୍ୱ ସମ୍ପାଦନ କରି ନ ପାରେ ।

ଆପଣ ଦେଖୁଛନ୍ତି ଯେ ଆଜି ପିତାମାତା ନିଜର ସନ୍ତାନକୁ ପାଳନ କରୁଛନ୍ତି, ଖାଇବାକୁ ପିଇବାକୁ ଦେଉଛନ୍ତି ଏବଂ ଲେଖାପଢ଼ା ମଧ୍ୟ ଶିଖାଉଛନ୍ତି, କାରଣ ସେମାନେ ଭାବନ୍ତି ଯେ ତାଙ୍କର ସନ୍ତାନ ଏହାଦ୍ୱାରା ସୁଖୀ ହେବ । ମାତ୍ର ବାସ୍ତବ କ୍ଷେତ୍ରରେ ଦେଖାଯାଉଛି ଯେ ଏହି ଦୁଃଖପୂର୍ଣ୍ଣ କ୍ଷଣଭଙ୍ଗୁର ସଂସାରରେ କୌଣସି ରୋଗ ହେତୁ ମନୁଷ୍ୟ ଦୁଃଖ ଭୋଗ କରୁଛି, କୌଣସି ଦୁର୍ଘଟଣାବଶତଃ ସେ ଅଚଳ ବା ପୀଡ଼ିତ ରହୁଛି ଅଥବା କେତେବେଳେ କାଳର କରାଳ ଗର୍ଭରେ ସମାଧିସ୍ଥ ହେଉଛି । ଏହିସବୁ ପରିସ୍ଥିତିରେ ପିତାମାତା କିଛି କରିପାରନ୍ତି ନାହିଁ । ଏପରି ଦୁଃଖପୂର୍ଣ୍ଣ ପରିସ୍ଥିତିରେ ସେମାନେ କହନ୍ତି, "ଆମ୍ଭେମାନେ ବା କ'ଣ କରିବୁ ? ଏହି ସନ୍ତାନର ପୂର୍ବ କର୍ମର ହିସାବ କିତାବ ହିଁ ଏହିପରି କିଛି ଥିଲା ।" ତେଣୁ ସେମାନେ କହନ୍ତି—"ହେ ଭଗବାନ, ଏହାର ରୋଗ ଭଲ କରିଦିଅ ଏବଂ ଆୟୁଷ ବଢ଼ାଇ ଦିଅ ।" ଯଦି କାହାର ସନ୍ତାନ ସ୍ୱଭାବତଃ ଦୁଷ୍ଟ, ଅବାଧ୍ୟ ଏବଂ ଚରିତ୍ରହୀନ, ତେବେ ପିତାମାତା କହନ୍ତି, "ହେ ପ୍ରଭୁ, ଏହାକୁ ସଦ୍‌ବୁଦ୍ଧି ଦିଅ—" । ତେଣୁ ରୋଗ, ଶୋକ ଏବଂ ଅଧଃପତନ ସମୟରେ ସେ ଯେ ଭଗବାନଙ୍କୁ ପ୍ରାର୍ଥନା କରେ, ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ମାନବ ସ୍ୱୟଂ ଅସମର୍ଥ । ତେଣୁ ଆପଣ କ'ଣ ଏହାକୁ କର୍ତ୍ତବ୍ୟ-ପାଳନରେ ଆଖ୍ୟା ଦେବେ କି ? ପିତାମାତା ତାଙ୍କର କର୍ତ୍ତବ୍ୟ ପାଳନ କରିବା ସତ୍ତ୍ୱେ ଯଦି ସନ୍ତାନମାନେ ଦୁର୍ଘଟଣା, ରୋଗ, ଶୋକ, ମୃତ୍ୟୁ, ବିଫଳତା, ଚରିତ୍ର-ହୀନତା ଇତ୍ୟାଦିର ସମ୍ମୁଖୀନ ହୁଅନ୍ତି, ତେବେ ଏହା କ'ଣ ପିତାମାତାଙ୍କ କାର୍ଯ୍ୟର ଅପାରଗତା ପ୍ରମାଣ କରେନାହିଁ ? ସନ୍ତାନମାନଙ୍କର ଦୁଃଖ ଦେଖି ପିତାମାତା ଅତି ଅସହାୟ ଅବସ୍ଥାରେ ନିଜେ ଦୁଃଖ ଭୋଗୁଥିବେ, ଅଥଚ ସନ୍ତାନମାନଙ୍କୁ ଅକାଳ ମୃତ୍ୟୁମୁଖରୁ ବଞ୍ଚାଇ ପାରିବେ ନାହିଁ—ଏହା କ'ଣ ସେମାନଙ୍କ କର୍ତ୍ତବ୍ୟପାଳନର ଯୋଗ୍ୟତା ?

ଏଣୁ ଯେଉଁ ବ୍ୟକ୍ତିମାନେ କହନ୍ତି ଯେ ମୋହ ବ୍ୟତିରେକେ ଘର-ଗୃହସ୍ଥର କାର୍ଯ୍ୟ ସମ୍ପାଦନ କରିବା ଅସମ୍ଭବ, ସେମାନେ ଏହି ପ୍ରଶ୍ନ କରନ୍ତି ଯେ—"ଯଦି ଆମ୍ଭେମାନେ ମିଥ୍ୟା ଟଙ୍କା ( counterfeit coin ) ତିଆରି ନ କରିବା ତେବେ ବ୍ୟବସାୟ ଚାଲିବ କିପରି ?" ବାସ୍ତବରେ ଆତ୍ମିକ ପ୍ରେମ ହିଁ ସତ୍ ଧନ, ଯାହାର ପ୍ରୟୋଗଦ୍ୱାରା ମନୁଷ୍ୟ ତା'ର କର୍ମ-ବ୍ୟବସାୟକୁ ଚଳାଇବା ଉଚିତ । ମୋହରୂପୀ, ମିଥ୍ୟା ଅଥବା ଅଚଳନ୍ତି ଧନକୁ ସଙ୍ଗରେ ରଖିଥିବା ମନୁଷ୍ୟ ଶେଷରେ ଯମ ହାତରେ ଦୁଃଖ ଭୋଗ କରେ ।

ସୁତରାଂ ଯେଉଁ ମନୁଷ୍ୟ ଈଶ୍ୱରୀୟ ଜ୍ଞାନ ଲଭ କରେ ସେ ହୃଦୟଙ୍ଗମ କରିପାରେ ଯେ ମୋହ'ରୁ ଦୁଃଖ ଜାତ ହୁଏ । ତେଣୁ ମୋହ ପରିବର୍ତ୍ତେ ଶୁଦ୍ଧ ପ୍ରେମ ରଖିବା ଦରକାର, ଯାହାଫଳରେ ମନୁଷ୍ୟ ନିଜର ଗୃହ କର୍ମକୁ ସୁଚାରୁରୂପେ ସମ୍ପାଦନ କରିପାରିବେ । ମମତା ଅଥବା ଆସକ୍ତିରେ ଭସମାନ ହେବା ଉଚିତ ନୁହେଁ । ଯେପରି ପରମାତ୍ମା ସାରା ସଂସାରର ପିତା ଏବଂ ସ୍ନେହର ସାଗର ହୋଇ ମଧ୍ୟ ସମସ୍ତଙ୍କଠାରୁ ଅଲଗା ଏବଂ ନିର୍ମୋହି, ସେହିପରି ଆମ୍ଭେମାନେ ମଧ୍ୟ ସ୍ନେହଯୁକ୍ତ ହୋଇ କର୍ମ କରିବା ଉଚିତ, ମାତ୍ର ମମତାର ବଶୀଭୂତ ହେବା ଉଚିତ ନୁହେଁ ।

ଈଶ୍ୱରୀୟ ଜ୍ଞାନ ପାଇଥିବା ବ୍ୟକ୍ତିକୁ ଯଦି କେତେବେଳେ ତା'ର ପୁତ୍ର ଅଥବା ବନ୍ଧୁବାନ୍ଧବ ସାକ୍ଷାତ କରନ୍ତି, ସେହି ସମୟରେ ସେମାନେ 'ମୋହ'ର ଅଶ୍ରୁ ଗଡ଼ାଇବାକୁ ଲାଗନ୍ତି, ଯଦ୍ଦ୍ୱାରା କି ତା'ର ମନ ମଧ୍ୟ ଧୀରେ ଧୀରେ "ମୋହ'ରେ ପ୍ଲାବିତ ହେବାକୁ ଲାଗେ ଏବଂ ତତ୍ ସଙ୍ଗେ ସଙ୍ଗେ ଅନ୍ୟ ପକ୍ଷରେ ତା'ର ମନରେ ମଧ୍ୟ ଈଶ୍ୱରୀୟ ଜ୍ଞାନର ମନ୍ଥନ ଚାଲେ । ସେହି ସମୟରେ ସେ ମଧ୍ୟ ଜାଣିପାରେ ଯେ ସେ 'ମୋହ'ରେ ବୁଡ଼ିଯାଉଛି ଅର୍ଥାତ୍ ବିଷୟ-ବୈତରଣୀ ନଦୀରେ ଭାସିଯାଉଛି । ତାର ମନେହୁଏ ସେ ଯେପରି ଧୀରେ ଧୀରେ ମୋହରୂପୀ ଶିକୁଳିରେ ବାନ୍ଧି ହେବାକୁ ଯାଉଛି ଯାହାକୁ ଛିଣ୍ଡାଇବା ବିଶେଷ କଷ୍ଟସାଧ୍ୟ ହେବ ଏବଂ

ପରମାଣସ୍ୱରୂପ ସେ ମୁକ୍ତ ଏବଂ ଜୀବନମୁକ୍ତପ୍ରାପ୍ତିରୁ ସର୍ବଦିନ ପାଇଁ ବଞ୍ଚିତ ହେବ । ଏହିପରି ଭାବରେ ଜ୍ଞାନକୁ ମନନ-ଚିନ୍ତନ କରିବା ଦ୍ୱାରା ସେ ପରମପିତା ପରମାତ୍ମାଙ୍କୁ ହିଁ ନିଜର ମାତା, ପିତା, ବନ୍ଧୁ, ସଖା, ସୋଦର ଏବଂ ସର୍ବସ୍ୱ ଜ୍ଞାନ କରି ତାଙ୍କର ସ୍ନେହ-ସ୍ମୃତିରେ ନିଜକୁ ହଜାଇ ଦେବ, ଅର୍ଥାତ୍ 'ନଷ୍ଟୋମୋହଃ ଓ ସ୍ମୃତିର୍ଲବ୍ଧା' ହୋଇପାରିବ ।

ଯେତେବେଳେ ସତ୍ୟଯୁଗ ଥିଲା, ସେତେବେଳେ କୌଣସି ଅକାଳ ମୃତ୍ୟୁ ନ ଥିଲା, କୌଣସି ଦୁର୍ଘଟଣା ଘଟୁ ନ ଥିଲା କି କୌଣସି ରୋଗ କିମ୍ବା ଶୋକ ନ ଥିଲା । ଏହାର କାରଣ ହେଉଛି ସେତେବେଳେ ମାତା ପିତାଙ୍କ କର୍ମରେ ପବିତ୍ରତାର ବଳ ଥିଲା ଏବଂ ସେମାନେ ସତୋଗୁଣୀ ଥିଲେ । ସେମାନଙ୍କ ପାଖରେ ପ୍ରେମ ଥିଲା, ମାତ୍ର ମୋହ ନ ଥିଲା, ତେଣୁ ସେମାନଙ୍କୁ ମୋହଜିତ୍ କୁହାଯାଉଥିଲା । ସେମାନେ କର୍ତ୍ତବ୍ୟ ପାଳନ କରୁଥିଲେ, ସେମାନଙ୍କ ପାଖରେ ଶୁଦ୍ଧ ସ୍ନେହ ଥିଲା, ପରନ୍ତୁ ଆସକ୍ତି ନଥିଲା । ତେଣୁ ସେହି ସମୟକୁ ସୁଖର ଯୁଗ ବା ରାମରାଜ୍ୟ ବୋଲି କୁହାଯାଉଥିଲା, ଯାହାର ପ୍ରଶସ୍ତି ଆଜି ସୁଦ୍ଧା ଗାନ କରାଯାଉଛି । ଏଣୁ ସେପ୍ରକାର କର୍ତ୍ତବ୍ୟ-ପାଳନ ହିଁ ପ୍ରକୃତ କର୍ତ୍ତବ୍ୟ ପାଳନ ଥିଲା । ସେ ସମୟରେ ଦୁଃଖ ନ ଥିଲା, କାରଣ ସେହି ଆତ୍ମାମାନେ କଳିଯୁଗର ଶେଷ ଏବଂ ସତ୍ୟଯୁଗର ଆରମ୍ଭ ଏହି ସନ୍ଧିକ୍ଷଣରେ ଶ୍ରେଷ୍ଠ କର୍ମ ସମ୍ପାଦନ କରି ଶକ୍ତି ଅର୍ଜନ କରିଥିଲେ ଏବଂ ସତୋଗୁଣୀ ସଂସ୍କାରକୁ ଧାରଣ କରିଥିଲେ । ସତ୍ୟଯୁଗ ଏବଂ ତ୍ରେତାଯୁଗରେ ଦେବୀଦେବତାମାନେ ଯଦିଓ ଗୃହସ୍ଥ ଥିଲେ, ତଥାପି ସେମାନଙ୍କର ଜୀବନ ବହୁତ ପବିତ୍ର ଥିଲା ଏବଂ ଗୃହସ୍ଥ-ବ୍ୟବହାର ମଧ୍ୟ ବହୁତ ଉଚ୍ଚ ଥିଲା ତେଣୁ ଆଜି ସୁଦ୍ଧା ଭାରତବାସୀ ସେମାନଙ୍କର ପୂଜା-ବନ୍ଦନା କରିଆସୁଛନ୍ତି ।

ବର୍ତ୍ତମାନ ଯେଉଁ ବ୍ୟକ୍ତି ମନୁଷ୍ୟରୁ ଦେବତା ଅଥବା ନରରୁ ଶ୍ରୀନାରାୟଣ ହେବାକୁ ଚାହୁଁଛି, ତାକୁ ପ୍ରଥମେ ମୋହ ତ୍ୟାଗ କରିବାକୁ ହେବ । କିନ୍ତୁ ବାସ୍ତବ କ୍ଷେତ୍ରରେ ଦେଖାଯାଏ ଯେ ମାନବ ଆଜି

ମର୍କଟସଦୃଶ ମୋହ କରୁଛନ୍ତି ଏବଂ ଗୃହସ୍ଥ ଦେବୀଦେବତାଙ୍କ ଭଳି ସୁଖମୟ ଜୀବନ । ଥରେ ଲକ୍ଷ୍ମୀଙ୍କୁ ବରଣ କରିବା ପାଇଁ ଇଚ୍ଛାକରି ନାରଦ ବିଷ୍ଣୁଙ୍କ ଠାରୁ ସୌନ୍ଦର୍ଯ୍ୟ ବର ମାଗିଲେ । କିନ୍ତୁ ସେ ଯେତେବେଳେ ପୁଷ୍କରଣୀରେ ନିଜର ମୁଖାକୃତି ଦେଖିଲେ ମାଙ୍କଡ଼ ପରି ଦିଶିଲା । ଏହି ଆଖ୍ୟାନ ଏଠାରେ ଉଲ୍ଲେଖ କରାଯାଇପାରେ । କହିବାର ଅର୍ଥ ହେଉଛି ଯେ ମନୁଷ୍ୟର ମନ ଯଦି ନ ବଦଳେ, ଚରିତ୍ର ଯଦି ମର୍କଟ ଚରିତ୍ର ପରି ହୁଏ, ତେବେ ସେ କଳିଯୁଗୀ ମୋହରେ ବଶୀଭୂତ ହୋଇ ରହିବ, ଇଚ୍ଛାକଲେ ବି ନରରୁ ଶ୍ରୀନାରାୟଣ ହୋଇପାରିବ ନାହିଁ ।

**ଜିଜ୍ଞାସୁ**—ଦେବୀଦେବତାମାନେ ତାଙ୍କର କର୍ମରେ କପରି ଶକ୍ତି ପୂରଣ କରିଥିଲେ ଏବଂ ସଂସ୍କାରକୁ କପରି ସତୋପ୍ରଧାନ କରିଥିଲେ ଏବଂ ମୋହଜିତ୍ ହୋଇଥିଲେ ?

**ବ୍ରହ୍ମାକୁମାରୀ**—ସର୍ବଶକ୍ତିମାନ୍ ପରମପିତା ପରମାତ୍ମାଙ୍କ ସହିତ ବୁଦ୍ଧିଯୋଗର ଅଭ୍ୟାସ କରି ସେମାନେ ମୋହଜିତ୍ ଏବଂ ସତୋପ୍ରଧାନ ହୋଇ ପାରିଥିଲେ ଏବଂ ଏହାଦ୍ୱାରା ସେମାନଙ୍କ କର୍ମରେ ଏପରି ଶକ୍ତି ଆସିଥିଲା ଯେ ସେମାନଙ୍କ ରାଜ୍ୟରେ ଯମ ମଧ୍ୟ ସନ୍ତାନମାନଙ୍କୁ ସେମାନଙ୍କର ମାତାପିତାଙ୍କଠାରୁ ଅଲଗା କରିପାରୁ ନ ଥିଲା କି ରୋଗ କିମ୍ବା ପ୍ରାକୃତିକ ବିପର୍ଯ୍ୟୟ କଷ୍ଟ ଦେଇପାରୁ ନ ଥିଲା । ସଙ୍ଗମ ଯୁଗରେ ସେମାନେ ଯେଉଁସବୁ କର୍ମ କରୁଥିଲେ, ସେସବୁ କର୍ମ ପରମପିତା ପରମାତ୍ମା ଶିବଙ୍କୁ ସ୍ମରଣ କରି ସମ୍ପାଦନ କରୁଥିଲେ ଅର୍ଥାତ୍ ସେମାନେ କର୍ମଯୋଗୀ ଥିଲେ । ଏହାର ଫଳ-ସ୍ୱରୂପ, ସେମାନେ ପରଜନ୍ମରେ ଅର୍ଥାତ୍ ସତ୍ୟଯୁଗରେ ବିକର୍ମ ବନ୍ଧନରୁ ମୁକ୍ତ ହେଉଥିଲେ ଅର୍ଥାତ୍ 'ଜୀବନମୁକ୍ତ' ଥିଲେ ଆଜି ସମସ୍ତେ କର୍ମର ଅଧୀନ ଏବଂ କର୍ମଭୋଗ ସମସ୍ତଙ୍କୁ କଷ୍ଟ ଦେଉଛି । ପରନ୍ତୁ କର୍ମ ସତ୍ୟଯୁଗରେ ଦେବତାଙ୍କର ଅଧୀନ ଥିଲା ଅର୍ଥାତ୍ କର୍ମ ସେମାନଙ୍କୁ ଦୁଃଖ ଦେଉ ନଥିଲା ।

ଜିଜ୍ଞାସୁ—ମୁଁ ମାନୁଛୁ ଯେ ଆଜକାଲି ଆମ୍ଭେମାନେ କର୍ମର ଅଧୀନ ହୋଇଯାଇଛୁ । ଆମର ଏପରି ଅବସ୍ଥା ହୋଇଛି ଯେ ଆମ୍ଭେମାନେ ଗୃହସ୍ଥଙ୍କୁ ଗୋଟାଏ କଥା, କିନ୍ତୁ ବାସ୍ତବ କ୍ଷେତ୍ରରେ ହେଉଛି ଆଉ ଗୋଟାଏ କଥା । ଗୃହସ୍ଥ ଜୀବନକୁ ସୁଖମୟ କରିବା ପାଇଁ ଆମ୍ଭେମାନେ ବହୁତ ପରିଶ୍ରମ କରୁଛୁ ସତ୍ୟ, ମାତ୍ର ଏସବୁ ସତ୍ତ୍ୱେ ପ୍ରକୃତ ସୁଖ ସ୍ୱପ୍ନତୁଲ୍ୟ ହୋଇଛି । ବେଳକୁ ବେଳ ଜୀବନ-ବନ୍ଧନ ଆହୁରି ଅଧିକ ଅନୁଭୂତ ହେଉଛି । ତେଣୁ କହନ୍ତୁ ବର୍ତ୍ତମାନ ସମୟରେ ଦେବୀଦେବତାଙ୍କ ସଦୃଶ ଜୀବନ-ମୁକ୍ତ ଅବସ୍ଥା କିପରି ଲଭ କରିପାରିବା ? ଆତ୍ମମାନଙ୍କ କର୍ମରେ ସେହି ଶକ୍ତି କିପରି ଆସିବ ? ତେଣୁ କର୍ମ ଜଞ୍ଜାଳକୁ ଆମ୍ଭେ ଛାଡ଼ି ନ ଦେବା କାହିଁକି ?

## ମୋହ ତ୍ୟାଗ କରିବା ପାଇଁ କର୍ମ-ସନ୍ନ୍ୟାସୀ ନ ହୋଇ କର୍ମ-ଯୋଗୀ ହେବା ଆବଶ୍ୟକ ।

ବ୍ରହ୍ମାକୁମାରୀ—କର୍ମକୁ କୌଣସି ଉପାୟରେ ସମ୍ପୂର୍ଣ୍ଣରୂପେ ତ୍ୟାଗ କରାଯାଇ ନ ପାରେ । କର୍ମ କରିବା ହିଁ କର୍ତ୍ତବ୍ୟ ଅଟେ । ଜୀବନ-ନିର୍ବାହ ପାଇଁ କର୍ମ କରିବାକୁ ପଡ଼ିବ । ତେଣୁ ଭଗବାନ କହୁଛନ୍ତି ଯେ ମାନବ କର୍ମ-ସନ୍ନ୍ୟାସୀ ନ ହୋଇ କର୍ମ ଯୋଗୀ ହେବା ଉଚିତ । ପବିତ୍ର କର୍ମ କରିବା, କର୍ମରତ ଥିବା ସମୟରେ ପରମପିତା ପରମାତ୍ମାଙ୍କୁ ସ୍ମରଣ କରିବା ଏବଂ ନିଜର ସର୍ବସ୍ୱ ପରମପିତା ପରମାତ୍ମାଙ୍କୁ ଅର୍ପଣ କରି ନିଜେ ସେ ସବୁର ନିମିତ୍ତ ରୂପେ ରହିବା ହିଁ ହେଉଛି କର୍ମଯୋଗର ଲକ୍ଷଣ । ଏହି ନିୟମକୁ ସର୍ବଦା ସମ୍ମୁଖରେ ରଖି କାମକଲେ କର୍ମ ଆମକୁ ବାନ୍ଧି ପାରିବନାହିଁ କି କୌଣସି ବସ୍ତୁ, ବ୍ୟକ୍ତି ଅଥବା ବିଭବ ପ୍ରତି ଆମର ମୋହ ମମତା ରହିବ ନାହିଁ ।

ଜିଜ୍ଞାସୁ—ଉପରୋକ୍ତ ଯୁକ୍ତି ବହୁତ ଉତ୍ତମ । କିନ୍ତୁ ପୂର୍ବ ସଂସ୍କାରମାନଙ୍କର ଦୃଢ଼ତା ହେତୁ ମନରେ ବାରମ୍ବାର ମୋହ ଜାତ ହେଉଛି ।

ମୋହକୁ ତୁଟାଇବା ପାଇଁ ବର୍ତ୍ତମାନ ଶକ୍ତି ମିଳୁଛି ।

ବ୍ରହ୍ମାକୁମାରୀ—ଯଦିଓ ଆପଣଙ୍କର ସଂସ୍କାର ବହୁତ ଦୃଢ଼, ତଥାପି ସେଗୁଡ଼ିକୁ ନଷ୍ଟ କରିବା ପାଇଁ ସର୍ବଶକ୍ତିମାନ୍ ପରମାତ୍ମାଙ୍କଠାରୁ ବର୍ତ୍ତମାନ ଶକ୍ତି ମିଳୁଛି । ଯଦି ବର୍ତ୍ତମାନ ଆପଣ ଆପଣଙ୍କର ସଂସ୍କାରକୁ ପରିବର୍ତ୍ତନ ନ କରନ୍ତି, ତେବେ ଆଉ କେତେବେଳେ କରିବେ ? ଶକ୍ତି ଗ୍ରହଣ କରିବା ପାଇଁ ବର୍ତ୍ତମାନ ସର୍ବଶକ୍ତିମାନ୍ ପରମାତ୍ମା ଶିବ ସ୍ୱୟଂ ସହଜ ବିଧି ଶିଖାଉଛନ୍ତି । ଏହାପରେ କ'ଣ ଆଉ ଭଲ ସମୟ ଆସିପାରେ କି ? ତେଣୁ ବର୍ତ୍ତମାନ ମନରୂପୀ ଦର୍ପଣରୁ ମଇଳା ସଫା କରନ୍ତୁ ।

ଜିଜ୍ଞାସୁ—ଆମ୍ଭେମାନେ ତ ପ୍ରସ୍ତୁତ ଅଛୁ, ପରନ୍ତୁ ଶିବ ପରମାତ୍ମା ଯଦି ଆମ୍ଭମାନଙ୍କଠାରୁ ମୋହକୁ ଦୂର କରିଦେଇ ପାରିବେ, ତେବେ ଏହା ସମ୍ଭବ ହେବ । ଆମ୍ଭମାନଙ୍କର ଏଥିରେ କିଛି କରିବାର ନାହିଁ ।

ବ୍ରହ୍ମାକୁମାରୀ—ଆପଣଙ୍କ ମନ୍ତବ୍ୟ ଶୁଣି ଏକ ଦୃଷ୍ଟାନ୍ତ ମୋର ମନେପଡ଼ୁଛି । ଶୁଣାଯାଏ କୌଣସି ଏକ ଗଛ ଡାଳରେ ଗୋଟିଏ ଶୁଆ ବସିଥିଲା । ସେ କହୁଥିଲା—"ମୋତେ କିଏ ଛଡ଼େଇ ଦିଅ, ମୋତେ କିଏ ଉଡ଼େଇ ଦିଅ ।" ରାସ୍ତାରେ ଯାଉଥିବା ବାଟୋଇ ଏକଥା ଶୁଣି ବହୁତ ହସିଲା । ଶୁଆକୁ କହିଲା, "ଆରେ ଶୁଆ, ତୁ ତ ନିଜେ ତୋ ନଖରେ ଗଛର ଡାଳକୁ ଜାବୁଡ଼ି ଧରିଛୁ; ତୋର ଉଡ଼ିବା ପାଇଁ ଡେଣା ମଧ୍ୟ ଅଛି, ତେଣୁ ତୁମେ ଅନ୍ୟ କେହି କାହିଁକି ଛଡ଼େଇବ ଏବଂ ଉଡ଼େଇବ ? ତୁ ତ ନିଜେ ଉଡ଼ିପାରିବୁ ।" ଠିକ୍ ଏହି ଅବସ୍ଥା ଆପଣଙ୍କର । ପରମପିତା ପରମାତ୍ମା ଶିବ ଆପଣଙ୍କ ଭଳି ଆତ୍ମାରୂପୀ ପକ୍ଷୀକୁ ଜ୍ଞାନ ଏବଂ ଯୋଗରୂପୀ ଡେଣା ଦେଇଛନ୍ତି, ମାତ୍ର ଆପଣ ନିଜର ମନକୁ ବିଭିନ୍ନ ବସ୍ତୁ ଏବଂ ବନ୍ଧୁବାନ୍ଧବ-ମାନଙ୍କ ସ୍ମୃତିରେ ବାନ୍ଧି ରଖିଛନ୍ତି । ତେଣୁ ଆପଣଙ୍କୁ ଅନ୍ୟ କେହି କପରି ଛଡ଼େଇବେ ବା ଉଡ଼େଇବେ ? ଆପଣ ନିଜେ ନିଜକୁ ଛଡ଼େଇବା କଥା ।

ଏହା ଅବଶ୍ୟ ଠିକ୍ ଯେ ପରମପିତା ପରମାତ୍ମା ଶିବ ଆପଣଙ୍କୁ ଯଥାର୍ଥ ମାର୍ଗ ଦେଖାଇବେ ଏବଂ ଶାନ୍ତି ଦେବେ ।

ଏହି ହେତୁରୁ ପରମପିତା ପରମାତ୍ମା ଶିବ କହୁଛନ୍ତି କି—"ହେ ବତ୍ସମାନଗଣ, ତୁମ୍ଭମାନଙ୍କର ଏହି ବିକାରଗ୍ରସ୍ତ ଦୁନିଆକୁ ସୁଧାରିବା ପାଇଁ ମୁଁ ପରମଧାମକୁ ଛାଡ଼ି ତୁମମାନଙ୍କ ପାଖକୁ ଆସିଛି । ଏପରି ଥିଲେ ତୁମେ ତୁମର ଗୃହସ୍ଥିକୁ ସୁଧାରିବା ପାଇଁ କାହିଁକି ଲାଗିପଡ଼ୁଛ ? ତୁମ ପାଖରେ ଶକ୍ତି ନାହିଁ ଏବଂ ଅଭିମାନ ଦେଖାଉଛ କି—"ଆମ୍ଭେମାନେ ଗୃହସ୍ଥିକୁ ସମ୍ଭାଳିବା ସଙ୍ଗେ ସଙ୍ଗେ ସମ୍ପୂର୍ଣ୍ଣ କର୍ତ୍ତବ୍ୟ ପାଳନ କରିବୁ ।" ପୁଣି କହୁଛ ଯେ ମୋହ ଆଦି ବିକାର ତ୍ୟାଗ କରି ଗୃହସ୍ଥ କପରି ଚଳିବ ? ବାସ୍ତବରେ ବିକାର ତୁମ୍ଭମାନଙ୍କର ବୁଦ୍ଧିକୁ ଖରାପ କରିଦେଇଛି । ଘରସଂସାର ତ୍ୟାଗ କରିବା ପାଇଁ ମୁଁ ତ କେବେ କହୁନାହିଁ । ମୁଁ କହୁଛି ଯେ ଯୋଗଦ୍ୱାରା ମୋ'ଠାରୁ କେବଳ ଶକ୍ତି ନିଅ । ଶକ୍ତି ବ୍ୟତୀତ ତୁମର ସଂସ୍କାର କପରି ଶୁଦ୍ଧ ହେବ ? ଏହି ବିକାର ଯୋଗୁ ତୁମର ଜୀବନ ଆଜି ବିଷତୁଲ୍ୟ ହୋଇଯାଇଛି ଏବଂ ଏହା ସତ୍ତ୍ୱେ ସେହି ବିଷ ପଛରେ ତୁମ୍ଭେମାନେ ବାରମ୍ବାର ଧାବମାନ ହେଉଛ ।"

ଜିଜ୍ଞାସୁ—ମୋହ ତ ବାସ୍ତବରେ ଖରାପ, ତେଣୁ ସେଥିରୁ ରକ୍ଷା ପାଇବା ଆବଶ୍ୟକ । ମାତ୍ର ଉପାୟ କ'ଣ ?

ବ୍ରହ୍ମାକୁମାରୀ—ଏହା ତ ଖରାପ ନିଶ୍ଚୟ । ଅନ୍ୟର ହାଡ଼-ମାଂସରେ ମୋହ-ମମତା ରଖିବା କ'ଣ ସତରେ ଭଲ କାମ ? ମନୁଷ୍ୟ ମନେରଖିବା ଉଚିତ ଯେ ଅନ୍ୟର ଚମଡ଼ା ସହିତ ମୋହ ମମତା ରଖିବା ବ୍ୟକ୍ତି ପରଜନ୍ମରେ ମୋଚିରୂପେ ଜନ୍ମ ନିଏ । ମାଟି ଏବଂ ଲୁହାରେ ନିର୍ମିତ ଘର ପ୍ରତି ଯାହାର ମୋହ ରହେ, ସେ ପରଜନ୍ମରେ କୁମ୍ଭାର ଅଥବା କମାର ହୁଏ । ଧନରେ ମୋହ ରଖିବା ବ୍ୟକ୍ତି ବେକାର ଅଥବା ଭିକାରୀ ହୁଏ ଏବଂ ବନ୍ଧୁବାନ୍ଧବମାନଙ୍କ ସହିତ ମୋହ ରଖିଥିବା ବ୍ୟକ୍ତି 'ଅନ୍ତେ ଯା

ମତି ସା ଏବ ଗତି' ଅର୍ଥାତ୍ 'ମୃତ୍ୟୁ ପୂର୍ବରୁ ଯାହା ଇଚ୍ଛା ଥାଏ, ସେଇ ଗତି ହୁଏ' ନିୟମ ଅନୁସାରେ 'ବନ୍ଦୀ' ହୁଏ । ଏଣୁ ଏମାନଙ୍କ ସହିତ ମୋହ କରିବା ଏବଂ ଅନ୍ୟ ପକ୍ଷରେ ସତ୍ୟଯୁଗୀ ସୁଖଧାମକୁ ଭୁଲିଯିବା ଅର୍ଥ କମଳକୁ ତ୍ୟାଗ କରି ମଇଳାରେ ପଡ଼ିବା ଅଥବା ହୀରାକୁ ଛାଡ଼ି ପଥରକୁ ରଖିବା । ତେଣୁ ମନୁଷ୍ୟ ମୋହ ତ୍ୟାଗ କରିବା ଏକାନ୍ତ ଆବଶ୍ୟକ ।

## ବିନାଶମୁଖୀ ସୃଷ୍ଟି ପ୍ରତି ମୋହ ରଖିବା ଉଚିତ ମୂର୍ଖତା ଅଟେ ।

ବର୍ତ୍ତମାନ ପରମପିତା ପରମାତ୍ମା ଶିବ କହୁଛନ୍ତି ଯେ—"ହେ ବତ୍ସ, ଏହି କଳିଯୁଗୀ ପୁରାତନ ସୃଷ୍ଟିର କୌଣସି ବସ୍ତୁ ପ୍ରତି ମୋହ ରଖ ନାହିଁ । କାରଣ ଅଣୁ ବୋମା ଇତ୍ୟାଦି ଦ୍ୱାରା ଏହାର ବିନାଶ ସନ୍ନିକଟ । ଭାବନ୍ତୁ ନାହିଁ ଯେ ବିନାଶକାଳ ବହୁତ ବିଳମ୍ବ ଅଛି । ଯଦିଓ ମହାବିନାଶ ପାଇଁ କିଛି ବର୍ଷ ବାକି ଅଛି, ତଥାପି ଆପଣଙ୍କ ଶରୀରର ବିନାଶ ଯେ କେଉଁ ମୁହୂର୍ତ୍ତରେ ହେବ, ତା' କିଏ କହିବ । ତେଣୁ ଗମ୍ଭୀରଭାବେ ଚିନ୍ତାକରି ଦେଖନ୍ତୁ କି ଯଦି ଆଜି ଆପଣଙ୍କ ଶରୀରର ବିନାଶ ଘଟେ, ତେବେ ମୋହ ମମତାର ପରିଣାମସ୍ୱରୂପ ଆପଣଙ୍କର କି ଗତି ହେବ ? ସ୍ପଷ୍ଟ କଥା ଯେ ପରମଧାମ ଅର୍ଥାତ୍ କର୍ମାତୀତ ସୃଷ୍ଟି ଅଥବା ସତ୍ୟଯୁଗୀ ନିର୍ବିକାର ସୃଷ୍ଟିକୁ ଆପଣଙ୍କର ଗତି ହୋଇପାରିବ ନାହିଁ, ବରଂ ପ୍ରଥମେ ଧର୍ମରାଜପୁରୀରେ ଆପଣଙ୍କୁ ଦଣ୍ଡ ଭୋଗିବାକୁ ପଡ଼ିବ । ବର୍ତ୍ତମାନର ସଂସାରରେ ମୋହ ରଖିବା ଅର୍ଥ ହେଉଛି ଆଗାମୀ ସାରା କଳ୍ପ ପାଇଁ ନିଜର ଭାଗ୍ୟକୁ ହରାଇବା । ତେଣୁ ବର୍ତ୍ତମାନ ପରମପିତା ପରମାତ୍ମାଙ୍କ ଆଦେଶ ମାନି, ଅନାସକ୍ତ ହୋଇ ସର୍ବଦା ଆତ୍ମିକ ସ୍ଥିତିରେ ରହି ଏବଂ ଈଶ୍ୱରୀୟ ସ୍ମୃତିରେ ନିମଗ୍ନ ରହି ଏକ ସଚ୍ଚା କର୍ମଯୋଗୀ ସଦୃଶ କର୍ମ କରିବା ଉଚିତ ।

ମୋହ ନ ରଖି କପର କର୍ତ୍ତବ୍ୟ ପାଳନ କରିବ ।

ଦେଖାଯାଏ ଯେ ନର୍ସ ( Nurse ) ମଧ୍ୟ ଅନେକ ଶିଶୁଙ୍କୁ ଖୁବ୍ ଭଲଭାବରେ ଲାଳନ-ପାଳନ କରେ । ସେ ସେମାନଙ୍କୁ ସଫାସୁତରା ରଖେ, ଖାଇବା ପିଇବାକୁ ଦିଏ ଏବଂ ସମୟାନୁଯାୟୀ ତାର ସବୁ କାମ କରେ । ଏହା ସତ୍ତ୍ୱେ ସେହି ସନ୍ତାନମାନଙ୍କଠାରେ ତାର ମୋହ ରହେନି । ଏଣୁ ମୋହ-ମମତା ତ୍ୟାଗ କରି ଗୃହସ୍ଥି ଚଳାଇବା ଅସମ୍ଭବ ବୋଲି କହିବା ଠିକ୍ ନୁହେଁ । ଆପଣ ଜାଣନ୍ତି ଯେ ନୌକା ଯେତେବେଳେ ଜଳ ଉପରେ ରହେ ସେତେବେଳେ ସେ ଭାସିବାକୁ ଲାଗେ ଏବଂ ଯାତ୍ରୀମାନଙ୍କୁ ମଧ୍ୟ ନିର୍ଦ୍ଦିଷ୍ଟ ସ୍ଥାନରେ ବା କୂଳରେ ପହଞ୍ଚାଇଦିଏ । ଯଦି ନୌକା ମଧ୍ୟରେ ପାଣି ପଶିଯାଏ ତେବେ ନୌକା ତ ନିଜେ ବୁଡ଼େ, ଯାତ୍ରୀମାନଙ୍କୁ ମଧ୍ୟ ବୁଡ଼ାଇଦିଏ । ଠିକ୍ ସେହିପରି ଯଦି ମନୁଷ୍ୟ ମନରେ ଏହି ସଂସାର-ସାଗରର ମୋହରୂପୀ ଜଳ ପ୍ରବେଶ କରେ, ତେବେ ସେ ବୁଡିଯାଏ । କିନ୍ତୁ ସଂସାରରେ ଥାଇ ସୁଦ୍ଧା ଯଦି ମନରେ ମୋହ ପ୍ରବେଶ ନ କରେ ତେବେ ସେ ବିଷୟ-ସାଗରକୁ ଅତିକ୍ରମ କରିଯାଏ ।

**ଜିଜ୍ଞାସୁ**—ଭଉଣୀ, ଶିବବାବା ଯେଉଁ ମହାବାକ୍ୟ କହିଛନ୍ତି କି 'ଯେ କୌଣସି ମୁହୂର୍ତ୍ତରେ ତୁମ ଶରୀରର ବିନାଶ ଘଟିପାରେ, ଏ କଥା ସ୍ମରଣ ରଖ । ଶେଷକାଳରେ ତୁମ ମନ ଯଦି ମୋହଗ୍ରସ୍ତ ରହିବ, ତେବେ ତୁମର ସଦ୍‌ଗତି ହେବନାହିଁ, ତେଣୁ ମୋହକୁ ତ୍ୟାଗକରି ସର୍ବଦା ଅନ୍ତିମ କାଳପାଇଁ ପ୍ରସ୍ତୁତ ରହ'—ଏହା ଅତ୍ୟନ୍ତ ଉପାଦେୟ କଥା । ଏଣିକି ମୋ ମନରୁ ମୋହ ଦୂର ହୋଇଯିବ । ଏହା ନିଶ୍ଚିତ ।

**ବ୍ରହ୍ମାକୁମାରୀ**—ଆଚ୍ଛା, ଓଁ ଶାନ୍ତି ।

**ଜିଜ୍ଞାସୁ**—ଓଁ ଶାନ୍ତି ।

# ଲୋଭରୁ ଲାଭ—ଏକ ଭ୍ରାନ୍ତ ଧାରଣା

ମନୁଷ୍ୟର ଇଚ୍ଛା, ତୃଷ୍ଣା ଏବଂ ଲାଳସା ସର୍ବଦା ଅନନ୍ତ ଯାହାକି ଟିକେବେହେଲେ ତୃପ୍ତ ହୁଏ ନାହିଁ । ଅଥଚ ଏଗୁଡ଼ିକୁ ତୃପ୍ତ କରିବା ଉଦ୍ଦେଶ୍ୟରେ ସେ ତା'ର ସାରା ଜୀବନକୁ ବିତାଇଦିଏ । ରାଜା ସିକନ୍ଦରଙ୍କ ଉଦାହରଣ ଅଳ୍ପ ବହୁତେ ସମସ୍ତଙ୍କ ସ୍ମୃତିରେ ଥିବ । ସେ ତାଙ୍କର ସେନାପତିମାନଙ୍କୁ କହିଥିଲେ ଯେ, "ଯେତେବେଳେ ମୋର ଶବକୁ କଫିନ୍ (ଶବାଧାର) ମଧ୍ୟରେ ରଖି କବରକୁ ନେବ, ସେତେବେଳେ ମୋର ଦୁଇ ହାତକୁ କଫନର ଦୁଇ ପାଦକୁ ଝୁଲାଇ ଦେଇଥିବ, ଯାହା ଦେଖି ଲୋକମାନେ ଜାଣିପାରିବେ ଯେ ରାଜା ସିକନ୍ଦର ଜୀବନସାରା ଲୁଟ-ତରାଜ କରି ଅଜସ୍ର ଧନ-ସମ୍ପତ୍ତି ଠୁଳ କରିଯାଇଥିଲେ ମଧ୍ୟ ଗଲାବେଳେ ଶୂନ୍ୟ ହାତରେ ଗଲେ ।" ଏ ପ୍ରତ୍ୟକ୍ଷ ଉଦାହରଣ ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିଥିଲେ ସୁଦ୍ଧା ଆଜିର ମାନବ ଏଥିରୁ ଶିକ୍ଷା ନେବାପାଇଁ ସମ୍ପୂର୍ଣ୍ଣ ଅନିଚ୍ଛୁକ । ତେଣୁ ଯୋଗୀ ଜୀବନରେ ମିଳୁଥିବା ଅପାର ସୁଖ-ଶାନ୍ତିରୁ ସେ ଆଜି ବଞ୍ଚିତ । ବର୍ତ୍ତମାନ ସ୍ୱୟଂ ପରମପିତା ପରମାତ୍ମା ମାନବକୁ ଜ୍ଞାନରୂପୀ ଅମୃତ ପାନ କରିବାକୁ ଦେଇ ତା ମନରୁ ଲୋଭ ଦୂର କରୁଛନ୍ତି ।

**ଜିଜ୍ଞାସୁ**—ଭଉଣୀ, ଗତ ପାଞ୍ଚଦିନ ଧରି ଯେଉଁ ଈଶ୍ୱରୀୟ ଜ୍ଞାନ ମୁଁ ଶୁଣିଆସୁଛି, ତାହାଦ୍ୱାରା ମୋର ବ୍ୟବହାରିକ ଜୀବନରେ ବହୁତ ପରିବର୍ତ୍ତନ ଆସିଛି । କାମ, କ୍ରୋଧ, ମୋହ ଅହଂକାର ଇତ୍ୟାଦି ବହୁ ପରିମାଣରେ ଶାନ୍ତ ହୋଇ ଆସିଲଣି । ବର୍ତ୍ତମାନ ମୁଁ ଆଶା କରୁଛି ଯଦି ମୋର ଅବସ୍ଥା ପ୍ରତି ମୁଁ ବିଶେଷ ଧ୍ୟାନ ଦେଇପାରିବି ଏବଂ ପ୍ରତିଦିନ ଜ୍ଞାନ-ସ୍ନାନର ଅଭ୍ୟାସ ଅବ୍ୟାହତ ରଖିବି, ତେବେ ବିକାରଗୁଡ଼ିକ ମୋତେ ଛାଡ଼ି ଚାଲିଯିବେ । ଆପଣ ଶିକ୍ଷା ଦେଇଥିବା ଗୋଟିଏ କଥା—(୧) ନିଜର ସବୁ-କିଛି ଶିବବାବାଙ୍କୁ ଅର୍ପଣ କରି ସ୍ୱୟଂ ଟ୍ରଷ୍ଟି (Trustee) ହୋଇ କାର୍ଯ୍ୟ

ସମ୍ପାଦନ କରିବ; (୨) ବର୍ତ୍ତମାନ ମୋର ମରଜୀବା ଜନ୍ମ ବୋଲି ଅନୁଭବ କରିବ; (୩) ନିଜକୁ ଏକ 'ଆତ୍ମା' ନିଶ୍ଚୟ କରିବ ଏବଂ (୪) କର୍ମ କରିବା ସମୟରେ ସର୍ବଦା ଯୋଗଯୁକ୍ତ ରହିବ—ଏଗୁଡ଼ିକ ଅଭ୍ୟାସ କରିବା ଫଳରେ ମୋର ବହୁତ ଉନ୍ନତି ହୋଇଛି ଏହାଦ୍ୱାରା ମୋର ଲୋଭ-ବୃତ୍ତି ଉପରେ ମଧ୍ୟ ବହୁତ ପ୍ରଭାବ ପଡ଼ିଛି । ତଥାପି ବର୍ତ୍ତମାନ ମଧ୍ୟ ମୋ ମନରେ ଯଥେଷ୍ଟ ପରିମାଣରେ ଲୋଭର ସଂସ୍କାର ରହିଛି ।

## ଲୋଭୀ ମନୁଷ୍ୟ ବର୍ତ୍ତମାନ ଦୁଃଖୀ ଏବଂ ପରଜନ୍ମରେ କାଙ୍ଗାଳ

ବ୍ରହ୍ମାକୁମାରୀ—ଲୋଭ ଏପରି ଏକ ବିକାର ଯାହାକି ମନୁଷ୍ୟକୁ ବହୁତ ମିଠା ଲାଗେ । କାରଣ ଏହାଦ୍ୱାରା ସେ କିଛି ଲାଭ କରୁଛି ବୋଲି ତାକୁ ଜଣାପଡ଼େ । ମାତ୍ର ଧୀରେ ଧୀରେ ସେ ଏଥିରେ ଏପରି ବାନ୍ଧି ହୋଇଯାଏ ଅଥବା ତା' ଜୀବନରେ ଏପରି ଏକ ଦିନ ଆସେ ଯେ ତା'ର ମିଠା ମଜା ଚୁଡ଼ମାର ହୋଇଯାଏ ଏବଂ ବୁଦ୍ଧିଆଣି ପରି ନିଜେ ତିଆରି କରିଥିବା ଜାଲ ମଧ୍ୟରେ ସେ ଝୁଲିବାକୁ ଲାଗେ । ଲୋଭର ନିଶା ତାକୁ ଦିନକୁ ଦିନ ଅଧିକ ଲୋଭୀ କରାଏ ଏବଂ ଶେଷରେ ଏପରି ଏକ ଦିନ ଆସେ ଯେଉଁଦିନ କି ଅତି ଲୋଭରୁ ତାର ଶୋଚନୀୟ ମରଣ ଘଟେ ଲୋଭୀ ସଦା ଅତୃପ୍ତ ଏବଂ ଅସନ୍ତୁଷ୍ଟ ରହେ, ଫଳରେ ସେ ପ୍ରକୃତ ସୁଖ-ଶାନ୍ତି ଅନୁଭବ କରିପାରେ ନାହିଁ । ଏହି ବିକାରଦ୍ୱାରା ଅର୍ଜିତ ସମ୍ପତ୍ତି ଦିନେ ନା ଦିନେ ତାକୁ ଏପରି ଅସହାୟ ପରିସ୍ଥିତିର ସମ୍ମୁଖୀନ କରାଏ ଯାହାପାଇଁ କି ସେ ବହୁତ ପଶ୍ଚାତ୍ତାପ କରେ ।

ବାସ୍ତବରେ ପବିତ୍ରତାରୁ ଯେ ସର୍ବଶ୍ରେଷ୍ଠ ସମ୍ପଦ ମିଳେ, ଏକଥା ଲୋଭୀ ସ୍ୱୀକାର କରେ ନାହିଁ । ଲୋଭଦ୍ୱାରା କେବଳ କାକ-ବିଷ୍ଠା ସମାନ ତମୋଗୁଣୀ ବସ୍ତୁର ଲାଭ ହୁଏ । ଲୋଭୀ ମନୁଷ୍ୟ ପ୍ରକୃତି ( ତତ୍ତ୍ୱ ) ପଛରେ ଯେତେ ଅଧିକ ଧାବମାନ ହେବାକୁ ଲାଗେ, ପ୍ରକୃତି ସେତେ ଅଧିକ

ତା'ଠାରୁ ଦୂରେଇଯାଏ । ତେଣୁ ବର୍ତ୍ତମାନ ପରମପିତା ପରମାତ୍ମା କହୁଛନ୍ତି ଯେ ଆପଣ ଯଦି ଲୋଭ ତ୍ୟାଗ କରିବେ, ତେବେ ସେ ଆପଣଙ୍କୁ ତାଙ୍କର ସମ୍ପୂର୍ଣ୍ଣ ସମ୍ପତ୍ତି ଦେବେ ।

ଈଶ୍ୱରୀୟ ଜ୍ଞାନ ଲାଭ କରିବା ପରେ ଯଦି ମାନବ ବିକର୍ମ କରିବ, ତେବେ ତା'ର ଫଳସ୍ୱରୂପ ତାକୁ ଧର୍ମରାଜପୁରରେ ଦଣ୍ଡ ଭୋଗ କରିବାକୁ ପଡ଼ିବ ଏବଂ ଯଦି ସେ ଅଯଥା ଉପାୟରେ କିଛି ସମ୍ପତ୍ତି ଠୁଳ କରିବ ତେବେ ସେ ଭବିଷ୍ୟତରେ ମୁକ୍ତି ଏବଂ ଜୀବନମୁକ୍ତିର ବରଦାନରୁ ବଞ୍ଚିତ ହେବ । ଲୋଭ କରିବାର ଅର୍ଥ ହେଉଛି ପରମପିତା ପରମାତ୍ମା ଏବଂ ନିଜ ମଧ୍ୟରେ ଏକ ଗଡ଼ଖାଇ ଖୋଳିବା ଏବଂ ସେହି ସୁଖଦାତାଙ୍କ ଠାରୁ ଦୂରେଇ ଯିବା । ଏହିଭଳି ଭାବରେ ଜ୍ଞାନ ମନ୍ଥନ କରି ଜ୍ଞାନବାନ୍ ବ୍ୟକ୍ତି ଲୋଭକୁ ତ୍ୟାଗ କରେ ଏବଂ ସାତ୍ତ୍ୱିକ ରୀତିରେ ରୋଜଗାର କରେ । ସେ ନିଜର ଲୋଭ ବୃତ୍ତିକୁ ଅଧିକ ଭାବରେ ଈଶ୍ୱରୀୟ ଜ୍ଞାନ ଏବଂ ଈଶ୍ୱରୀୟ ସ୍ମୃତିରୂପୀ ଧନ ଉପାର୍ଜନରେ ନିୟୋଜିତ କରେ ।

**ଜିଜ୍ଞାସୁ** - ଭଉଣୀ, କଥା ହେଉଛି ଯେ ମନୁଷ୍ୟ ଏହି ଜନ୍ମରେ ଲୋଭ କରିବାଦ୍ୱାରା ଯେଉଁ ସୁଖ ଲାଭ କରେ ସେହି ସୁଖ ତା'ର ଭବିଷ୍ୟତ ସମ୍ବନ୍ଧରେ ତାକୁ ଅନ୍ଧ କରିଦିଏ ଏବଂ ତାର ଭବିଷ୍ୟତ ଜନ୍ମ ବିଷୟରେ ଚିନ୍ତା କରିବା ପାଇଁ ତାକୁ ସମୟ ଦିଏ ନାହିଁ । ଏଥିରୁ ମୁକ୍ତ ହେବାର ଉପାୟ କ'ଣ ?

**ବ୍ରହ୍ମାକୁମାରୀ**—ପରଜନ୍ମ କଥା ଛାଡ଼ନ୍ତୁ, ଏହି ଜନ୍ମରେ ମଧ୍ୟ ଲୋଭରୁ ନାନା ଅଶାନ୍ତି ସୃଷ୍ଟି ହୁଏ । କିନ୍ତୁ ବିକାରଦ୍ୱାରା ଅନ୍ଧ ହୋଇଥିବା ମନୁଷ୍ୟ ତାର ପରିଣାମ ସମ୍ବନ୍ଧରେ ଚିନ୍ତା କରିପାରେ ନାହିଁ । ବିକାର ଯେ କୌଣସି ପ୍ରକାରର ହେଉନା କାହିଁକି ତାହା ମନୁଷ୍ୟକୁ ଅନ୍ଧ କରିଦିଏ । ଦେଖାଯାଏ ଯେ ମନୁଷ୍ୟ 'କାମ' ଦ୍ୱାରା ଯେପରି ଅନ୍ଧ ହେଉଛି, କ୍ରୋଧ ମୋହ ଅହଙ୍କାର ଦ୍ୱାରା ମଧ୍ୟ ସେହିପରି ଅନ୍ଧ

ହେଉଛି । ତେଣୁ ଜ୍ଞାନକୁ ଅଞ୍ଜନ କୁହାଯାଏ, କାରଣ ଏହା ମନୁଷ୍ୟର ବୁଦ୍ଧି ରୂପୀ ନେତ୍ରକୁ ସର୍ବଦା ନିର୍ମଳ ରଖେ ।

ଆପଣ ଏକଥା ସ୍ୱୀକାର କରିବେ ଯେ ଲୋଭୀ ମନୁଷ୍ୟ ସଦା ଅତୃପ୍ତ ଏବଂ ଅସନ୍ତୁଷ୍ଟ ରହେ । ଏଣୁ ଯାହାର ତୃଷା ସଦା ଅତୃପ୍ତ ତାକୁ ଏହି ଜନ୍ମରେ ସୁଖୀ ବୋଲି ଆପଣ କିପରି କହିବେ ? ଲୋଭୀ ମନୁଷ୍ୟ ସର୍ବଦା ଅତୃପ୍ତ ଏବଂ ଅନେକାନେକ ଆଶା-ତରଙ୍ଗ ମଧ୍ୟରେ ଗଢ଼ କରେ । ଉଦାହରଣସ୍ୱରୂପ, ସେ ଗୋଟିଏ ଗୃହ ନିର୍ମାଣ କରିସାରିବା ପରେ ଆଉ ଗୋଟିଏ ଗୃହ ନିର୍ମାଣ ବିଷୟରେ ମଧ୍ୟ ଚିନ୍ତା କରେ ଗୋଟିଏ ମଟରଗାଡ଼ି କିଣିସାରିବା ପରେ ପ୍ରତ୍ୟେକ ସନ୍ତାନ ପାଇଁ ଗୋଟିଏ ଗୋଟିଏ ମଟରଗାଡ଼ି କିଣିବାକୁ ଯୋଗାଡ଼ କରେ, ଶ୍ରେଷ୍ଠ ସେଠ୍ ହୋଇଯାଇବାଲି ପରେ ସେ ବଡ଼ ସେଠ୍ ହେବାର ତୃଷ୍ଣାରେ ପୀଡ଼ିତ ରହେ । ତେଣୁ ଆପଣ ବିଚାର କରି କହନ୍ତୁ ଯେଉଁ ବ୍ୟକ୍ତି ସର୍ବଦା ଅତୃପ୍ତ ଏବଂ ଅସନ୍ତୁଷ୍ଟ ଅର୍ଥାତ୍ ସବୁବେଳେ ଅଭାବ ଅନୁଭବ କରୁଛି, ତାକୁ ପ୍ରକୃତ ସୁଖୀ କୁହାଯାଇପାରିବ କି ?

## ଲୋଭରୁ ଈର୍ଷା ଏବଂ ଦ୍ୱେଷ ଉତ୍ପନ୍ନ ହୁଏ ।

ଦେଖାଯାଏ ଯେ ଲୋଭୀ ମନୁଷ୍ୟଠାରେ ଈର୍ଷା ହିଁ ବହୁ ପରିମାଣରେ ଦେଖାଯାଏ । ସେ ଅନ୍ୟର ଲାଭ ଏବଂ ଧନକୁ ନିଜକୁ ଧନଠାରୁ ଅଧିକ ଦେଖି ସହିପାରେ ନାହିଁ । ସେ ନିଜ ପରି ଅନ୍ୟ ବ୍ୟବସାୟୀମାନଙ୍କୁ ଉନ୍ନତି କରୁଥିବାର ଦେଖି ସେମାନଙ୍କ ଉପରେ ଈର୍ଷା କରେ । ଯେଉଁ ମନୁଷ୍ୟଠାରେ ଈର୍ଷା ଏବଂ ଦ୍ୱେଷର ଅଗ୍ନି ସର୍ବଦା ପ୍ରଜ୍ୱଳିତ, ସେ କ'ଣ ବାସ୍ତବରେ ସ୍ଥାୟୀ ସୁଖ ଶାନ୍ତି ପାଇପାରେ କି ?

ଦେଖାଯାଏ ଯେ ପ୍ରଥମେ ମନୁଷ୍ୟର କେବଳ ଧନ ଉପରେ ହିଁ ଲୋଭ ଆସେ, ମାତ୍ର ପରେ ସେଠାରେ ସୀମିତ ନ ରହି ଧୀରେ

ଧୀରେ ଅନ୍ୟାନ୍ୟ ବସ୍ତୁମାନଙ୍କ ଉପରକୁ ମଧ୍ୟ ପ୍ରସାରିତ ହୁଏ । ଉଦାହରଣ-ସ୍ୱରୂପ, ଆଜି ଯଦି କୌଣସି ବ୍ୟକ୍ତି ଧନ ଉପରେ ଲୋଭ ରଖି ଧନୀ ହୋଇଯାଏ, ତେବେ ଆପଣ ଦେଖିବେ କାଲି ଯେ ତା'ର ବନ୍ଧୁବାନ୍ଧବ ଏବଂ ଜଣାଶୁଣା ବ୍ୟକ୍ତିମାନଙ୍କଠାରୁ ପୂର୍ବାପେକ୍ଷା ଅଧିକ ମାନ ସମ୍ମାନ ପାଇବା ପାଇଁ ଚାହିଁବ । ଏଣିକି ଧନୀ ହେବା ସଙ୍ଗେ ସଙ୍ଗେ ସେ ମାନୀ ହେବାପାଇଁ ଅଧିକ ଜୋରରେ ଲାଗିପଡ଼ିବ । ଆସନ୍ତାକାଲି ସେ କୌଣସି ଏକ ବଡ଼ ଧନୀ ଘରେ ତା'ର ପୁଅର ବିବାହ କରାଇବାକୁ ଇଚ୍ଛା କରିବ, ଯେଉଁଠିକି ତାକୁ ବହୁତ ଯୌତୁକ ମିଳିବ ଏବଂ ଲୋକମାନେ ଯେପରି କହିବେ ନାହିଁ ଯେ ସେ ଏତେବଡ଼ ସେଠ୍ ହୋଇ ସୁଦ୍ଧା ଏକ ନିର୍ଧନ ଘରେ ପୁଅର ବିବାହ କରାଇଲା । କ୍ରମେ ତାକୁ ଅହଙ୍କାର ଘେରି ବସେ । ସେ ଭାବେ ଯେ ସେ ଜଣେ ବଡ଼ ସେଠ୍, ବଡ଼ ଲୋକମାନଙ୍କ ସହିତ ତା'ର କେବଳ ସମ୍ବନ୍ଧ ଏବଂ ମିତ୍ର-ସମ୍ବନ୍ଧୀୟମାନଙ୍କ ମଧ୍ୟରେ ତା'ର ସବୁଠାରୁ ବେଶୀ ସମ୍ମାନ । ଏଣୁ ଯଦି କୌଣସି ବ୍ୟକ୍ତି ତାକୁ କିଛି ଅପ୍ରିୟ କଥା କହେ, ତେବେ ସେହି ଲୋଭୀ ବ୍ୟକ୍ତି ହଠାତ୍ କହିଉଠେ—"ତୁମେ କ'ଣ ଭାବୁଛ କି ? ମୋତେ କଣ ଜଣେ ସାଧାରଣ ବ୍ୟକ୍ତିପରି ପାଇଲ ? ଇତ୍ୟାଦି ଇତ୍ୟାଦି ।" ଏହିପରି ଭାବରେ ଯାହାର ଲୋଭବୃତ୍ତି ଦିନକୁ ଦିନ ବଢ଼ିବାକୁ ଲାଗେ, ତା'ର ପରିମାଣସ୍ୱରୂପ ତା' ଠାରେ ଈର୍ଷା ଦ୍ୱେଷ ଏବଂ ଅହଙ୍କାରର ଭାବନା ବସା ବାନ୍ଧେ । ସେପରି ବ୍ୟକ୍ତିର ଜୀବନକୁ ଆପଣ ସୁଖୀ ଜୀବନ ବୋଲି କହିପାରିବ କି ?

**ଜିଜ୍ଞାସୁ**—ଆପଣ ଯାହା କହିଲେ ତାହା ବାସ୍ତବିକ ଠିକ୍, କିନ୍ତୁ ମୋର ପ୍ରଶ୍ନର ଅର୍ଥ ହେଉଛି ଯେ ଯେତେବେଳେ ନଗଦ ଟଙ୍କା ମନୁଷ୍ୟ ହାତକୁ ଆସେ ଏବଂ ଭୋଗବିଳାସର ସାମଗ୍ରୀମାନ ତା' ଘରେ ଜମା ହୁଏ ସେତେବେଳେ ସେ ଭାବେ ଖୁବ୍ ସୁଖରେ ଅଛି ।

## ଲୋଭୀ ସର୍ବଦା ଟଙ୍କା ପଇସା ବିଷୟରେ ଚିନ୍ତିତ ରହି ଯୋଗର ବାସ୍ତବ ଆନନ୍ଦରୁ ବଂଚିତ ହୁଏ ।

ବ୍ରହ୍ମାକୁମାରୀ—ଏ କଥା ସତ୍ୟ ଯେ ସୁଖ ସୁବିଧାର ସାମଗ୍ରୀମାନ ଲୋଭୀ ମନୁଷ୍ୟ ପାଖରେ ସହଜରେ ଠୁଳ ହୋଇଯାଏ, ମାତ୍ର ସନ୍ତୋଷ-ରୂପୀ ଧନଠାରୁ ସେ ସର୍ବଦା ଦୂରରେ ରହେ । ଯେତେବେଳେ ମନୁଷ୍ୟର ମାନସିକ ଶାନ୍ତି ନାହିଁ ସେତେବେଳେ ସୁଖ-ସୁବିଧାର ବସ୍ତୁମାନ ତା ପାଖରେ ମୂଲ୍ୟହୀନ । ଯଦି ମନୁଷ୍ୟ ପାଖରେ ଭୋଗ୍ୟ ପଦାର୍ଥ ରହିଛି ତେବେ ସେଗୁଡ଼ିକ ଭୋଗକରି ଶେଷରେ ସେ ସ୍ୱୟଂ ହିଁ ଭୋଗ୍ୟ ହୋଇଯାଏ । ତେଣୁ କଥାରେ ଅଛି, "ମନୁଷ୍ୟ ଭୋଗ୍ୟକୁ ଭୋଗ କରେ ନାହିଁ ବରଂ ଭୋଗ୍ୟ ପଦାର୍ଥ ତା'ର ଶାରୀରିକ ଶକ୍ତି ଏବଂ ଆୟୁକୁ ଭୋଗ୍ୟ କରିବାରେ ଲାଗନ୍ତି ।" ତେଣୁ ମାନସିକ ସୁଖ ଶାନ୍ତି ହେଉଛି ସର୍ବୋତ୍ତମ । ଯେଉଁ ବ୍ୟକ୍ତି ଯେତେ ବଡ଼ ଲୋଭୀ ତାକୁ ସେତେ କମ୍ ନିଦ ହୁଏ, କାରଣ ନିଦ୍ରାବସ୍ଥାରେ ମଧ୍ୟ ସେ ରୋଜଗାର ସ୍ୱପ୍ନ ଦେଖୁଥାଏ । ଏ ବିଷୟର ଗୋଟିଏ ଦୃଷ୍ଟାନ୍ତ ମୋର ମନେପଡ଼ୁଛି ।

ଜଣେ ଲୁଗା ବେପାରି ରାତିରେ ଗୋଟିଏ ଚଦର ଘୋଡ଼ିହୋଇ ଶୋଇଥିଲା । ସେହି ବଖରାରେ ଗୋଟିଏ ଖଟ ଉପରେ ତା'ର ବୁଢ଼ୀମା ମଧ ଶୋଇଥିଲେ । ହଠାତ୍ ଲୁଗା ଚିରିବା ଶବ୍ଦ ମା'ର କାନରେ ପଡ଼ିବା ଫଳରେ ସେ ଉଠିକରି ବସିଲେ, କାରଣ ବୁଢ଼ୀମାଙ୍କର ନିଦ ଖୁବ୍ ପତଳା । ତା'ପରେ ସେ ଦେଖିଲେ ଯେ ତାଙ୍କର ପୁଅ ନିଜେ ଘୋଡ଼ି ହୋଇଥିବା ଚଦରକୁ ଦୁଇ ହାତରେ ଧରି ମଝିରୁ ଚିରିବାରେ ଲାଗିଛି । ମା କହିଲେ— "ଆରେ ପୁଅ ଲାଲୁ, ତୁ ଚଦର କାହିଁକି ଚିରୁଛୁ ?" ଏହା ଶୁଣିବା ପରେ ମଧ ସେପର୍ଯ୍ୟନ୍ତ ନିଦ୍ରିତ ଅବସ୍ଥାରେ ଥିବା ପୁତ୍ର କହିଲା—"ମା, ତୁ ମୋ ବ୍ୟବସାୟରେ କାହିଁକି ହସ୍ତକ୍ଷେପ କରୁଛୁ ? ମୋର ଗ୍ରାହକକୁ ଲୁଗା ଦେବାପାଇଁ ମୋତେ ସୁବିଧା ଦେ ।" ମା ବୁଝିପାରିଲେ ଯେ ଏ ଶୋଇଥିବା ବେଳେ ମଧ ସମ୍ମୁଖରେ ଗ୍ରାହକକୁ ଦେଖୁଛି ଏବଂ ନିଜର ଚଦରକୁ କନାର

ଥାନ ଲାଭ ବିଷୟରେ ଲଗିଛୁ । ଏଥିରୁ ବୁଝନ୍ତୁ ଲୋଭୀର ମନ କିଭଳି ଧନ-ଗାଦି ପଇସା ପଛରେ ଧାଇଁଥାଏ ।

ଜିଜ୍ଞାସୁ—ଏ କଥା ତ ମୁଁ ସ୍ୱୀକାର କରୁଛି । ଏଣୁ ଲୋଭରୁ ରକ୍ଷା ପାଇବାପାଇଁ ମୁଁ ଚାହୁଁଛି ।

ବ୍ରହ୍ମାକୁମାରୀ—ଯୋଗ ବ୍ୟତୀତ ଏଥିରୁ ରକ୍ଷା ପାଇବା ଅସମ୍ଭବ । ମୋର କହିବାର ଅର୍ଥ ନୁହେଁ ଯେ ଧନ ଉପାର୍ଜନ କରିବା ଅନୁଚିତ । ଧନ ବାସ୍ତବରେ ଏକ ଆବଶ୍ୟକ ବସ୍ତୁ, ପରନ୍ତୁ ଧନରେ ଲୋଭ ରଖିବା ବହୁତ ଖରାପ । ଅପମିଶ୍ରଣ ଓ କଳାବଜାର କରିବା, କମ୍ ଓଜନ ଦେବା, ଅଧିକ ଦାମ୍ ନେବା, ଶ୍ରମିକମାନଙ୍କୁ କମ୍ ମଜୁରି ଦେବା, ଅନ୍ୟର ବ୍ୟବସାୟରେ କ୍ଷତି କରାଇବା, ସତ-ମିଛ କହି ଧନ ଉପାର୍ଜନ କରି ଠୁଳ କରିବା ଅଥଚ ସବୁବେଳେ ଅତୃପ୍ତ ରହିବା—ଏଭଳି ଲୋଭ ଏବଂ ଲାଳସା ମନୁଷ୍ୟକୁ ବର୍ତ୍ତମାନ ମଧ୍ୟ ଅଶାନ୍ତ କରାଏ । ଧନେ ନା ଧନେ ଏ ସଂସାରର ଅଦାଲତରେ ହେଉ କିମ୍ବା ଧର୍ମରାଜଙ୍କର ଅଦାଲତରେ ହେଉ, ତା'କୁ ଦଣ୍ଡ ଭୋଗିବାକୁ ଅବଶ୍ୟ ପଡ଼ିବ । ତେଣୁ ମନୁଷ୍ୟ ସର୍ବଦା ଠିକ୍ ରାସ୍ତାରେ ରହି ଉଚିତ ରୋଜଗାର କରିବା ଆବଶ୍ୟକ । ଏହାଦ୍ୱାରା ତାକୁ ବହୁତ ଆତ୍ମିକ ବଳ ମିଳେ ଏବଂ ଭଗବାନଙ୍କ ସହିତ ତା'ର ପ୍ରୀତି ବଢ଼େ । ଯେ ଶୋଇଲାବେଳେ ମଧ୍ୟ ପଇସା ସହ ପ୍ରୀତି ରଖେ, ସେ ଭଗବାନଙ୍କ ସହିତ ପ୍ରୀତି ରଖିବ କିପରି ? ଯୋଗ ସମୟରେ ମଧ୍ୟ ତା'ର ଦୋକାନ ଗ୍ରାହକ ଏବଂ ପଇସାର ସ୍ମୃତି ତାକୁ ବ୍ୟତିବ୍ୟସ୍ତ କରିବ । ସେ ଯୋଗୀ ଜୀବନର ପ୍ରକୃତ ସୁଖ କିପରି ଅନୁଭବ କରିବ ?

ଆଜି ଯଦିଓ ମନୁଷ୍ୟ ଧନ ପାଇଁ ଲୋଭ କରୁଛି, ତଥାପି ଜନ୍ମ-ଜନ୍ମାନ୍ତର ପାଇଁ ତାକୁ ସୁଖ ଦେଇପାରିବ, ଏପରି ଧନ ସେ ଅର୍ଜନ କରିପାରୁ ନାହିଁ । ସତ୍ୟଯୁଗର ସୁଖ-ସ୍ୱଚ୍ଛନ୍ଦ୍ୟ ଏବଂ ଧନ-ସମ୍ପତ୍ତି ତୁଳନାରେ ବର୍ତ୍ତମାନର ଧନ-ଦୌଲତ କିଛି ନୁହେଁ କହିଲେ ଚଳେ । ଏଣୁ ବର୍ତ୍ତମାନ ଯେତେବେଳେ

ମନୁଷ୍ୟ ଜାଣୁଛି ଯେ ସତ୍ୟଯୁଗର ଅଖଣ୍ଡ ଏବଂ ଅପାର ସୁଖର ଆଧାର ଥିଲା ପବିତ୍ରତା ଏବଂ ଦିବ୍ୟଗୁଣ, ଯାହାକୁ ସଙ୍ଗମ ଯୁଗରେ ମନୁଷ୍ୟ ଯୋଗଯୁକ୍ତ ହୋଇ ପରମପିତା ପରମାତ୍ମାଙ୍କଠାରୁ ପାଇଥିଲା, ସେହି ପବିତ୍ରତା ଏବଂ ଦିବ୍ୟ-ଗୁଣକୁ ଧାରଣ କରିବାପାଇଁ ବର୍ତ୍ତମାନ ଆମ୍ଭମାନଙ୍କର ଉଦ୍ୟମ କରିବା ଦରକାର । ବର୍ତ୍ତମାନ ମନୁଷ୍ୟ ତା'ର ଲୋଭ ବୃତ୍ତିକୁ ଈଶ୍ୱରୀୟ ଜ୍ଞାନ ଏବଂ ସୁଦୃଢ଼ ଶକ୍ତି ସଞ୍ଚୟ କରିବାରେ ପ୍ରୟୋଗ କରିବା ଉଚିତ ।

ପବିତ୍ରତା ନଷ୍ଟ ହେବା ଫଳରେ ଆଜି ମନୁଷ୍ୟର ଅବସ୍ଥା ବହୁତ ତଳକୁ ଖସି ଆସିଛି । ଯେ ପ୍ରଥମେ ଶ୍ରୀନାରାୟଣ ଥିଲେ, ସେ ଆଜି ଭିକାରୀ ଏବଂ ଭିକାରୀ ହୋଇଯାଇଛନ୍ତି । ପବିତ୍ରତା ହରାଇ ମନୁଷ୍ୟ ଆଜି ବିଭିନ୍ନ ଦେବଦେବୀଙ୍କ ମନ୍ଦିରକୁ ଯାଇ ତାଙ୍କୁ ସ୍ୱାସ୍ଥ୍ୟ, ସମ୍ପତ୍ତି, ସମ୍ମାନ ଏବଂ ଧନର ଭିକ୍ଷା ମାଗୁଛି ।

ଏଣୁ ମନୁଷ୍ୟ ବର୍ତ୍ତମାନ ବିଚାର କରିବା ଦରକାର ଯେ—"ଏହି କଳିଯୁଗୀ ସଂସାର ସମ୍ପୂର୍ଣ୍ଣ ତମୋଗୁଣୀ ଏବଂ ବିନାଶ ସମ୍ମୁଖରେ ମୁଁ ଦଣ୍ଡାୟମାନ । ଜୀବନ ନିର୍ବାହ ପାଇଁ ଯଦିଓ ଧନ ଉପାର୍ଜନ କରିବା ଆବଶ୍ୟକ, ତଥାପି ପ୍ରକୃତ ପଛରେ ସର୍ବଦା ଧାବମାନ ହୋଇ ଭଗବାନଙ୍କଠାରୁ ଦୂରେଇ ଯିବା ମଧ୍ୟ ମୋ ପକ୍ଷରେ ଠିକ୍ ନୁହେଁ । ଧନ ସାଧନ, ମାତ୍ର ସିଦ୍ଧି ନୁହେଁ । ତେଣୁ ଏହି ବିଷୟରେ ସର୍ବଦା ଚିନ୍ତା କରିବା ଏବଂ ଜୀବନର ସମସ୍ତ ମୂଲ୍ୟବାନ ସମୟକୁ ଏଥିରେ ଲଗାଇବା ବୁଦ୍ଧିମାନ ବ୍ୟକ୍ତିର କାମ ନୁହେଁ । ଯଦିଓ ବହୁତ ଧନ-ସମ୍ପତ୍ତି ମୁଁ ଠୁଳ କରିପାରିଛି, ସେଗୁଡ଼ିକୁ ଭୋଗ କରିବାପାଇଁ ମୋ ଜୀବନ ଉପରେ କି ଭରସା ଅଛି ? ପୁନଶ୍ଚ ଯଦି ସୃଷ୍ଟିର ମହାବିନାଶର ଚିହ୍ନ ମୁଁ ସ୍ପଷ୍ଟ ରୂପରେ ବର୍ତ୍ତମାନ ଦେଖିପାରୁଛି, ତେବେ ଏ ଲୋଭରୁ ମୋତେ କ'ଣ ମିଳିବ ।

**ଜିଜ୍ଞାସୁ**—ମନୁଷ୍ୟ ଭାବେ ଯେ ବର୍ତ୍ତମାନ ବହୁତ ଧନ ରୋଜଗାର କରି ରଖିବ ଏବଂ ବୃଦ୍ଧାବସ୍ଥାରେ ଈଶ୍ୱରଙ୍କୁ ସ୍ମରଣ କରିବ ।

## ଆପଣ ବୃଦ୍ଧ, ମାତ୍ର ଆପଣଙ୍କର ତୃଷ୍ଣା ଯୁବକ ।

ବ୍ରହ୍ମାକୁମାରୀ—ବୃଦ୍ଧାବସ୍ଥାରେ ମନୁଷ୍ୟ କ'ଣ ଲାଳସା ତ୍ୟାଗ କରିପାରେ ? ଜୀବନସାରା ଲାଳସା ରଖି ରଖି ବୃଦ୍ଧାବସ୍ଥାରେ ତା'ର ଲୋଭର ସଂସ୍କାର ଦୃଢ଼ ହୋଇଯାଏ । ଏଣୁ କଥା ଅଛି—'ଆପ୍ ଭୟା ବୃଢ଼ା, ତୃଷ୍ଣା ଭୟୀ ଜଓ୍ବାନ' ଏହାକୁ ବର୍ତ୍ତମାନ ତ୍ୟାଗ କଲେ ସବୁଦିନ— ପାଇଁ ଦୂରେଇ ଯିବ, ବର୍ତ୍ତମାନ ପାଳନ କଲେ ତାହା ଧୀରେ ଧୀରେ ବଡ଼ ହେବ ।

ଏଣୁ ମୁଁ କହୁଥିଲି ଯେ ଅଦୂରରେ ଦଣ୍ଡାୟମାନ ମହାବିନାଶକୁ ଦେଖନ୍ତୁ ଯେତେବେଳେ ବର୍ତ୍ତମାନର ସୃଷ୍ଟି ତା'ର ଚତୁର୍ଥ ଅବସ୍ଥାରେ ପହଞ୍ଚି ସାରିଛି ଅର୍ଥାତ୍ କଳିଯୁଗର ଅନ୍ତିମ ସମୟ ଚାଲିଛି, ସେତେବେଳେ ଜ୍ଞାନଦୃଷ୍ଟିରୁ ବର୍ତ୍ତମାନ ସମସ୍ତେ ବୃଦ୍ଧାବସ୍ଥାରେ ପହଞ୍ଚି ସାରିଛନ୍ତି । ଏଣୁ ବର୍ତ୍ତମାନ ସମସ୍ତେ ପରମପିତା ପରମାତ୍ମାଙ୍କ ସ୍ମୃତିରେ ରହିବାର ଅଭ୍ୟାସ କରିବା ଉଚିତ ।

## ଲୋଭୀ ମନୁଷ୍ୟ ସ୍ୱର୍ଗିକ ସୁଖରୁ ବଂଚିତ ହୁଏ ।

ଲୋଭୀ ମନୁଷ୍ୟ ପାଖରେ ସନ୍ତୋଷ, ତ୍ୟାଗବୃତ୍ତି, ଅନାସକ୍ତି, ସେବା-ଭାବ, ଆତ୍ମିକ ଦୃଷ୍ଟି ଇତ୍ୟାଦି ଦିବ୍ୟଗୁଣ ନ ଥାଏ । ଯାହା ପାଖରେ ସଂପୂର୍ଣ୍ଣ ଦିବ୍ୟଗୁଣ ନାହିଁ, ସେ ସତୋପ୍ରଧାନ ହୋଇ ନ ପାରେ । ମାନବ ସତୋପ୍ରଧାନ ନ ହେଲେ ସ୍ୱର୍ଗିକ ସୁଖର ଅଧିକାରୀ ହୋଇପାରିବ ନାହିଁ । ଯେଉଁ ବ୍ୟକ୍ତି ଅନ୍ୟ ମନୁଷ୍ୟାତ୍ମାମାନଙ୍କ ପ୍ରତି ସଦ୍‌ଭାବନା ରଖେ ଏବଂ ପରମପିତା ପରମାତ୍ମାଙ୍କ ସହିତ ପ୍ରୀତି ରଖେ, ସେହି ବ୍ୟକ୍ତି ପରମାତ୍ମାଙ୍କଦ୍ୱାରା ସ୍ଥାପିତ ସତ୍ୟଯୁଗୀ ସ୍ୱର୍ଗିକ ସୃଷ୍ଟିର ସୁଖ ଲାଭ କରିପାରେ । ଲୋଭୀ ମନୁଷ୍ୟର ବୁଦ୍ଧି ସର୍ବଦା ଧନ-ସମ୍ପତ୍ତି ପଛରେ ଇତସ୍ତତଃ ଘୂରିବୁଲେ । ତେଣୁ ସତୋପ୍ରଧାନ ସୃଷ୍ଟିର ସୁଖ ପାଇବା ପାଇଁ

ମାନବ ପ୍ରଥମେ ଯୋଗୀ ହୋଇ ଦିବ୍ୟଗୁଣ ଧାରଣ କରିବା ଆବଶ୍ୟକ କାରଣ ଆଜି ମନୁଷ୍ୟ ଏହି ପୁରୁଷାର୍ଥର ପ୍ରତିକୁ ହଟିଯାଉଛି । ବର୍ତ୍ତମାନ ଯୁଗ ତୁଳନାରେ ଦ୍ୱାପର ଯୁଗର ଲୋକମାନେ ଅଧିକ ନିର୍ଲୋଭ ଏବଂ ତ୍ୟାଗୀ ଥିଲେ । ଏହି ପ୍ରସଙ୍ଗରେ ଗୋଟିଏ ଦୃଷ୍ଟାନ୍ତ ଅଛି ।

ଥରେ ଜଣେ ଜମିଦାର ଅନ୍ୟ ଏକ ଜମିଦାରକୁ ଖଣ୍ଡିଏ ଜମି ବିକ୍ରି କଲା । ଦ୍ୱିତୀୟ ଜମିଦାର ଦିନେ ସେହି ଜମିକୁ ଖୋଳୁ ଖୋଳୁ ମାଟି ତଳୁ ଗୋଟିଏ ସୁନାହୀରାପୂର୍ଣ୍ଣ ମାଠିଆ ପାଇଲା । ସେ ମାଠିଆକୁ ପ୍ରଥମ ଜମିଦାର ପାଖକୁ ନେଇ କହିଲା—"ମିତ୍ର ଆପଣ ମୋତେ ବିକ୍ରି କରିଥିବା ଜମି ମଧ୍ୟରୁ ସୁନାହୀରାପୂର୍ଣ୍ଣ ଏହି ମାଠିଆଟି ମୋତେ ମିଳିଲା । ଆପଣ ଏହାକୁ ନିଅନ୍ତୁ, କାରଣ ମୁଁ ଆପଣଙ୍କୁ ଜମିର ମୂଲ୍ୟ ଦିନା ଦେଇଛି. ସୁନାହୀରାର ମୂଲ୍ୟ ତ ଦେଇନାହିଁ । ତେଣୁ ଏଥିରେ ମୋର କୌଣସି ଅଧିକାର ନାହିଁ ।"

ପ୍ରଥମ ଜମିଦାର ଉତ୍ତର ଦେଲା—"ହେ ମିତ୍ର, ମୁଁ ମଧ୍ୟ ସେ ମାଠିଆକୁ ନେଇପାରିବ ନାହିଁ, ଯେତେବେଳେ ମୁଁ ସେ ଜମି ଥରେ ବିକ୍ରି କରି ଦେଇଛି ସେତେବେଳେ ସେ ଜମିରୁ ଯାହା କିଛି ବାହାରିବ, ସେଥିରେ ମୋର କୌଣସି ସମ୍ପର୍କ ନାହିଁ ।" ଏହିପରି ଭାବରେ ଦୁଇଜଣଯାକ ନିଜ ନିଜ ବିଚାରରେ ଦୃଢ଼ ରହିଲେ ଏବଂ କୌଣସି ଜମିଦାର ସେହି ମାଠିଆକୁ ନେବାପାଇଁ ରାଜି ହେଲେନାହିଁ ।

ଶେଷରେ ଏହାର ସମାଧାନ ପାଇଁ ଏବଂ ପ୍ରକୃତ ନ୍ୟାୟ ପାଇବା ପାଇଁ ଦୁହେଁ ସେଠାକାର ରାଜାଙ୍କ ପାଖକୁ ଗଲେ । ଦୁହେଁ ରାଜାଙ୍କୁ ନିଜ ନିଜର ଯୁକ୍ତି ଶୁଣାଇଲେ । ପ୍ରଥମ ଜମିଦାର କହିଲା—"ମହାରାଜ, ଯେତେବେଳେ ମୁଁ ସେ ଜମିକୁ ବିକ୍ରି କରିଦେଇ ସାରିଛି, ସେତେବେଳେ ସେ ଜମି ଉପରେ ମୋର କୌଣସି ଅଧିକାର ନାହିଁ ।" ଦ୍ୱିତୀୟ ଜମିଦାର କହିଲା—"ମହାରାଜ, ମୁଁ ତ

କେବଳ ଜମିର ଦାମ୍ ଦେଇଛୁ, ତେଣୁ ମାଟିଆ ଉପରେ ମୋର କୌଣସି ଅଧିକାର ନାହିଁ ।" ଏ କଥା ଶୁଣି ରାଜା ମଧ୍ୟ ଚିନ୍ତାରେ ପଡ଼ିଗଲେ । କି ନିଷ୍ପତ୍ତି ଦେବେ ଜାଣିପାରିଲେ ନାହିଁ । ଦୁହେଁ ବାସ୍ତବିକ୍ ନିଜ ନିଜର ବିଚାରରେ ଠିକ୍ । ରାଜା ଚିନ୍ତାମଗ୍ନ ରହିବା ଲକ୍ଷ୍ୟକରି ଜମିଦାରଦ୍ୱୟ କହିଲେ—"ରାଜନ୍, ଆପଣ ଏହାକୁ ସରକାରୀ ଟଙ୍କା ହିସାବରେ ଜମା କରି ଦିଅନ୍ତୁ ।" ରାଜା କହିଲେ—"ବାଃ, ଆପଣ କଣ ଭାବିଲେ କି ? ଏହି ଧନ ଉପରେ ରାଜାଙ୍କର କି ଅଧିକାର ଅଛି ? ଆପଣ ଦୁହେଁ ପାପରୁ ରକ୍ଷା ପାଇବାକୁ ଚାହୁଁଛନ୍ତି, ଅଥଚ ମୋତେ କାହିଁକି ପାପରେ ଭାଗୀ କରାଉଛନ୍ତି ?" କଥାବାର୍ତ୍ତା କରିବା ପରେ ରାଜା ଜାଣିବାକୁ ପାଇଲେ ଯେ ଜଣେ ଜମିଦାରର କନ୍ୟା ସହିତ ଅନ୍ୟ ଜମିଦାରର ପୁଅର ସମ୍ବନ୍ଧ ହେବାକୁ ଯାଉଛି । ରାଜା ଶେଷରେ ମାଟିଆକୁ ସେହି ବର-କନ୍ୟାଙ୍କୁ ଯୌତୁକରୂପେ ଦେଇଦେବାପାଇଁ ସିଦ୍ଧାନ୍ତ କଲେ ।

ତେଣୁ ଆପଣ ବିଚାର କରନ୍ତୁ ସେ ଯୁଗ କେଉଁଠି, ବର୍ତ୍ତମାନ ଯୁଗ ହେଲାଣି କେଉଁଠି ? ଏପରି ଏକ ସମୟ ଥିଲା ଯେତେବେଳେ କି ଚୋର, ଡକାୟତର ନାମ ନ ଥିଲା, ଘରର କବାଟ ସର୍ବଦା ଖୋଲା ରହୁଥିଲା ଏବଂ ବର୍ତ୍ତମାନ ଭଳି କୌଣସି ମାଲିମକଦ୍ଦମା ମଧ୍ୟ ନ ଥିଲା ଆଜି ଏଭଳି ସମୟ ଆସିଛି ଯେତେବେଳେ ନ୍ୟାୟାଳୟଗୁଡ଼ିକ ଧନ-ସମ୍ପତ୍ତି ସମ୍ବନ୍ଧୀୟ ମକଦ୍ଦମାରେ ପୂର୍ଣ୍ଣ । ନିତ୍ୟ ନ୍ୟାୟାଧୀଶମାନଙ୍କର ସଂଖ୍ୟା ବଢ଼ୁଥିଲେ ମଧ୍ୟ ଗୋଟିଏ ଗୋଟିଏ ମକଦ୍ଦମାର ତାରିଖ ଏବଂ ସମାଧାନ ପାଇଁ ପ୍ରାୟ ଦୁଇ ତିନି ବର୍ଷ ବିତିଯାଉଛି । ଆଜି ରାସ୍ତାରେ ଦୁଇଜଣ ବ୍ୟକ୍ତି ଯାଉଥିବା ସମୟରେ ଯଦି ଗୋଟିଏ ଟଙ୍କା ରାସ୍ତାରେ ପଡ଼ିଛି ବୋଲି ଦେଖୁଛନ୍ତି, ତେବେ ତାକୁ ନେବା ପାଇଁ ସେ ଦୁହିଙ୍କ ମଧ୍ୟରେ ଗଣ୍ଡଗୋଳ ସୃଷ୍ଟି ହୋଇଯାଉଛି । ଆଜିର ସଂସାରରେ ମନୁଷ୍ୟ ସମ୍ମୁଖରେ ବିଭିନ୍ନ ପ୍ରକାରର ପ୍ରଲୋଭନ ଆସୁଛି ସତ, କିନ୍ତୁ ଅଙ୍ଗଦ ଭଳି ଦୃଢ଼ ରହି ସେହି ପ୍ରଲୋଭନକୁ ପ୍ରତ୍ୟାଖ୍ୟାନ କରିବା ଉଚିତ ।

ଆପଣ ନିଶ୍ଚୟ ସ୍ୱୀକାର କରିବେ ଯେ ଯେଉଁଦିନଠାରୁ ମନୁଷ୍ୟର ଦୃଷ୍ଟି ଏବଂ ବୁଦ୍ଧିରେ ଲାଳସା ସ୍ଥାନ ପାଇଲା ସେହିଦିନଠାରୁ ସଂସାରରେ ବିଭିନ୍ନ ପଦାର୍ଥର ଅଭାବ ଦେଖାଦେଲା ଏବଂ ଆଜି ଏପରି ଅବସ୍ଥା ଆସି ପହଞ୍ଚିଛି ଯେ ପୁଡ଼ିଆରେ ଖାଦ୍ୟ ଏବଂ ବୋତଲରେ ଦୁଧ ବିକ୍ରି ହେଉଛି ।

ଏସବୁ ପରିସ୍ଥିତିକୁ ଉପଲବ୍ଧ କରି ବର୍ତ୍ତମାନ ମନୁଷ୍ୟ ଲୋଭ ତ୍ୟାଗ କରିବା ଉଚିତ, କାରଣ ଲୋଭ କରିବା ଅତି ନୀଚ କୁଳର କାମ । ଯେ ନିଜକୁ ସର୍ବ-ସମର୍ଥ ପରମାତ୍ମାଙ୍କର ସନ୍ତାନ ବୋଲି ଜ୍ଞାନ କରିବ ସେ ନିଶ୍ଚୟ ଲୋଭ ତ୍ୟାଗ କରିପାରିବ ।

ଏଣୁ ଆପଣ ଲୋଭ ଓ ଲାଳସାକୁ ତ୍ୟାଗ କରନ୍ତୁ । ଯଦି ତେବେ ଲୋଭର ସଂକଳ୍ପ ମନକୁ ଆସୁଛି, ତେବେ ତାକୁ ଈଶ୍ୱରୀୟ ଜ୍ଞାନ ଏବଂ ଯୋଗ ସଞ୍ଚୟ କରିବାରେ ପ୍ରୟୋଗ କରନ୍ତୁ । କେବଳ ସେହି ସଞ୍ଚିତ ଧନତକ ଆପଣଙ୍କ ସାଥିରେ ରହିବ ଏବଂ ଆପଣଙ୍କୁ ଜନ୍ମ ଜନ୍ମାନ୍ତର ପାଇଁ ଧନଶାଳୀ କରାଇବ । ଆଚ୍ଛା, ଓଁ ଶାନ୍ତି ।



# ଅହଂକାର ତ୍ୟାଗ

ମନୁଷ୍ୟର ଶୈଶବ ଅବସ୍ଥା କଥା ବର୍ତ୍ତମାନ ବିଚାର କରନ୍ତୁ । ଯେତେବେଳେ ସେ ଶିଶୁ ଥାଏ ସେତେବେଳେ ସେ କହିବା, ଚାଲିବା, ନିଜର ଖାଦ୍ୟ ସଂଗ୍ରହ କରିବା, ନିଜକୁ ରକ୍ଷା କରିବା ଇତ୍ୟାଦି ବିଷୟ ଜାଣି ନ ଥାଏ । ଯେତେବେଳେ ସେ କ୍ରମେ ବଡ଼ ହେବାକୁ ଲାଗେ ସେତେବେଳେ ସେ ତା'ର ଦୈହିକ ଶକ୍ତି, ବଂଶ ମର୍ଯ୍ୟାଦା, ବୁଦ୍ଧିମତ୍ତା ଓ ଧନ-ସମ୍ପତ୍ତିକୁ ନେଇ ଅହଙ୍କାର କରିବାକୁ ଲାଗେ । ସେ ଜାଣେ ଯେ ତା'ର ଜୀବନ ଉପରେ କୌଣସି ଭରସା ନାହିଁ ଏବଂ ସ୍ଥୂଳ ଧନ-ସମ୍ପତ୍ତି ମଧ୍ୟ କ୍ଷଣସ୍ଥାୟୀ, ତଥାପି ସେହି କ୍ଷଣସ୍ଥାୟୀ ବସ୍ତୁକୁ ନେଇ ସେ ବହୁତ ଅଭିମାନ କରେ । ଏହି ଅଭିମାନ ହିଁ ମନୁଷ୍ୟ ମନରେ ଅନ୍ୟ ବିକାରଗୁଡ଼ିକୁ ଜନ୍ମଦିଏ ଏବଂ ତାକୁ ପରମପିତାଙ୍କଠାରୁ ଦୂରେଇ ନିଏ । ଅହଙ୍କାର କ୍ଷଣକ ମଧ୍ୟରେ ମନୁଷ୍ୟ ମନରେ ଦୁଃଖ ଜାତ କରାଏ । ଏହା ମାନବକୁ ଆନନ୍ଦର ଶିଖର ଉପରୁ ଦୁଃଖ କଷ୍ଟର ସମୁଦ୍ରକୁ ଠେଲିଦେଇ ପାରେ । ଅହଙ୍କାରରୂପୀ ରୋଗର ନିବାରଣ ପାଇଁ ଏହି ଅଧ୍ୟାୟରେ ପରମପିତା ପରମାତ୍ମାଙ୍କର ପବିତ୍ରକାରୀ ସମ୍ବାଦ ଉପରେ ଆଲୋଚନା କରାଯାଇଛି ।

**ଜିଜ୍ଞାସୁ**—ଭଉଣୀ, ମୋର ଆଜି ଗୋଟିଏ ସମସ୍ୟା ରହିଛି ।

**ବ୍ରହ୍ମାକୁମାରୀ**—କେଉଁ ସମସ୍ୟା ?

**ଜିଜ୍ଞାସୁ**—ବେଳେ ବେଳେ ମୋ ମନରେ ଅନେକ ସମୟ ଧରି ଦୁଃଖର ଲହରୀ ଉଠୁଛି । ଦିନେ ଦିନେ ଏଭଳି କିଛି ଘଟଣା ଘଟିଯାଉଛି ଯାହାଫଳରେ ମୋ ମନରେ ଗୋଟାଏ ଆଘାତ ଆସୁଛି । ଯେତେବେଳେ ମୋର ଏପରି ଅବସ୍ଥା ହେଉଛି ସେତେବେଳେ ମୋର ଯୋଗାଭ୍ୟାସରେ ବିଘ୍ନ ପଡୁଛି । ଏହାର ସମାଧାନ କିପରି ହେବ, ମୋ ମୁଣ୍ଡରେ ପଶୁ ନାହିଁ ।

ବ୍ରହ୍ମାକୁମାରୀ—ଅହଙ୍କାର ହେତୁ ମନରେ ବିଭିନ୍ନ ଚିନ୍ତା ଆସେ । ଆପଣଙ୍କ କଥାରୁ ଜଣାପଡ଼ୁଛି ଯେ ଅହଙ୍କାରର ମାତ୍ରା ଆପଣଙ୍କଠାରେ ଯଥେଷ୍ଟ ବେଶୀ ।

ଜିଜ୍ଞାସୁ—ଭଉଣୀ ମୋଠାରେ ଯେ ଅହଙ୍କାର ବହୁତ ଅଛି, ତା ସତ । ଏହି ବିକାର ମୋତେ ବହୁତ କଷ୍ଟ ହେଉଛି । ଏଥିପାଇଁ ଉପାୟ କ'ଣ ?

ବ୍ରହ୍ମାକୁମାରୀ—ଏହା ତ ବାସ୍ତବରେ ଏକ ଦୁଃଖ-କଷ୍ଟଦାୟକ ବିକାର । ଯଦିଓ ଆପଣ ଜାଣୁଛନ୍ତି ଏହା ଏକ ମହାବିକାର, ତଥାପି ଏହାକୁ ଛାଡୁନାହାନ୍ତି କାହିଁକି ? ଘର ଭିତରେ ମନୁଷ୍ୟ ଯଦି କୌଣସି ମଇଳା ବା ଅଳିଆ ଦେଖେ ସେ ତତ୍‌କ୍ଷଣାତ୍ ତାକୁ ବାହାରକୁ ଫୋପାଡ଼ି ଦିଏ, କିନ୍ତୁ, ଆପଣ କାହିଁକି ଏଭଳି ମଇଳାକୁ ମନ ଭିତରେ ସାଇତି ରଖିଛନ୍ତି ? ଜ୍ଞାନବାନ୍ ବ୍ୟକ୍ତି ପକ୍ଷରେ ଅହଂକାର ବହୁତ କ୍ଷତିକାରକ । ଯେଉଁ ମନୁଷ୍ୟଠାରେ ଅହଙ୍କାର ଯେତେ ବେଶି ସେ ସେତେ ବେଶୀ ଦୁଃଖ ତା' ଜୀବନରେ ଅନୁଭବ କରିବ ।

ଜିଜ୍ଞାସୁ—ଅହଙ୍କାର ଯୋଗୁ ଦୁଃଖ ଅବଶ୍ୟ ହୁଏ, ତେଣୁ ଏହାକୁ ଛାଡ଼ିବାକୁ ମୁଁ ଚାହୁଁଛି । କିନ୍ତୁ ଏହାକୁ ଛାଡ଼ିବାର ଉପାୟ କ'ଣ ? ଏବେ ମଧ୍ୟ ଅନେକଥର ମୁଁ ଏହାର କବଳରେ ପଡ଼ିଯାଉଛି ।

ବ୍ରହ୍ମାକୁମାରୀ—ପ୍ରଥମେ କହନ୍ତୁ, କି ବିଷୟରେ ଆପଣଙ୍କର ଅହଙ୍କାର ଆସୁଛି ?

ଜିଜ୍ଞାସୁ—ଭଉଣୀ, ଏପରି ହୁଏ ଯେ ଅଫିସରେ କାମ କରୁଥିବା କୌଣସି ବ୍ୟକ୍ତି ଯଦି କେତେବେଳେ ତା'ର ଯୋଗ୍ୟତା ନେଇ ବଡ଼ିମା କରେ, ସେତେବେଳେ ମୁଁ ତା'ଠାରୁ ଅଧିକ ଯୋଗ୍ୟ ବୋଲି ସିଦ୍ଧ କରିବାକୁ ବସେ । କେତେବେଳେ ଯଦି କୌଣସି ବନ୍ଧୁବାନ୍ଧବ ନିଜର

ଧନ-ସମ୍ପତ୍ତି ନେଇ ବଡ଼ ବଡ଼ କଥା କହନ୍ତି, ସେତେବେଳେ ମୋର ଅଭିମାନ ଚ୍ଛଳିଆସେ ଏବଂ ମୁଁ କହେ "ଅପଣ ନିଜକୁ କ'ଣ ଭାବୁଛନ୍ତି କି ? ଅମେ କ'ଣ ଆପଣଙ୍କୁ ଭିକ ମାଗୁଛୁ ? ଆମେ ଆପଣଙ୍କଠାରୁ କେଉଁ ବିଷୟରେ କମ୍ ?" କେତେବେଳେ ଯଦି କେହି ନିଜର ଶାରୀରିକ ଶକ୍ତି ଅଥବା ନିଜର ଉଚ୍ଚ ପଦକୁ ନେଇ ଅହଂକାର ଦେଖାଏ, ସେତେବେଳେ ମୁଁ ହଠାତ୍ କହେ, "ଆପଣ ନିଜକୁ କ'ଣ ଭାବୁଛନ୍ତି କି ? ଯାହା କରିବାକୁ ଚାହୁଁଛନ୍ତି ତାହା କରନ୍ତୁ ।" ପୁନଶ୍ଚ ସେ ଯେତେବେଳେ ମୋର କିଛି ଖଣ୍ଡନ କରନ୍ତି ସେତେବେଳେ ମୋର ଦୁଃଖ ହୁଏ । ସନ୍ତାନମାନଙ୍କ ସମ୍ମୁଖରେ ମଧ୍ୟ ମୁଁ ସବୁବେଳେ ବଡ଼ିମା ଦେଖାଇ କହେ, "ତୁମ୍ଭେମାନେ ବର୍ତ୍ତମାନ ଶ୍ରେଷ୍ଠ ପିଲା ।" ମୁଁ ଚାହେଁ ଯେ ସେମାନେ ମୋର ପ୍ରତ୍ୟେକ କଥା ମାନନ୍ତୁ । ଯେତେବେଳେ ସେମାନେ ମୋର ବଡ଼ପଣ ଏବଂ କଥାକୁ ଅସ୍ୱୀକାର କରନ୍ତି, ସେତେବେଳେ ମୋ ମନରେ ଆଘାତ ଲାଗେ ଏବଂ ମୁଁ ଭାବେ ମୋର ସନ୍ତାନ ହୋଇ ଯେତେବେଳେ ଏମାନେ ମୋ କଥା ମାନୁନାହାନ୍ତି ଏମାନେ ହୁଏତ କୁପୁତ୍ର । ସନ୍ତାନ ହିସାବରେ ଏମାନେ ମୋ କଥା ମାନିବା ଉଚିତ । ଏହିପରି ଅନେକ ପ୍ରକାର ଅଭିମାନ ମନରେ ଆସୁଛି ।

**ବ୍ରହ୍ମାକୁମାରୀ**—ଯେତେବେଳେ ଲୋକେ ସେମାନଙ୍କର ଅଭିମାନ ଦେଖାନ୍ତି ସେତେବେଳେ ସେମାନଙ୍କ ଆଗରେ ଆପଣ ନିଜର ବଡ଼େଇ ଦେଖାନ୍ତି ନା ଆପଣଙ୍କୁ ଉଚ୍ଚ ପଦର ନିଶା ସେହିପରି ଘାରିଥାଏ ?

**ଜିଜ୍ଞାସୁ**—ଭଉଣୀ, ମୋର ଏ ଅଭିମାନ ରହୁଛି ଯେ ମୁଁ ବହୁତ ବଡ଼ । ତୁମିକଠାରୁ କାମ ଆଦାୟ କଲାବେଳେ ମୁଁ ଭାବେ ମୁଁ ବହୁତ ଧନବାନ୍ । ମୋର ବ୍ୟବହାରରେ କିଛି କିଛି ଅଭିମାନ୍ ଏବଂ ନିଜର ବଡ଼ପଣ ପାଇଁ ଅହଙ୍କାର ମଧ୍ୟ ରହୁଛି । ଯଦି ମୋ ସନ୍ତାନମାନଙ୍କ ବିରୁଦ୍ଧରେ କେବେ କେହି କହିବାକୁ ଆସେ ସେତେବେଳେ ମୋର ନିଜର ଶାରୀରିକ ବଳ ଏବଂ ଯୌବନ ନେଇ ମୁଁ ଅହଙ୍କାର କରେ । ଏହାପରେ ମୁଁ ନିଜକୁ ସବୁବେଳେ ବୁଦ୍ଧିମାନ ବୋଲି ମଧ୍ୟ ଭାବେ ।

## ନଶ୍ୱର ଏବଂ ପରିବର୍ତ୍ତନଶୀଳ ବସ୍ତୁର ଗର୍ବ ସଦା ମିଥ୍ୟା ।

ବ୍ରହ୍ମାକୁମାରୀ—ମନୁଷ୍ୟର ସବୁ ଅହଂକାର ପ୍ରକୃତରେ ମିଥ୍ୟା ଅଟେ । ଆପଣ ଦେଖିଥିବେ ଯେ କାଲି ଯେ ଧନଶାଳୀ ଥିଲା, ଆଜି ସେ ଦାଣ୍ଡର ଫକୀର—ହୁଏତ ତା'ର ବ୍ୟବସାୟରେ କ୍ଷତି ଯୋଗୁ କିମ୍ବା ଧନ-ସମ୍ପତ୍ତିର ଚୋରି-ଡକାୟତି ଯୋଗୁ ଅଥବା ଅନ୍ୟ କିଛି କାରଣରୁ ଏପରି ହୋଇଥାଇ ପାରେ । ଶରୀର କଥା ବିଚାର କଲେ ଦେଖାଯାଏ ଆଜି ଯେଉଁ ମନୁଷ୍ୟ ହୃଷ୍ଟ-ପୁଷ୍ଟ ଏବଂ ବଳବାନ୍, କାଲି ସେ କୌଣସି ଦୁର୍ଘଟଣାର ସମ୍ମୁଖୀନ ହୋଇ ଅକର୍ମଣ୍ୟ ହୋଇଯାଉଛି କିମ୍ବା କୌଣସି ରୋଗ ଅଥବା ବାର୍ଦ୍ଧକ୍ୟର ଶିକାର ହୋଇ ଶଯ୍ୟାଶାୟୀ ହୋଇଛି, ଯେତେବେଳେ କି କେହି ତା'କୁ ଟିକିଏ ବି ପଚାରୁ ନାହାନ୍ତି । ଆଜି ହୁଏତ ଜଣେ ଖୁବ୍ ରୂପବାନ ଅଛି ଏବଂ ତା'ର ମସ୍ତିଷ୍କ ଭଲ କାମ କରୁଛି, ମାତ୍ର କାଲି କୌଣସି ଚିନ୍ତା ହେତୁ ତା'ର ସ୍ୱାସ୍ଥ୍ୟ ଏବଂ ସୌନ୍ଦର୍ଯ୍ୟ ନଷ୍ଟ ହେଉଛି, ସେ ପାଗଳ ହୋଇଯାଉଛି ଅବା ଅସୁନ୍ଦର, ଦୁର୍ବଳ ଓ ଅକର୍ମଣ୍ୟ ହୋଇ ଯାଉଛି । ଆଜି ଯେଉଁ ଲୋକ ତା'ର ବୁଦ୍ଧିକୁ ବହୁତ ସରସ ବୋଲି ଭାବୁଛି. କାଲି ସେ ଏପରି କାମ କରି ବସୁଛି ଯାହାଦ୍ୱାରା ସେ ଅପରାଧୀରେ ଗଣା ହୋଇ ବନ୍ଦୀଶାଳାର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରହୁଛି । ଆଜି ପରେ ଏପରି କୌଣସି ସଙ୍କଟ ବା ସମସ୍ୟା ଦେଖାଯାଉଛି, ଯାହାପାଇଁ କି ଅନ୍ୟଠାରୁ ପରାମର୍ଶ ଏବଂ ସହାୟତା ନେବାକୁ ପଡ଼ୁଛି ।

ଏଣୁ ଯେତେବେଳେ ଆମ୍ଭେମାନେ ଦେଖୁଛେ ଯେ ଧନ, ଯୌବନ, ଶାରୀରିକ ବଳ ଏବଂ ସୌନ୍ଦର୍ଯ୍ୟ ଇତ୍ୟାଦି ସବୁ କ୍ଷଣସ୍ଥାୟୀ ଅର୍ଥାତ୍ ଦିନେ ନା ଦିନେ ଏଗୁଡ଼ିକ ଆମକୁ ତ୍ୟାଗ କରିବେ, ସେତେବେଳେ ମନୁଷ୍ୟର ଏସବୁ ବସ୍ତୁପାଇଁ ଏତେ ଅଭିମାନ କାହିଁକି ? ଆମ୍ଭେମାନେ ମଧ୍ୟ ଦେଖୁଥାଇଁ ଯେ କେତେ ଭିକାରୀ ଆଜି ରଜା ହୋଇଛନ୍ତି ଏବଂ କେତେ ଅମୀର ଫକୀର ହୋଇଛନ୍ତି । କାଳର କରାଳ ଗତିରେ କେତେକଙ୍କୁ ଜରା, ଦୁର୍ବଳତା ଓ

ବିଭିନ୍ନ ରୋଗ ପେଶ ବସିଛି । ସେତେବେଳେ ଆମେ ବିଗ୍ରୁର କରିବା ଦରକାର ଯେ ମନୁଷ୍ୟର ସବୁ ଅହଙ୍କାର ମିଥ୍ୟା । ଏ ସଂସାର ପରିବର୍ତ୍ତନଶୀଳ, ତେଣୁ ମନୁଷ୍ୟ ପାଖରେ କୌଣସି ସ୍ଥାୟୀ ବସ୍ତୁ ନାହିଁ । 'ଆସନ୍ତାକାଲି କ'ଣ ହେବ'—ଏକଥା ଉପରେ କୌଣସି ଭରସା ନାହିଁ । କାଲି ମନୁଷ୍ୟର ପ୍ରାଣ ମଧ୍ୟ ଶରୀରରୁ ଅଲଗା ହୋଇ ଯାଇପାରେ ଏବଂ ମୃତ୍ୟୁ ତା'ଠାରୁ ଧନ, ଯୌବନ ଇତ୍ୟାଦି ସବୁ ଛଡ଼ାଇ ନେଇଯାଇପାରେ । ଆଜି କୌଣସି ଶ୍ରେଷ୍ଠ କର୍ମର ଫଳସ୍ୱରୂପ ଆମ୍ଭମାନଙ୍କ ପାଖରେ ଧନ, କୋଠାବାଡ଼ି, ମାନସମ୍ମାନ ରହିଛି କିନ୍ତୁ କାଲି କୌଣସି ଅପକର୍ମ ହେତୁ ସେସବୁ ଚାଲିଯାଇପାରେ । ତେଣୁ ଯେତେବେଳେ ମନୁଷ୍ୟର ସବୁ ପଦାର୍ଥ ନାଶଶୀଳ ଏବଂ ଶେଷରେ ତାକୁ ଏ ଶରୀର ଛାଡ଼ି ଚାଲିଯିବାକୁ ହେବ, ସେତେବେଳେ ତା'ଠାରେ ଅଭିମାନ ରହିବା ଅନୁଚିତ । ଅଳ୍ପ କିଛି ବସ୍ତୁକୁ ନେଇ ନିଜକୁ ବଡ଼ ସାହୁକାର, ବିଦ୍ୱାନ ଅଥବା ଅଭିଜ୍ଞ ବୋଲି କହିବା ଅଜ୍ଞାନତା ବ୍ୟତୀତ ଅନ୍ୟ କିଛି ନୁହେଁ । ହଳଦୀ ପୁଡ଼ିଆଟିଏ ପାଇଗଲେ ମୂଷା ଭାବେ 'ମୁଁ ଗୋଟାଏ ବଡ଼ ମହାଜନ'। ଏ ସେହିପରି କଥା ।

**ଜିଜ୍ଞାସୁ**—ଆପଣଙ୍କ କଥା ତ ବହୁତ ଠିକ୍ । ସମୟର ଗତି ବଡ଼ ବିଚିତ୍ର । ପରିବର୍ତ୍ତନ ହିଁ ହେଉଛି ଏହି ସଂସାରର ନିୟମ । ଆଜି ଆମେ ଦେଖୁଛେଁ ଯେ କୌଣସି ଲୋକ ଉନ୍ନତି ପଥରେ ଆଗେଇ ଚାଲିଛି, କିନ୍ତୁ କାଲି ଅବନତି ଗର୍ତ୍ତରେ ତଳକୁ ଖସିଯାଉଛି । ତେଣୁ ମନୁଷ୍ୟର ପ୍ରତ୍ୟେକ ଅଭିମାନ ମିଥ୍ୟା ।

## ଆଜିକାଲିର ପଦାର୍ଥ ସବୁ ତମୋଗୁଣୀ

**ବ୍ରହ୍ମାକୁମାରୀ**—ଆପଣଙ୍କୁ କହୁଛି ଯେ ବର୍ତ୍ତମାନ ଏହି କଳିଯୁଗୀ ଆସୁରୀ ସୃଷ୍ଟିର ମହାବିନାଶ ସନ୍ନିକଟ । କିଛି ବର୍ଷ ପରେ ମନୁଷ୍ୟ ହାତରୁ ସବୁ ଚାଲିଯିବ । ଏପରି ସମୟ ଆସିବ, ଯାହା କହନ୍ତି "କାହାର ଧନ ମାଟି ତଳେ ରହିବ, କାହାର ରଜା ଖାଇବ, କାହାର ଚୋର ଡକାଇତ ଲୁଟିକରି

ନେବେ ଏବଂ କାହାର ଧନ ନିଆଁରେ ପୋଡ଼ି ପାଉଁଶ ନହେବ ।" ଏପରି ଅବସ୍ଥା ଯେ ଦିନେ ଆସିବ, ଆପଣ ଭୁଲି ଯାଉଛନ୍ତି କି ? ତା'ଛଡ଼ା ଆପଣଙ୍କୁ ଏକଥା ମଧ୍ୟ ଅଛପା ନାହିଁ ଯେ ସତ୍ୟଯୁଗ ଏବଂ ତ୍ରେତାଯୁଗରେ ଆମ ଆତ୍ମାମାନଙ୍କୁ ଯେଉଁ ସୁଖ ମିଳିଥିଲା ତା' ତୁଳନାରେ ଆଜିର ରାଜାମାନଙ୍କର ସୁଖ ମାଟି ଗୋଡ଼ି ସଙ୍ଗେ ସମାନ । ସେ ସମୟର କୋଠାବାଡ଼ି, ସୁଖ, ସ୍ୱାସ୍ଥ୍ୟ, ସମ୍ପତ୍ତି ଏବଂ ଅନ୍ୟ ସବୁ ସତୋପ୍ରଧାନ ଏବଂ ସ୍ଥାୟୀ ଥିଲା । ଆଜିକାଲିର ଅସ୍ଥିର ଏବଂ ତମୋଗୁଣୀ ସୁଖ-ସମ୍ପତ୍ତି ତା' ତୁଳନାରେ କାକ ବିଷ୍ଠା ସଙ୍ଗେ ସମାନ । ସତ୍ୟଯୁଗ ଏବଂ ତ୍ରେତାଯୁଗରେ ବାର୍ଦ୍ଧକ୍ୟ, ଅପମୃତ୍ୟୁ, ରୋଗ ଓ ଦୁର୍ଘଟଣା ଇତ୍ୟାଦି ନ ଥିଲା । ତା' ତୁଳନାରେ ଆଜିର ଯୌବନ ଏବଂ ଶାରୀରିକ ବଳର ମୂଲ୍ୟ କଣ ? ସେ ସମୟରେ ଅତୁଳ ଧନ-ସମ୍ପତ୍ତି ଥିଲା ଏବଂ ଆଜିକାଲିର ରାଜା-ମହାରାଜାମାନଙ୍କ ତୁଳନାରେ ସେ କାଳର ଦାସ-ଦାସୀ ଅଧିକ ଧନବାନ ଏବଂ ସୁଖୀ ଥିଲେ । ଏହି ଶ୍ରେଷ୍ଠ ସୁଖ ସମ୍ପଦ ଯୋଗୁ ଧରାକୁ ବୈକୁଣ୍ଠ କୁହାଯାଉଥିଲା । ତେଣୁ ଆଜି ଧନ ପାଇଁ ଗର୍ବ କରିବା ବୃଥା । ଯେତେବେଳେ ସାରା ବିଶ୍ୱ ଉପରେ ଦୈବୀ ରାଜତ୍ୱ ଥିଲା । ଆଜି କେହି ଜଣେ ଗୋଟାଏ ବା ଯୋଡ଼ାଏ କୋଠା କିମ୍ବା-ଦଶ-ବାର ଏକର ଜମିର ମାଲିକ ହୋଇଗଲେ ବଡ଼ କଥା କ'ଣ ? ଏ ସମ୍ବନ୍ଧରେ ଏକ ଶିକ୍ଷାପ୍ରଦ ଦୃଷ୍ଟାନ୍ତ ମୋର ମନେପଡ଼ୁଛି ।

## ଏକ ଦୃଷ୍ଟାନ୍ତ

ଥରେ ବମ୍ବେ ସହରର ଜଣେ ସେଠ୍ କୌଣସି ଏକ ମହାତ୍ମାଙ୍କୁ ନିଜ ଘରକୁ ଭୋଜନ ପାଇଁ ନିମନ୍ତ୍ରଣ କଲା । ଖାଇବାକୁ ଦେଇସାରି ସେ ଉକ୍ତ ମହାତ୍ମାଙ୍କୁ ତା' କୋଠାବାଡ଼ି ଦେଖାଇବାକୁ ଆରମ୍ଭ କଲା । କହିଲା—"ଦେଖନ୍ତୁ ଏ ଆମର କେତେବଡ଼ ଭୋଜନ ଘର । ଏଥିରେ ପଚିଶ ଜଣ ଲୋକ ଏକ ସଙ୍ଗେ ବସି ଖାଇ ପାରିବେ । ଏ ହେଉଛି ଆମ ରୋଷେଇ ଘର । ଏଥିରେ ଶହେ ଜଣଙ୍କ ପାଇଁ ଏକ ସମୟରେ ଖାଦ୍ୟ ପ୍ରସ୍ତୁତ କରାଯାଇ

ପାରବ ଏବଂ ଏଥିରେ ସବୁ ପ୍ରକାରର ସୁବିଧା ରହିଛି । ଏ ଆମର ଶୟନ ଗୃହ । ଏଥିରେ ଡନ୍‌ଲପ୍ ଗଦି ଏବଂ ତକିଆର ବ୍ୟବସ୍ଥା ରହିଛି । ଏପରି ଆଉ ଦଶକୋଟି ଶୟନକକ୍ଷ ମଧ୍ୟ ରହିଛି । ଆମର କେତେ ବଡ଼ ବଗିଚା ଏଇ ଦେଖନ୍ତୁ । ଯେଉଁ ଚିମନିରୁ ଧୂଆଁ ବାହାରୁଛି, ସେ ହେଉଛି ଆମର କାରଖାନା—।'' ମହାତ୍ମା ଲକ୍ଷ୍ୟକଲେ ଯେ ସେଠ୍‌ର ବହୁତ ଅଭିମାନ ଅଛି ଏବଂ ସେ ସେହି ନିଶାରେ ଝୁଲୁଛି । ନିଜର କଲ୍ୟାଣ ପାଇଁ କୌଣସି କଥା ନ ଶୁଣି ନିଜର ବଡ଼ିମା ଦେଖାଇ କହୁଛି—''ମୁଁ ଜଣେ ବଡ଼ ସେଠ୍ ।'' ଏସବୁ ଦେଖି ମହାତ୍ମା ଚୁପ୍ ରହିଲେ । ଶେଷରେ ସେଠ୍ ତାଙ୍କୁ ନିଜର ବୈଠକଖାନାକୁ ନେଲା । ମହାତ୍ମା ସେଠାରେ ଦେଖିଲେ ବିଶ୍ୱର ଏକ ମାନଚିତ୍ର ରହିଛି । ତାପରେ ମହାତ୍ମା କହିଲେ—''ସେଠଜୀ, ବିଶ୍ୱର ଏହି ମାନଚିତ୍ରରେ ଭାରତ କେଉଁଠି ଅଛି ?'' ସେଠ୍ ଅଙ୍ଗୁଳି ଦେଖାଇ କହିଲା—''ମହାରାଜ, ଦେଖନ୍ତୁ, ଏଇ ଖଣ୍ଡିକ ଭାରତ । ସାରା ବିଶ୍ୱ ମାନଚିତ୍ରରେ ଭାରତ କେତେ ଶ୍ରେଷ୍ଠ ଦେଖାଯାଉଛି ?''

ତା'ପରେ ମହାତ୍ମା ପଚାରିଲେ—''ସେଠ୍‌ଜୀ, ଭାରତରେ ବମ୍ବେ ସହର କେଉଁଠି ଦେଖା ହୋଇଛି ?''

ସେଠ୍‌ଜୀ ବମ୍ବେର ଚିହ୍ନ ପାଖରେ ଅଙ୍ଗୁଳି ରଖିଲେ । ଭାରତ ମାନଚିତ୍ରରେ ବମ୍ବେକୁ ଏକ ବିନ୍ଦୁରୂପେ ଚିତ୍ରିତ କରାଯାଇଛି । ବିନ୍ଦୁକୁ ଦେଖି ମହାତ୍ମା କହିଲେ—''ସେଠ୍‌ଜୀ, ଏଥିରେ ତୁମର ବଙ୍ଗଳା ଏବଂ କାରଖାନା କେଉଁଠି ଅଛି ?''

ସେଠ୍ ମହାତ୍ମାଙ୍କର ଇଙ୍ଗିତ ବୁଝିପାରିଲା । ସେ ଲଜ୍ଜିତ ହୋଇ କହିଲା ''ମହାରାଜ, ମୁଁ ଆପଣଙ୍କ କଥା ବୁଝିପାରିଲି । ଆପଣଙ୍କ କହିବାର ମର୍ମ ଏଇଆ ଯେ ବିଶ୍ୱ ମାନଚିତ୍ରରେ ବମ୍ବେ ସହର ହେଉଛି ଏକ ବିନ୍ଦୁ ଏବଂ ସେଥିରେ ଥିବା ଅସଂଖ୍ୟ କୋଠାଙ୍କର ଭିତରେ ମୋର ଶ୍ରେଷ୍ଠ-ବଡ଼ ହୋଇ ଗୋଟିଏ ମାତ୍ର । ଏଥିପାଇଁ ମୁଁ ମିଥ୍ୟା ଅଭିମାନ କରୁଛି ।

ମହାରାଜ, ଏହା ମୋର ବଡ଼ ଭୁଲ । ଯଦି ସମଗ୍ର ବ୍ରହ୍ମାଣ୍ଡ ସହର ଏକ ବିନ୍ଦୁ, ତେବେ ସେଥିରେ ମୋର ସ୍ଥାନ କେଉଁଠି ? ସଂସାରରେ ମୋଠାରୁ ବଡ଼ ଅନେକ ବ୍ୟକ୍ତି ଅଛନ୍ତି । ମୁଁ ସାମାନ୍ୟ କିଛି ଭୂମି ଏବଂ ସମ୍ପତ୍ତିକୁ ନେଇ ଭୁଲରେ ନିଜକୁ ବଡ଼ ବୋଲି ଭାବୁଛି ।"

ଜିଜ୍ଞାସୁ—ଭଉଣୀ, ମୁଁ ଆପଣଙ୍କ କଥା ବୁଝିପାରୁଛି । ମୁଁ ମାନୁଛି ଯେ ଅହଙ୍କାର ଏକ ମସ୍ତବଡ଼ ପାପ । ଆଜିଠାରୁ ଯଦି କେବେ ମନରେ ଅହଙ୍କାର ଭାବ ଆସେ, ତେବେ ପ୍ରଥମେ ମୋର ଭାବିବା ଉଚିତ ଯେ ଏ ସଂସାର ପରିବର୍ତ୍ତନଶୀଳ, ଏଠାକାର ଧନ-ଦୌଲତ ସବୁ କ୍ଷଣସ୍ଥାୟୀ, ଭଙ୍ଗୁର ଏବଂ ଅସ୍ଥିର । ଏଣୁ ଯେଉଁ ବସ୍ତୁ କାଲିକି ରହିବ କି ନାହିଁ ଜଣାନାହିଁ, ତାକୁ ନେଇ ଗର୍ବ କରିବା ଅଜ୍ଞାନତା ମାତ୍ର । ଦ୍ୱିତୀୟତଃ, ମହାବିନାଶ ଆମ ସମ୍ମୁଖରେ ଦଣ୍ଡାୟମାନ । ତେଣୁ ଆଜି ଯାହାକୁ ମୁଁ ନିଜର ବୋଲି ଭାବୁଛି, ତାହା କାଲି ମୋଠାରୁ ଦୂରେଇ ଯିବ । ତୃତୀୟତଃ, ସତ୍ୟଯୁଗର ଦୈବୀ ରାଜ-ଭୋଗ୍ୟ ତୁଳନାରେ ଆଜି ଆମର ଶରୀର ଏବଂ ମନ ବହୁତ ତୁଚ୍ଛ ଏବଂ ପାଖରେ ଧନ ଥିଲେ ମଧ୍ୟ ପ୍ରକୃତରେ ଆମେ ଫକୀର, ବିକାରୀ ଏବଂ ଭିକାରୀ; କାରଣ ଆମେ ଈଶ୍ୱରଙ୍କୁ ପବିତ୍ରତା ଓ ସୁଖର ଭିକ୍ଷା ମାଗୁଛୁ । ତେଣୁ ଆମ୍ଭମାନଙ୍କର ଅଭିମାନ ସବୁ ମିଥ୍ୟା । କିନ୍ତୁ ଭଉଣୀ, ଏକଥା ସବୁ ଆମ୍ଭେମାନେ ବାରମ୍ବାର କାହିଁକି ଭୁଲି ଯାଉଛୁ ?

## କେଉଁ ଶ୍ୱାସ ଅନ୍ତିମ ହେବ କିଏ ଜାଣେ ?

ବ୍ରହ୍ମାକୁମାରୀ—ଦେଖନ୍ତୁ, ମନୁଷ୍ୟର ସବୁବେଳେ ଭାବିବା ଉଚିତ ଯେ କେଉଁ ଶ୍ୱାସ ତା'ର ଅନ୍ତିମ ଶ୍ୱାସ ହେବ ସେ ଜାଣେନା । ତେଣୁ ସମସ୍ତଙ୍କୁ ମଧୁର କଥା କହିବା ଏବଂ ଅଭିମାନ ନ ଦେଖାଇବା ଆବଶ୍ୟକ । ଆଜି ମନୁଷ୍ୟର ବୁଦ୍ଧି ସମ୍ପୂର୍ଣ୍ଣ ତମୋପ୍ରଧାନ ହୋଇଯାଇଛି ।

ଯେତେବେଳେ ଶରୀରରୁ ପ୍ରାଣ ଚାଲିଯିବ, ସେତେବେଳେ ସବୁ ଏହି ଧନ ବାକ୍ସରେ ହିଁ ରହିଯିବ । ତେଣୁ ଯେଉଁ ବସ୍ତୁ ତା'ର ପ୍ରାଣଠାରୁ ଅଲଗା ହୋଇଯିବ ତା ପାଇଁ ଏତେ ଅଭିମାନ କାହିଁକି ?

ଶରୀର ଉପରେ ମଧ୍ୟ ବିଭିନ୍ନ ରୋଗ, ଦୁର୍ଘଟଣା ଏବଂ କାଳର ନିତ୍ୟ ବିଜୟ ଚାଲିଛି । ତେଣୁ ଶାରୀରିକ ସୌନ୍ଦର୍ଯ୍ୟ, ସ୍ୱାସ୍ଥ୍ୟ, ବଳ ଅଥବା ଜାତି ଲାଗି ଗର୍ବ ମଧ୍ୟ ନିରର୍ଥକ । ଶରୀର ଏବଂ ଧନ-ସମ୍ପତ୍ତି ଦିନେ କାଳର କରାଳ ଗର୍ଭରେ ଲୁଚିଯିବ । ଅଥଚ ଏସବୁ ପାଇଁ ତା ମନରେ ଥିବା ଅଭିମାନ ତା'ର ଅଶାନ୍ତିର କାରଣ ହେଉଛି । କାମ-ବିକାରରୂପୀ କଣ୍ଟାରେ ଭରା ଏହି ଦେହରୂପୀ ପଞ୍ଜୁରୀ ବାସ୍ତବରେ ଆତ୍ମାରୂପୀ ପକ୍ଷୀ ପାଇଁ ଏକ ବନ୍ଦୀ ପଞ୍ଜୁରୀ ସଦୃଶ ଅଟେ । ତେଣୁ ପଞ୍ଜୁରୀରେ ଆବଦ୍ଧ ଥିବା ପକ୍ଷୀ ତା ପଞ୍ଜୁରୀର ଗର୍ବ କରିବା ଯାହା, ଏ ମନୁଷ୍ୟର ଅହଂକାର ଠିକ୍ ସେଇଆ । ସେହିପରି ନିଜର ବୁଦ୍ଧିର ଅଭିମାନ ମନୁଷ୍ୟକୁ ଦିନେ ନା ଦିନେ ଅସୁବିଧାର ସମ୍ମୁଖୀନ କରାଏ । ନିଜକୁ ସବୁଠାରୁ ବୁଦ୍ଧିମାନ୍, ଯୋଗ୍ୟ ଏବଂ ବିଶ୍ୱର-ବୁଦ୍ଧିରେ ଅଦ୍ୱିତୀୟ ଭାବି ନିଜେ ନିଜକୁ ପ୍ରମାଣପତ୍ର ବା ସାର୍ଟିଫିକେଟ୍ ଦେବା ମୂର୍ଖତା, କାରଣ ଅନ୍ୟମାନେ ହିଁ ମନୁଷ୍ୟକୁ ପ୍ରମାଣ-ପତ୍ର ଦିଅନ୍ତି । ଯେଉଁ ବ୍ୟକ୍ତିର ଅନ୍ତର କଲ୍ୟାଣଯୁକ୍ତ ନୁହେଁ ଏବଂ ଯାହାର ମନ ସଦା ଅଶାନ୍ତ, ତା ବୁଦ୍ଧିର ମୂଲ୍ୟ କଅଣ ? ଯଦି ଜଣେ ମନୁଷ୍ୟ ବେଦ, ଶାସ୍ତ୍ର ପୁରାଣ ଓ ଗ୍ରନ୍ଥ ଅଧ୍ୟୟନରେ ପାରଙ୍ଗମ ଅଥଚ ତା କାମ, କ୍ରୋଧାଦି ବିକାରପୂର୍ଣ୍ଣ ରହିଛି, ତେବେ ତା'ର ବିଦ୍ୟାଧ୍ୟୟନର ମୂଲ୍ୟ କଣ ? ତା' ମନରେ ତ ଶାନ୍ତି ନାହିଁ, ତେଣୁ ନିଜ ପାଣ୍ଡିତ୍ୟର ଅଭିମାନ ନ କରି ଦିବ୍ୟ ବୁଦ୍ଧି ଲାଭ କରିବାପାଇଁ ପ୍ରଭୁଙ୍କ ସଙ୍ଗରେ ଯୋଗଯୁକ୍ତ ହେବା ଉଚିତ ।

ପ୍ରତ୍ୟେକ ମନୁଷ୍ୟ ପାଇଁ ଦିବ୍ୟ ବୁଦ୍ଧିର ଆବଶ୍ୟକତା ରହିଛି ଏବଂ ଯେତେବେଳେ ମନୁଷ୍ୟ ନିଜ ବୁଦ୍ଧିର ଅହଂକାରକୁ ତ୍ୟାଗ କରି ପରମପିତା ପରମାତ୍ମାଙ୍କ ସର୍ବଶ୍ରେଷ୍ଠ ମତକୁ ଶୁଣେ, ମାନେ ଏବଂ ଜୀବନରେ ଧାରଣ କରେ, ସେତିକିବେଳେ ହିଁ ସେ ଏହି ଦିବ୍ୟବୁଦ୍ଧି ପରମାତ୍ମାଙ୍କଠାରୁ ଲାଭ

କରେ । ଦ୍ରବ୍ୟ ବୃଦ୍ଧି ଲାଭକଲେ ମଧ୍ୟ ତାହାର ଅଭିମାନ କରିବା ଅନୁଚିତ । କାରଣ ଦ୍ରବ୍ୟ-ବୃଦ୍ଧି ହେଉଛି ପରମାତ୍ମାଙ୍କର ଦାନ । ଯେଉଁ ବସ୍ତୁ ମାନବକୁ ଦାନରୂପେ ମିଳିଛି, ତା' ଉପରେ ବ୍ୟକ୍ତିତ୍ୱର ଅହଂକାର ଅପଣ୍ଡିତ । ଏପରି ଅହଙ୍କାର ମଧ୍ୟ ମିଥ୍ୟା ।

## ବଡ଼ କିଏ ?

ଦ୍ୱିତୀୟ କଥା ହେଉଛି ଯେ, ନିଜକୁ ନିଜେ ବଡ଼ ବୋଲି କହି ଦୁନିଆଁରେ କେହି ବଡ଼ ହୋଇ ପାରିନାହିଁ । ଯେତେବେଳେ ଲୋକମାନେ ମନୁଷ୍ୟକୁ ବଡ଼ ବୋଲି ମାନନ୍ତି ସେତିକିବେଳେ ହିଁ ସେ ବଡ଼ ହୁଏ । ନମ୍ର ଏବଂ ମଧୁର ସ୍ୱଭାବଯୁକ୍ତ ମନୁଷ୍ୟକୁ ବାସ୍ତବରେ ସମସ୍ତେ ହୃଦୟରେ ବଡ଼ ବୋଲି ମାନନ୍ତି ଏବଂ ଭକ୍ତି ମଧ୍ୟ କରନ୍ତି । ଅହଙ୍କାରୀ ମନୁଷ୍ୟକୁ ସାଧାରଣତଃ ଲୋକେ ଡରନ୍ତି ଏବଂ ତା' ପାଖରୁ ଦୂରରେ ରହନ୍ତି, ମାତ୍ର ମନ ଭିତରେ ତାକୁ 'ମହାନ' ବ୍ୟକ୍ତିରୂପେ କେହି ସ୍ୱୀକାର କରନ୍ତି ନାହିଁ । ତେଣୁ ମନୁଷ୍ୟର ବଡ଼ପଣ ତା'ର ନମ୍ରତା ଏବଂ ମଧୁରତା ଉପରେ ହିଁ ନିର୍ଭର କରେ । ଯେଉଁ ଲୋକ ଅନ୍ୟମାନଙ୍କ ମୁଖରେ ନିଜର ବଡ଼ିମା ଏବଂ ପ୍ରଶଂସା ଶୁଣିବା ପାଇଁ କେବେ ଇଚ୍ଛା କରେନାହିଁ ଏବଂ ଅନ୍ୟଠାରୁ ପ୍ରଶଂସା ପାଇବାକୁ ଆଶା ରଖେ ନାହିଁ ସେ ପ୍ରକୃତରେ ମହାନ୍ କାରଣ ସେ ଜାଣେ ଯେ ଏହାକୁ ସ୍ୱୀକାର କରିବାଦ୍ୱାରା ତା'ର ତପସ୍ୟା ଏବଂ ପୁରୁଷାର୍ଥ କ୍ଷୀଣ ଏବଂ ଦୁର୍ବଳ ହୋଇଯିବାର ସମ୍ଭାବନା ରହିଛି ଏବଂ ପ୍ରାରବ୍ଧ ଭୋଗ ମଧ୍ୟ କମିଯାଇପାରେ । ଏହି ହେତୁରୁ ମାନ ଏବଂ ମାନ୍ୟତା ପାଇବା ଇଚ୍ଛା ତ୍ୟାଗ କରିବା ଉଚିତ । ଯଦି କେହି କେବେ ଆପଣଙ୍କୁ ପ୍ରଶଂସା କଲା, ତେବେ ସୁଦ୍ଧା ଅଭିମାନ କରନ୍ତୁ ନାହିଁ । ହଁ, ଆପଣଙ୍କ ମନରେ ହୁଏତ ସନ୍ତୋଷ ଆସିବ ଯେ ଆପଣଙ୍କ ବ୍ୟବହାର ଓ ଆଚରଣରେ ଲୋକମାନେ ପ୍ରୀତ ହୋଇଛନ୍ତି ।

ଶରୀର ଗୋଟିଏ ମଟରଗାଡ଼ି ଏବଂ ଆତ୍ମା ଏହାର ଚାଳକ । ଯେଉଁ ମନୁଷ୍ୟ ନିଜକୁ ଡ୍ରାଇଭର ( ଆତ୍ମା ) ନ ଭାବି କାର୍ ( ଶରୀର ) ଭାବୁଛି, ସେ

ବାସ୍ତବରେ 'ଅହଙ୍କାର' କରୁଛୁ ( ଅହଂର ଅର୍ଥ 'ମୁଁ' ଏବଂ କାର୍‌ର ଅର୍ଥ 'ଶରୀର' )। ଏହି 'ଅହଙ୍କାର' ହେଉଛି ଅଜ୍ଞାନାନ୍ଧକାର । ତେଣୁ ମନୁଷ୍ୟ ସର୍ବଦା ନିଜକୁ ଦେହ ନ ଭାବି 'ଆତ୍ମା' ଭାବିବା ଦରକାର, ଯାହାଦ୍ୱାରା କି ତା'ର ଅନ୍ଧକାର ଦୂର ହୋଇଯିବ । ମନୁଷ୍ୟ ନେତାପଣର ଆଭିମାନ ନ ଦେଖାଇ ସର୍ବଦା ଦେବତାପଣକୁ ସ୍ମରଣ କରିବା ଉଚିତ; ଧନର ଅହଙ୍କାର ନ କରି ଧର୍ମର ବିଚାର କରିବା ଦରକାର ଏବଂ ଶରୀରର ଅଭିମାନ ନ ଦେଖାଇ ସହନଶୀଳତା ଅବଲମ୍ବନ କରିବା ଏକାନ୍ତ ଆବଶ୍ୟକ । ତେବେ ତାକୁ ଅସୀମ ସୁଖ, ନମ୍ରତାରୂପୀ ଦୈବୀ ଧନ ଏବଂ ସନ୍ତୋଷରୂପୀ ଭଣ୍ଡାର ମିଳିବ ।

ଏହା ସତ୍ୟ ଯେ, ନିଜକୁ ବଡ଼ ବୋଲି ଗର୍ବ କରେ କିମ୍ବା ନିଜେ ନିଜର ପ୍ରଶଂସା ଗାନ କରେ ତାକୁ ଲୋକେ ଉଚ୍ଚ ବୋଲି ସ୍ୱୀକାର କରନ୍ତି ନାହିଁ । ଦ୍ୱିତୀୟତଃ, ସେ ଭଗବାନଙ୍କ' ଦୃଷ୍ଟିରେ ମଧ୍ୟ ବଡ଼ ହୋଇପାରେ-ନାହିଁ, କିମ୍ବା ଭବିଷ୍ୟତରେ ଦେବଦେବୀଙ୍କର ରାଜ୍ୟ-ଭାଗ୍ୟରେ ମଧ୍ୟ ବଡ଼ ପଦ ପାଇପାରେ ନାହିଁ କାରଣ ଦେବତା ସର୍ବଦା ନମ୍ର ଏବଂ ମଧୁର— ସେମାନେ ନିଜ ନିଜର ପ୍ରଶଂସା କରନ୍ତି ନାହିଁ କି ନିଜକୁ ସମସ୍ତଙ୍କଠାରୁ ଉଚ୍ଚ ଏବଂ ଶ୍ରେଷ୍ଠ ବୋଲି ଅଭିମାନ କରନ୍ତି ନାହିଁ । ଯଦି କିଏ ସତ୍ୟଯୁଗୀ ସ୍ୱର୍ଗିକ ରାଜ୍ୟରେ ନୀଚ ପଦ ପାଇବାକୁ ଚାହେଁ ଏବଂ ଭଗବାନଙ୍କ ଦରବାରରେ ଲଜ୍ଜାରେ ନତମସ୍ତକ ହୋଇ ଦଣ୍ଡାୟମାନ ରହିବାପାଇଁ ସ୍ୱୀକାର କରେ, ତେବେ ସେ ହୁଏତ ଅହଙ୍କାର କରିପାରେ ।

**ଜିଜ୍ଞାସୁ**—ଭଉଣୀ, ଜ୍ଞାନ ଲାଭକରି ଆମ୍ଭେ କେବେ ଚାହିଁବା ନାହିଁ ଯେ ଆମ୍ଭେ ଅହଙ୍କାର କରିବା ଏବଂ ସେଥିପାଇ ପୁନଶ୍ଚ ଧର୍ମରାଜଙ୍କଠାରୁ ଦଣ୍ଡ ପାଇବା ।

## ଅହଙ୍କାରୀ ମନୁଷ୍ୟ ବାଉଁଶ ଗଛ ସଙ୍ଗେ ସମାନ ।

ବ୍ରହ୍ମାକୁମାରୀ—ତେବେ ନମ୍ରତା ଧାରଣ କରିବା ଉଚିତ । କଥାରେ ଅଛି, ଅହଙ୍କାରୀ ମନୁଷ୍ୟ ବାଉଁଶ ଗଛ ସହିତ ତୁଳନୀୟ, କାରଣ ବାଉଁଶ ଗଛ ଫଳ ତ ଦିଏ ନାହିଁ, ସୁଗନ୍ଧଯୁକ୍ତ ଫୁଲ ଦିଏ ନାହିଁ, ଶୀତଳ ଛାୟା ଟିକିଏ ବି ଦିଏ ନାହିଁ ; କେବଳ ନିଜର ବଡ଼ପଣ ଦେଖାଇ ସବୁବେଳେ ସିଧା ହୋଇ ଠିଆ ହୋଇଥାଏ । ମାତ୍ର ନମ୍ର ମନୁଷ୍ୟ ଏପରି ବୃକ୍ଷ ସହିତ ତୁଳନୀୟ, ଯେଉଁ ବୃକ୍ଷ କି ଫଳ ଧାରଣ କରି ଭୂମି ଉପରକୁ ନଇଁ ଆସେ, ନିଜର ସରସ ଫଳ ଏବଂ ଶୀତଳ ଛାୟାଦ୍ୱାରା ଅନ୍ୟର ଉପକାର କରେ ଏବଂ ସୁଖ ମଧ୍ୟ ପ୍ରଦାନ କରେ । ସମସ୍ତେ ଜାଣନ୍ତି ଯେ ବାଉଁଶ ଗଛର ପରସ୍ପର ଘର୍ଷଣ ଫଳରେ ଅଗ୍ନି ଜାତ ହୁଏ ଯାହାକି ସାରା ଜଙ୍ଗଲକୁ ଦଗ୍ଧ କରେ । ସେହିପରି ଯେତେବେଳେ ଦୁଇ ଜଣ ଅହଙ୍କାରୀ ବ୍ୟକ୍ତି ନିଜ ନିଜର ବଡ଼ିମା ନେଇ ବିବାଦ କରନ୍ତି ସେତେବେଳେ କ୍ରୋଧରୂପୀ ଅଗ୍ନି ଅଥବା ଅଶାନ୍ତିରୂପୀ ଜ୍ୱାଳା ଉତ୍ପନ୍ନ ହୁଏ ଏବଂ ସେହି ସୂକ୍ଷ୍ମ ଅଗ୍ନିର ଦହନଦ୍ୱାରା ଅନେକ ଥର ସାରା କୁଟୁମ୍ବ ଅଥବା ସାରା ଦେଶରେ ମଧ୍ୟ ଦୁଃଖର ଛାୟା ଘୋଟିଯାଏ । ବାଉଁଶର ଘର୍ଷଣରୁ ଉତ୍ପନ୍ନ ଅଗ୍ନି ଅପେକ୍ଷା ଅହଂକାରୀ ମନୁଷ୍ୟର ପ୍ରକୃତିଗତ ସଂଘର୍ଷରୁ ଉତ୍ପନ୍ନ ହେଉଥିବା ଅଗ୍ନି ଅଧିକ ଭୟଙ୍କର, କାରଣ ପ୍ରଥମ ଅଗ୍ନିଦ୍ୱାରା କେବଳ ଜଙ୍ଗଲ ନଷ୍ଟ ହୁଏ, ମାତ୍ର ଦ୍ୱିତୀୟ ଅଗ୍ନିଦ୍ୱାରା ବହୁ ଚେଷ୍ଟାରେ ଗଢ଼ି ଉଠିଥିବା ଗାଁ, ସହର ଏବଂ ଦେଶ ମଧ୍ୟ କ୍ଷତିଗ୍ରସ୍ତ ହୁଏ ।

ଅତଏବ, ସୁଖ-ଶାନ୍ତି ଲୋଡ଼ୁଥିବା ମନୁଷ୍ୟ ପକ୍ଷରେ ଅହଂକାର ତ୍ୟାଗ ଏକାନ୍ତ ଆବଶ୍ୟକ, କାରଣ ଅହଂକାରରୁ କ୍ରୋଧ ଉତ୍ପନ୍ନ ହୁଏ ଏବଂ କ୍ରୋଧର ବଶୀଭୂତ ହୋଇଥିବା ମନୁଷ୍ୟର ନିର୍ଣ୍ଣୟ ଶକ୍ତି ଓ ବିଚାର ଶକ୍ତି ନଷ୍ଟ ହୋଇଯାଏ ଏବଂ ସେହି ଭ୍ରଷ୍ଟବୁଦ୍ଧି ମନୁଷ୍ୟ ଅନ୍ଧ-ପାଗଳ ସମାନ ବ୍ୟବହାର କରେ । ଅହଂକାରୀ ମନୁଷ୍ୟର ବୁଦ୍ଧିରେ ଜ୍ଞାନ ରହିପାରେ ନାହିଁ, ସେ ସଦ୍‌ଗୁଣ ଧାରଣ କରିପାରେ ନାହିଁ କିମ୍ବା ଅନ୍ୟର ହୃଦୟରେ ପ୍ରେମ

ଓ ସମ୍ମାନପୂର୍ଣ୍ଣ ସ୍ଥାନ ପାଇପାରେ ନାହିଁ । ଅହଂକାରୀ ମନୁଷ୍ୟ ପାଖରେ ଯାହା କିଛି ଅଳ୍ପ ବହୁତ ଭଲ ଗୁଣ ଥାଏ, ସେ ସବୁ ଅହଂକାରର ପରଦା ତଳେ ଲୁଚିଯାଏ ଏବଂ ଲୋକମାନଙ୍କ ଦୃଷ୍ଟିରେ ତାର ଅହଙ୍କାର ହିଁ ସର୍ବଦା ପ୍ରତିଫଳିତ ହୁଏ । ଆପଣ ଈଶ୍ୱରୀୟ ଜ୍ଞାନ ଲାଭକରି ଯେଉଁ ଜ୍ଞାନବାନ୍ ମନୁଷ୍ୟରୂପୀ ବୃକ୍ଷରୂପେ ବିବେଚିତ ହେଲେ ସେହି ବୃକ୍ଷ ମଧୁରତା ସହନଶୀଳତା, ଧୈର୍ଯ୍ୟ ଏବଂ ପ୍ରେମ ଇତ୍ୟାଦି ଦିବ୍ୟଗୁଣରୂପୀ ଫୁଲ୍-ଫଳ ଧାରଣ କରିବା ଉଚିତ । ଏସବୁ ଆପଣ କେବେ ଧାରଣ କରିବେ ?

**ଜିଜ୍ଞାସୁ**—ଭଉଣୀ, ଖୁବ୍ ଶୀଘ୍ର ଧାରଣ କରିବି । ଏଥିପାଇଁ ତ ମୁଁ ଉଦ୍ୟମ କରୁଛି ।

**ବ୍ରହ୍ମାକୁମାରୀ**—ଆମର ମଧ୍ୟ ଏହି ବିଶ୍ୱାସ । ମାତ୍ର ଯେତେବେଳେ ଆପଣ ନିଜକୁ ନିମିତ୍ତ (Trustee) ଭାବି ଚାଲିବେ, ସେତିକବେଳେ କେବଳ ନମ୍ରତା ଓ ମଧୁରତା ଗୁଣ ଧାରଣ କରିପାରିବେ ଏବଂ ଅହଂକାରରୁ ମୁକ୍ତ ହେବେ ।

**ଜିଜ୍ଞାସୁ**—କିପରି ତାହା ହେବ ?

## ନିଜକୁ ନିମିତ୍ତମାତ୍ର ଭାବି ଈଶ୍ୱରଙ୍କଠାରେ ଅର୍ପିତ ହେବା ନିତାନ୍ତ ଆବଶ୍ୟକ ।

**ବ୍ରହ୍ମାକୁମାରୀ**—ନିଜକୁ 'ନିମିତ୍ତ' ଭାବି ଚାଲିବାର ଅର୍ଥ—ଆପଣ ମନେକରନ୍ତୁ ଆଜିଠାରୁ ସଂସାରରେ ଆପଣଙ୍କର କିଛି ନାହିଁ ; ଏସବୁ ପରମପିତା ଶିବଙ୍କର ଅଟେ ଏବଂ ଏଗୁଡ଼ିକର ତତ୍ତ୍ୱ ନେବାପାଇଁ ଅଥବା ତାଙ୍କର ନିର୍ଦ୍ଦେଶ ଅନୁସାରେ ଏଗୁଡ଼ିକୁ ଶୁଭ କାର୍ଯ୍ୟରେ ନିୟୋଜିତ କରିବାପାଇଁ ଆପଣ ହେଉଛନ୍ତି ନିମିତ୍ତ (Trustee) । ଯଦି ଆପଣ ସ୍ମରଣ ରଖନ୍ତି ଯେ ଏ ଦୁନିଆଁରେ ଆପଣଙ୍କର କିଛି ନାହିଁ, ଏସବୁ ଯାହା

କିଛି ଅଛି ତାହା ନିରାକାର ପରମପିତା ଶିବବାବାଙ୍କର, ତେବେ କୌଣସି ବସ୍ତୁ ପାଇଁ ଆପଣଙ୍କ ମନରେ ଅହଙ୍କାର ଆସିବ କି ? ଆପଣ ମଧ୍ୟ ଜାଣିଥିବେ ଯେ କେତେକ ଧନୀ ବ୍ୟକ୍ତି ନିଜର ଧନଦ୍ୱାରା ଧର୍ମଶାଳା, ଡାକ୍ତରଖାନା, ବିଦ୍ୟାଳୟ ଇତ୍ୟାଦି ନିର୍ମାଣ କରି ତାକୁ ଏକ ନ୍ୟାସୀ ସମିତି (Trusteeship Committee) ହାତରେ ଦେଇଦିଅନ୍ତି । ସେହି ସମିତିର ସଦସ୍ୟମାନେ ସେଗୁଡ଼ିକର ପରିଚାଳନା କରନ୍ତି ଏବଂ ଏହି କାର୍ଯ୍ୟ ପାଇଁ ସେମାନଙ୍କ ମନରେ କୌଣସି ଅଭିମାନ ନ ଥାଏ; କାରଣ ସେମାନେ ଜାଣନ୍ତି ଯେ ତାହାର ମାଲିକ ବାସ୍ତବରେ ଅନ୍ୟ ଏକ ବ୍ୟକ୍ତି । ଏହିପରି ଆପଣ ଆପଣଙ୍କର ପ୍ରତ୍ୟେକ କର୍ମ ସମ୍ପାଦନ କରି ଚାଲନ୍ତୁ । କିନ୍ତୁ ଆପଣ ଯେତେବେଳେ 'ମରଜୀବା' ଜନ୍ମ ନେବେ ଅର୍ଥାତ୍ ଜୀବିତାବସ୍ଥାରେ ନିଜର ବୁଦ୍ଧିଦ୍ୱାରା ଏ ସଂସାରକୁ ଭୁଲି ପାରିବେ, ସେତେବେଳେ ଆପଣଙ୍କ ମନରେ ଏହି 'ନିମିତ୍ତ' ଭାବ ଉଦୟ ହେବ ।

ଜିଜ୍ଞାସୁ—'ମରଜୀବା' ଜନ୍ମର ଅର୍ଥ କ'ଣ ?

ବ୍ରହ୍ମାକୁମାରୀ—ଯେତେବେଳେ କୌଣସି ବ୍ୟକ୍ତି ଶରୀର ତ୍ୟାଗ କରେ ଏବଂ ଅନ୍ୟ ଏକ ନୂତନ ଜନ୍ମ ନିଏ, ସେତେବେଳେ ସେ ପୂର୍ବ ଜନ୍ମର ସମସ୍ତ ସମ୍ବନ୍ଧକୁ ଭୁଲିଯାଏ ଏବଂ ନୂତନ ଜନ୍ମର ପିତା-ମାତାଙ୍କ ଆଦେଶ ଅନୁସାରେ ଅଥବା ତା'ର ନୂତନ କୁଳର ମର୍ଯ୍ୟାଦା ଅନୁସାରେ ଚଳେ । ପୂର୍ବ ଜନ୍ମର ସମ୍ପତ୍ତି, ଧନ, ଯୌବନ ଅଥବା ଶକ୍ତିର ସ୍ମୃତି ତା' ମନରେ ଚଳେହେଲେ ରହେ ନାହିଁ ଏବଂ ସେ ଗୋଟିଏ ଗ୍ରେଷ୍ଠ ଶିଶୁ ପରି ବ୍ୟବହାର କରେ । ଏପରି ଏ ସଂସାରରେ ହେଉଛି ନା ନାହିଁ ?

ତେଣୁ ଆପଣ ଜାଣିବା ଦରକାର ଯେ ମରଜୀବା' ଜନ୍ମ ନେବା ଅର୍ଥ 'ଜୀବିତ ଅବସ୍ଥାରେ ମରିବା' ଅର୍ଥାତ୍ ବର୍ତ୍ତମାନ ସମସ୍ତ ବନ୍ଧନ ଏବଂ ସମ୍ବନ୍ଧଠାରୁ ବୁଦ୍ଧିଦ୍ୱାରା ଅଲଗା ହୋଇ ନିଜକୁ ପରମପିତା ପରମାତ୍ମାଙ୍କର ସନ୍ତାନ ବୋଲି ଜ୍ଞାନ କରିବା । ଈଶ୍ୱରୀୟ ଜ୍ଞାନ ଲାଭ କରିବା ପରେ ମନୁଷ୍ୟ

ଜାଣିବା ଦରକାର ଯେ—"ମୁଁ ପରମାତ୍ମା ଶିବଙ୍କର ସନ୍ତାନ, ବର୍ତ୍ତମାନ ମୁଁ ତାଙ୍କର ଆଜ୍ଞା ଅନୁଯାୟୀ ଚାଲିବି ଏବଂ ଈଶ୍ୱରୀୟ କୁଳର ଉଚ୍ଚ ମର୍ଯ୍ୟାଦା ରକ୍ଷା କରିବି ।" ଏ ସଂସାରରେ ମନୁଷ୍ୟ ମରିବା ପରେ ହିଁ ସମସ୍ତ ସମ୍ବନ୍ଧରୁ ମୋହ-ମମତା ତ୍ୟାଗ କରେ, ମାତ୍ର ଜ୍ଞାନବାନ୍ ବ୍ୟକ୍ତି ଜୀବିତାବସ୍ଥାରେ ସେଗୁଡ଼ିକୁ ତ୍ୟାଗ କରେ, ତେଣୁ ସେ ଜୀବିତାବସ୍ଥାରେ ଏକ ପ୍ରକାର ମୃତ୍ୟୁବରଣ କରେ ଅର୍ଥାତ୍ ଲୌକିକ ଜନ୍ମକୁ ଭୁଲି ଅଲୌକିକ ଜନ୍ମ ( Spiritual birth ) ନିଏ । ଯେତେବେଳେ ସେ ନିଜକୁ ପରମପିତା ପରମାତ୍ମା ଶିବଙ୍କର ପୁତ୍ର ବୋଲି ଜ୍ଞାନ କରିବ, ସେତେବେଳେ ସେ ସେହି ପରମାତ୍ମାଙ୍କର ସମ୍ପତ୍ତିର ମାଲିକ ହୋଇପାରିବ, କାରଣ ପୁତ୍ର ହିଁ ତା'ର ପିତାର ସମ୍ପତ୍ତିର ମାଲିକ ହୋଇପାରେ । ସେତେବେଳେ ତା' ମନରେ ଉଚ୍ଚ ଜାତି, ଉଚ୍ଚ କୁଳ ଅଥବା ଉଚ୍ଚ ପଦର ସ୍ମୃତି ନ ରହି ସେ ଶିବବାବାଙ୍କର ଏକ ଶ୍ରେଷ୍ଠ ଶିଶୁ ବୋଲି ଧାରଣା ରହେ । ସେତେବେଳେ ପରମପିତା ପରମାତ୍ମା ଶିବ ତାକୁ ସବୁ ବସ୍ତୁକୁ ପ୍ରୟୋଗ କରିବାପାଇଁ ଆଜ୍ଞା ଦିଅନ୍ତି, ମାତ୍ର ତା'ର କଲ୍ୟାଣ ପାଇଁ ତାକୁ କେତେକ ନିୟମ ପାଳନର ଉପଯୁକ୍ତ ଶିକ୍ଷା ଦିଅନ୍ତି ।

ତେଣୁ ଆପଣ ଯଦି ବର୍ତ୍ତମାନ ନିଜକୁ ବାସ୍ତବରେ ପରମପିତା ପରମାତ୍ମା ଶିବଙ୍କର ସନ୍ତାନ ବୋଲି ଜ୍ଞାନ କରିବେ, ତେବେ ଈଶ୍ୱରୀୟ କୁଳର ମର୍ଯ୍ୟାଦା ରକ୍ଷା ଆପଣଙ୍କ ସ୍ମୃତିରେ ରହିବ । ଯଦି ସବୁ ଶିବବାବାଙ୍କର ଭାବି ନିଜକୁ କେବଳ ନିମିତ୍ତମାତ୍ର ଭାବିବେ, ତେବେ ଏହି ଧାରଣାର ଫଳସ୍ୱରୂପ ଆପଣଙ୍କ ମନରେ ଅହଂକାରଭାବ ଆସିବ ନାହିଁ ।

ଏ ଅବସ୍ଥାରେ ଆପଣଙ୍କର ସ୍ମରଣ ରହିବ ଯେ ପରମପିତା ପରମାତ୍ମା ଶିବ ଯେପରି ପତିତ ସୃଷ୍ଟିକୁ ପାବନ କରିବା ପାଇଁ ଶ୍ରେଷ୍ଠ ସେବା କରୁଛନ୍ତି, ସେହିପରି ବର୍ତ୍ତମାନ ମୁଁ ମଧ୍ୟ ଅଲୌକିକ ସେବା କ୍ଷେତ୍ରରେ ଉପସ୍ଥିତ । ଯେଉଁ ବ୍ୟକ୍ତି ସେବକ ( servant ), ତା'ର ପୁଣି ଅଭିମାନ କ'ଣ ? ସେବାକୁ ଅନ୍ୟର ଅନୁଚିତ କଥା ମଧ୍ୟ ଶୁଣିବାକୁ ପଡ଼େ । ଯେତେବେଳେ

ତ୍ରିଲୋକୀନାଥ ପରମପିତା ପରମାତ୍ମା ଶିବ ଏତେ ନମ୍ର ଏବଂ ନିରହଂକାରୀ ହୋଇ ପରମ ପବିତ୍ର ପରମଧାମରୁ ଏହି ପତିତ ସୃଷ୍ଟିକୁ ଆସିଛନ୍ତି ଏବଂ ନାସ୍ତିକ, ମହାପାପୀ ଏବଂ ଅହଂକାରୀ ଲୋକମାନଙ୍କ ଜ୍ଞାନ ସେବାକରି ସେମାନଙ୍କର କଲ୍ୟାଣ କରିବା ପାଇଁ ସଦା ତତ୍ପର ରହୁଛନ୍ତି, ସେତେବେଳେ ଆମ୍ଭେମାନେ ଅନ୍ୟର କଲ୍ୟାଣ କରିବା ଉଦ୍ଦେଶ୍ୟରେ ସେମାନଙ୍କର ଅନୁଚିତ କଥାକୁ ସହିଯିବା ବିଶେଷ ବଡ଼ କଥା କଣ ? ଶିବବାବା ଏତେ ନିରହଂକାରୀ ଯେ ସେ କହୁଛନ୍ତି—"ମୁଁ ମନୁଷ୍ୟାତ୍ମାରୂପୀ ସନ୍ତାନମାନଙ୍କର ସେବାର୍ଥେ ଏଠାରେ ଉପସ୍ଥିତ ।" ସହନଶୀଳ ନ ହେଲେ ଉଚ୍ଚଶିକ୍ଷା କଦାପି ମିଳେ ନାହିଁ । ସେବକଙ୍କୁ ସର୍ବଦା ସହିବାକୁ ପଡ଼େ ଏବଂ ଅନ୍ୟ ଆଗରେ ନତମସ୍ତକ ହେବାକୁ ପଡ଼େ । ଯେ ଆଜ୍ଞାସୂଚକ ମୁଣ୍ଡ ନୁଆଁଇବା ଜାଣିନାହିଁ, ସ୍ନେହ ଦେଇ ଜାଣି ନାହିଁ, ନମ୍ରତା ଏବଂ ମଧୁରତାକୁ ଧାରଣ କରିପାରି ନାହିଁ, ନିଜର ଅହଂକାରକୁ ବିନାଶ କରିପାରି ନାହିଁ, ସେ କେବେହେଲେ ଅନ୍ୟର ସେବା କରିପାରିବ ନାହିଁ । ଯେ ଅନ୍ୟର ଜ୍ଞାନ ସେବା କରିପାରେ ନାହିଁ, ସେ ସ୍ୱର୍ଗର ରାଜ୍ୟଭାଗ୍ୟ ମଧ୍ୟ ଲାଭ କରି-ପାରିବ ନାହିଁ ।

ଉପରୋକ୍ତ ଧାରଣାଗୁଡ଼ିକୁ ଦୃଢ଼ କରିବାପାଇଁ ଆପଣଙ୍କୁ ସର୍ବଦା ଆତ୍ମିକ ସ୍ଥିତିରେ ରହିବାକୁ ହେବ । ଏଣୁ ପ୍ରଥମ ଦିନର ପାଠକୁ ବାରମ୍ବାର ପୁନରାବୃତ୍ତି କରିବାକୁ ପଡ଼ିବ, କାରଣ ଅହଂକାରର ମୂଳ କାରଣ ହେଉଛି ଦେହ ଅଭିମାନ ଏବଂ ଏଥିରୁ ହିଁ ସବୁ ପାପର ଉତ୍ପତ୍ତି ।

**ଜିଜ୍ଞାସୁ**—ଅହଂକାରର ଦେହ ସହିତ କି ସମ୍ବନ୍ଧ ଅଛି ?

**ଅହଂକାରର ମୂଳ କାରଣ ଦେହ – ଅଭିମାନ ।**

**ବ୍ରହ୍ମାକୁମାରୀ**—ଦେଖନ୍ତୁ, ମନୁଷ୍ୟର ଶାରୀରିକ ବଳ ଏବଂ ଯୌବନ ଇତ୍ୟାଦି ପ୍ରତି ଯେଉଁ ଅଭିମାନ ଥାଏ, ସେଗୁଡ଼ିକୁ ବାସ୍ତବରେ ତ ଦେହ ସହିତ ସମ୍ପୃକ୍ତ । ଧନ-ସମ୍ପତ୍ତି ଏବଂ ଉଚ୍ଚ ପଦ ଇତ୍ୟାଦି ମଧ୍ୟ ଦେହ

ସହିତ ସଂପୃକ୍ତ ଏଗୁଡ଼ିକ ଶରୀର ବ୍ୟତୀତ ଆତ୍ମାର କୌଣସି କାର୍ଯ୍ୟରେ ଲଗନ୍ତି ନାହିଁ । ତେଣୁ ଏଗୁଡ଼ିକର ଆବଶ୍ୟକତା ଏବଂ ସମ୍ପର୍କ ଆତ୍ମା ପକ୍ଷରେ ନିରର୍ଥକ । ସେହିପରି, "ମୁଁ ପିତା, ପତି ଏବଂ ଗୃହର ମାଲିକ"—ଏ ଅଭିମାନ ମଧ୍ୟ ଦେହ ସହିତ ସଂପୃକ୍ତ, କାରଣ ଦୈହିକ ଦୃଷ୍ଟିକୋଣରୁ ପିତା-ପୁତ୍ର ଅଥବା ପତି-ପତ୍ନୀର ସମ୍ବନ୍ଧ ସ୍ଥାପିତ ହୁଏ । ତେଣୁ ମନୁଷ୍ୟକୁ ଦେହଅଭିମାନୀ ( Body-conscious ) ନ ହୋଇ ଆତ୍ମା-ଅଭିମାନୀ ( Soul-conscious ) ହେବା ଉଚିତ । ଆତ୍ମିକ ସ୍ଥିତିରେ ସ୍ଥିତ ହେଲେ ମାନବ ସ୍ୱତଃ ନିରହଙ୍କାରୀ ହୋଇପାରିବ ।

ତେଣୁ ସବୁ ବିକାରମାନଙ୍କଠାରୁ ଦେହ-ଅଭିମାନ ବଡ଼ ଏବଂ ଏହାକୁ ସବୁ ବିକାରଗୁଡ଼ିକର ମୂଳ ବୋଲି କହିଲେ ମଧ୍ୟ ଅଯୁକ୍ତ ହେବ ନାହିଁ । ଯଦିଓ ଲୋକମାନେ ବିକାରର କ୍ରମ ଅନୁସାରେ 'କାମ'କୁ ପ୍ରଥମ ସ୍ଥାନ ଦିଅନ୍ତି, ତଥାପି ବାସ୍ତବ କ୍ଷେତ୍ରରେ 'ଦେହ-ଅଭିମାନ' ସର୍ବପ୍ରଥମ ସ୍ଥାନ ଅଧିକାର କରେ; କାରଣ ଏହି ଦେହ-ଅଭିମାନରୁ ଅନ୍ୟ ବିକାରଗୁଡ଼ିକର ଉତ୍ପତ୍ତି । ଏହି ଦେହ ଅଭିମାନରୁ ମନୁଷ୍ୟ ଯେତେବେଳେ ମୁକ୍ତ ହୁଏ, ସେତେବେଳେ ସେ ସ୍ୱତଃ ବିକାରମୁକ୍ତ ହୁଏ । ସନ୍ନ୍ୟାସୀମାନେ ମଧ୍ୟ ବ୍ରହ୍ମଚର୍ଯ୍ୟର ନିୟମ ପାଳନ କରିବା ସଙ୍ଗେ ସଙ୍ଗେ ଦେହ ଅଭିମାନରୁ ମୁକ୍ତ ହେବାପାଇଁ ଅର୍ଥାତ୍ ଆତ୍ମିକ ସ୍ୱରୂପରେ ସ୍ଥିତ ହେବାପାଇଁ ଅବିରାମ ଉଦ୍ୟମ କରନ୍ତି । ତେଣୁ ଆପଣ ଆତ୍ମା-ସ୍ମୃତିର ଅହରହ ଅଭ୍ୟାସ କରନ୍ତୁ । ଏହା ଫଳରେ ଆପଣ ଅହଙ୍କାରରୁ ମୁକ୍ତ ହେବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ପାପରୁ ମଧ୍ୟ ରକ୍ଷା ପାଇ ପାରିବେ ।

## ଅହଂକାରକୁ ତ୍ୟାଗ କରି ଅଳଙ୍କାର ଧାରଣ କରନ୍ତୁ ।

ଅଭିମାନୀ ମନୁଷ୍ୟକୁ ଦେଖିଲେ ମନେହୁଏ ଯେ ସେ ସୂତାରେ ବନ୍ଧା ହୋଇ ନାଚ କରୁଥିବା ଚମଡ଼ା ନିର୍ମିତ ଏକ କଣ୍ଢେଇ । କିନ୍ତୁ ଜଡ଼ କଣ୍ଢେଇ ସହିତ ଏହାକୁ ତୁଳନା କଲେ ସ୍ପଷ୍ଟ ହୁଏ ଯେ ଜଡ଼ କଣ୍ଢେଇ କେବେହେଲେ

କ୍ଷତିକାରକ ଅଭିନୟ କରେନାହିଁ, କିନ୍ତୁ ଅହଙ୍କାରୀ ମନୁଷ୍ୟର ଅଭିନୟ ଅତ୍ୟନ୍ତ ଅନିଷ୍ଟକର । ତେଣୁ ମନୁଷ୍ୟର ବର୍ତ୍ତମାନ ଅହଙ୍କାରରୂପୀ ଗ୍ରହଣକୁ ତ୍ୟାଗ କରି ବିଷ୍ଣୁଙ୍କ ଅଳଙ୍କାରକୁ ଧାରଣ କରିବା ଉଚିତ । ପବିତ୍ର ବାଣୀର ପ୍ରତୀକ ସ୍ୱ ଦର୍ଶନ-ଚକ୍ର ଏବଂ ବିକାର ଉପରେ ବିଜୟର ପ୍ରତୀକରୂପେ କମଳପୁଷ୍ପ ତଥା ଜ୍ଞାନ-ଗଦା ଧାରଣ କରିବା ତା' ପକ୍ଷେ ବିଧେୟ । ଅହଙ୍କାରର ସ୍ଥାନ ଯଦି ଏହି ଅଳଙ୍କାରଗୁଡ଼ିକ ଅଧିକାର କରିନିଅନ୍ତି, ତେବେ ମାନବ ଦାନବରୁ ଦେବତା ଅଥବା ନରରୁ ଶ୍ରୀନାରାୟଣ ପଦ ଲାଭ କରି ସ୍ୱର୍ଗ-ସୁଖ ଅନୁଭବ କରିପାରିବ ।

## ପରମପିତା ପରମାତ୍ମା ଶିବଙ୍କର ଶୁଭ ସମ୍ମତି

ବର୍ତ୍ତମାନ ପରମପିତା ପରମାତ୍ମା ଶିବ କହୁଛନ୍ତି ଯେ ଆଜି ବିଶ୍ୱରେ ଦେଖାଯାଉଥିବା ବିଭିନ୍ନ ଅଶାନ୍ତିକର ସମସ୍ୟାଗୁଡ଼ିକର ମୂଳ କାରଣ ହେଉଛି ଅହଙ୍କାର । କେହି ନିଜକୁ ସେଠ-ସ୍ୱାମୀ ଭାବି ବସିଛି ତ କିଏ ଧନୀ-ଦାନୀ ଭାବି ବସିଛି । କିଏ ନିଜକୁ ନେତା, କିଏ ବା ଅଭିନେତା ଭାବି ଅଭିମାନ କରୁଛି । ଏହିପରି ସମସ୍ତେ ଅହଙ୍କାରର ବଶୀଭୂତ । ସେମାନେ ଜାଣିନାହାନ୍ତି ଯେ ସତ୍ୟଯୁଗର ଦାସ-ଦାସୀମାନେ ମଧ୍ୟ ଏମାନଙ୍କଠାରୁ ଅଧିକ ସୁଖୀ ଏବଂ ସ୍ୱର୍ଣ୍ଣ-ପ୍ରାସାଦର ଅଧିକାରୀ ଥିଲେ । ସେହି ଦୈବୀ ସୃଷ୍ଟିରେ କେହି କାହାକୁ ଅପମାନିତ କରୁ ନ ଥିଲେ କି କୌଣସି ବସ୍ତୁ ପ୍ରତି କାହାର ଅଭିମାନ ନ ଥିଲା । ନିରଭିମାନୀ ହୋଇଥିବାରୁ ସେମାନଙ୍କର ପ୍ରାରବ୍ଧ ବହୁତ ଉଚ୍ଚ ଥିଲା । ସେହି ଉଚ୍ଚ ସ୍ଥିତିରୁ ଆଜି ଆମର ଅଭିମାନ ଆମ୍ଭମାନଙ୍କୁ ବହୁତ ତଳକୁ ଖସାଇ ଆଣିଛି । ଏହି ନୀଚ ସ୍ଥିତିରେ ମିଳୁଥିବା ତମୋଗୁଣୀ ବସ୍ତୁକୁ ନେଇ ଅଭିମାନ କରିବା ଆମ୍ଭମାନଙ୍କ ପକ୍ଷରେ ମୂର୍ଖତା ବ୍ୟତୀତ ଅନ୍ୟ କିଛି ନୁହେଁ । ଆମ୍ଭମାନଙ୍କର ଭାବିବା ଦରକାର ଯେ ସତ୍ୟଯୁଗର ସ୍ୱର୍ଣ୍ଣ-ମହଲ ତୁଳନାରେ ବର୍ତ୍ତମାନର ମାଟିର କୁଡ଼ିଆ, ସେତେବେଳର ପବିତ୍ରତା ଏବଂ ସୁଖ ଶାନ୍ତିର ମୁକୁଟ ପରିବର୍ତ୍ତେ ବର୍ତ୍ତମାନର କ୍ଷଣସ୍ଥାୟୀ

ନେତା ପଦର ମୁକୁଟ ଏବଂ ସେ ଯୁଗର ପୁଷ୍ପକ ବିମାନ ପରିବର୍ତ୍ତେ ବର୍ତ୍ତମାନର ମଟରକାର ଅଛି ତୁଚ୍ଛ । କାରଣ ଏଗୁଡ଼ିକର ଅଧିକାଂଶ ହେବାପାଇଁ କୌଣସି ନା କୌଣସି ପ୍ରକାରର ଆଶ୍ରୟ ନେବାକୁ ପଡ଼ୁଛି ଏବଂ ଏଥିରେ ମଧ୍ୟ ଗଭୀର ଦୁଃଖ ନିହିତ ରହିଛି । ସତ୍ୟଯୁଗୀ ସ୍ୱର୍ଗ ତୁଲ୍ୟ ଜୀବନ ସହିତ ବର୍ତ୍ତମାନର ଜୀବନକୁ ତୁଳନା କଲେ ଏହା ବାସ୍ତବରେ କଉଡ଼ି ସଦୃଶ୍ୟ । ଏଣୁ ଏଗୁଡ଼ିକ ପାଇଁ ପୁଣି ଅଭିମାନ କାହିଁକି ?

ତେଣୁ ପରମପିତା ପରମାତ୍ମା ଶିବ କହୁଛନ୍ତି—"ହେ ସନ୍ତାନଗଣ, ମୁଁ ଖୁବ୍ କମ୍ ସମୟ ପାଇଁ ଏହି ସୃଷ୍ଟିକୁ ଆସିଛି । ମୁଁ ଅଧିକ ସମୟ ଏଠାରେ ରହିପାରିବି ନାହିଁ, କାରଣ ଶୀଘ୍ର ସତ୍ୟଯୁଗୀ ପବିତ୍ର ଦୁନିଆଁର ସ୍ଥାପନା କାର୍ଯ୍ୟ ସମାପ୍ତ କରି ମୋତେ ମୋ ସ୍ଥାନକୁ ଚାଲି ଯିବାକୁ ହେବ । ତେଣୁ ସାରା ସୃଷ୍ଟି-ଚକ୍ରର ପରିସର ତୁଳନାରେ ମୁଁ କହିପାରେ ଯେ ମୁଁ କିଛିକ୍ଷଣ ପାଇଁ ତୁମ ମନୁଷ୍ୟାତ୍ମାମାନଙ୍କ ସୃଷ୍ଟିକୁ ଆସିଛି । ବର୍ତ୍ତମାନ ଶ୍ରେଷ୍ଠ ବଡ଼ ସମସ୍ତଙ୍କ ମୁଣ୍ଡ ଉପରେ କାଳ ଦଣ୍ଡାୟମାନ, ଅର୍ଥାତ୍ ସମସ୍ତେ ବର୍ତ୍ତମାନ ମୃତ୍ୟୁର ପ୍ରାୟ । ଏମାନଙ୍କର ବିନାଶ ପାଇଁ ଅଧିକ ସମୟର ଆବଶ୍ୟକତା ନାହିଁ । ତେଣୁ ଯେତେବେଳେ ଏହି ସଂସାରରେ ଅଗ୍ନି ଲାଗିବ, ଅର୍ଥାତ୍ ବିନାଶର କରାଳ ବିଭୀଷିକା ତୁମ ସମ୍ମୁଖରେ ଦେଖାଦେବ, ସେତେବେଳେ ତୁମେ କୌଣସି ଉଦ୍ୟମ କରିପାରିବ ନାହିଁ । ବର୍ତ୍ତମାନ ଅଛି ଅଳ୍ପ କ୍ଷଣ ମାତ୍ର ତୁମର ପୁରୁଷାର୍ଥ ପାଇଁ ରହିଛି । ତେଣୁ 'ମୁଁ ନେତା, ବିଦ୍ୱାନ, ସେଠ, ବଳ୍ପରଶୀଳ' ଇତ୍ୟାଦି—ଏ ଅଭିମାନ ତ୍ୟାଗ କର । ବର୍ତ୍ତମାନ ତୁମର ସବୁ ମୋତେ ଅର୍ପଣ କରି ତୁମେ ନିମିତ୍ତ ( Trustee ) ହୋଇ କର୍ମ ସମ୍ପାଦନ କର । ଦେହ-ଅଭିମାନ ଏବଂ ଅହଙ୍କାର ତ୍ୟାଗକରି ସର୍ବସ୍ୱ ସହିତ ମୋର ହୋଇଯାଅ, ତେବେ ମୋର ସବୁ ସ୍ୱତଃ ତୁମର ହୋଇଯିବ । ଏପରି ଏକ ଶସ୍ତା ଏବଂ ଲାଭଜନକ ଧନପ୍ରାପ୍ତିକୁ ତୁମେ କ'ଣ ଅସ୍ୱୀକାର କରୁଛ ?

ଭଗବାନ କହୁଛନ୍ତି—"ହେ ବତ୍ସ, ମୁଁ ଗୁପ୍ତ ବେଶରେ ମୋର ସନ୍ତାନପ୍ରତିମ ତୁମ୍ଭମାନଙ୍କୁ ଭେଟିବା ପାଇଁ ଏବଂ ତୁମ୍ଭମାନଙ୍କୁ ଯୋଗ୍ୟ କରି

ସ୍ୱର୍ଗର ରାଜ୍ୟ ଅଧିକାରୀରୂପେ ଗଢ଼ିବା ପାଇଁ ଆସିଛି । ତେଣୁ ବର୍ତ୍ତମାନ ଅଭିମାନରୂପୀ ସ୍ୱପ୍ନକୁ ତ୍ୟାଗକରି ତୁମେ ନିଜକୁ ଈଶ୍ୱରୀୟ ସନ୍ତାନ ବୋଲି ଜ୍ଞାନ କର । ଏହାପରେ ତୁମେ ମନ୍ ମନ୍ଭ୍ ମୋତେ ଅର୍ପଣ କରିବ ଏବଂ ନିଜକୁ ନିମିତ୍ତ ଏବଂ ଆଜ୍ଞାକାରୀ ସନ୍ତାନ ଭାବି କର୍ମ ସମ୍ପାଦନ କରିବ, ତେବେ ତୁମ୍ଭମାନଙ୍କ ପାଇଁ ମୁକ୍ତିଧାମ ଏବଂ ସ୍ୱର୍ଗର ଦ୍ୱାର ମୁଁ ଖୋଲିଦେବି । ବର୍ତ୍ତମାନ କେବଳ ଏହି ଶୁଦ୍ଧ ଅଭିମାନ ରଖ କି—"ମୁଁ ତ୍ରିଲୋକୀନାଥ ସର୍ବଶକ୍ତିମାନ, ପତିତପାବନ, ସୁଖଦାତା, ପରମପିତା ପରମାତ୍ମାଙ୍କର ସନ୍ତାନ ଅଟେ ଏବଂ ବର୍ତ୍ତମାନ ମୁଁ ମାନବରୁ ଦେବତା ହେବାକୁ ଯାଉଛି ।"

କିମ୍ବଦନ୍ତୀ ଅଛି ଯେ, ଏକଦା ଗୋଟିଏ ହାତୀକୁ ଗୋଟିଏ କୁମ୍ଭୀର କରଗତ କରିଥିଲା ଏବଂ ସେହି କୁମ୍ଭୀରଠାରୁ ନିଜକୁ ରକ୍ଷା କରିବା ପାଇଁ ଅସମର୍ଥ ହୋଇ ହାତୀ ଭଗବାନଙ୍କର ଶରଣ ନେଲା । ସେତେବେଳେ ଭଗବାନ ସ୍ୱ-ଦର୍ଶନ ଚକ୍ର ପ୍ରେରଣ କରି ତାକୁ ଉଦ୍ଧାର କରିଥିଲେ । ବାସ୍ତବରେ ଜ୍ଞାନବାନ୍ ମାନବ ହିଁ ଗଜ ଏବଂ ମାୟା ଅଥବା ଅହଙ୍କାର ହେଉଛି କୁମ୍ଭୀର ଏବଂ ସ୍ୱ-ଦର୍ଶନ ଚକ୍ର ହେଉଛି ଆତ୍ମା ଏବଂ ସୃଷ୍ଟିଚକ୍ରର ଜ୍ଞାନର ପ୍ରତୀକ । ଯେତେବେଳେ ମନୁଷ୍ୟ ଜ୍ଞାନର ଅହଂକାର କବଳକୁ ଚାଲିଆସେ ସେତେବେଳେ ମାୟାରୂପୀ କୁମ୍ଭୀର ତାକୁ ଆବୃତ୍ତ କରେ । ସେତେବେଳେ ଯଦି ସେ ଭଗବାନଙ୍କର ଶରଣାପନ୍ନ ହୁଏ, ତେବେ ସେ ଅହଙ୍କାରରୁ ମୁକ୍ତ ହୋଇପାରେ ନଚେତ୍ ଅନ୍ୟ କୌଣସି ଉପାୟରେ ତାହା ସମ୍ଭବ ନୁହେଁ ।

ମନୁଷ୍ୟ ତା'ର ଧନ, କୁଳ, ପଦ, ଶାରୀରିକ ବଳ ଏବଂ ବିଦ୍ୟା ଇତ୍ୟାଦିର ଅଭିମାନ ନ କରି ସର୍ବଦା ତା'ର ଆତ୍ମସମ୍ମାନ ପ୍ରତି ଦୃଷ୍ଟି ଦେଇ କହିବା ଉଚିତ—"ମୁଁ ଜ୍ଞାନ, ଶାନ୍ତି ଆନନ୍ଦ ଏବଂ ପ୍ରେମର ସାଗର ପରମାତ୍ମାଙ୍କର ସନ୍ତାନ । ମୁଁ 'ଜ୍ଞାନ ଏବଂ ଯୋଗଦ୍ୱାରା ନରରୁ ନାରାୟଣ ହେବାକୁ ଯାଉଛି । ଅନ୍ୟ ସମସ୍ତ ପ୍ରକାର ମିଥ୍ୟା ଏବଂ ଅଳ୍ପକାଳର ନିଶା

ଅପେକ୍ଷା ଏହି 'ନାରାୟଣୀ ନିଶା' ଅନେକ ଗୁଣରେ ଭଲ, କାରଣ ଏହି ନିଶା ବଳରେ ମନୁଷ୍ୟ ଅନ୍ୟର କ୍ଷତି କରେ ନାହିଁ । ଅନ୍ୟ କୌଣସି ପ୍ରକାର ଗର୍ବ ନ କରି ଦେବତାକୂଳର ଗୌରବକୁ ସ୍ମରଣ କରିବା ବହୁତ ଭଲ । ଯଦିଓ ଲୋକମାନେ ଏହାକୁ ବିକାର-ତାଲିକାରେ ଶେଷ ସ୍ଥାନ ଦେଇଛନ୍ତି, ବାସ୍ତବ କ୍ଷେତ୍ରରେ ଏହାର ସ୍ଥାନ ପ୍ରଥମ ।

ଆଚ୍ଛା, ବର୍ତ୍ତମାନଠାରୁ ଏହି ଉଦ୍ୟମକୁ ବଢ଼ାନ୍ତୁ । ଅସନ୍ତାକାଲି ଆପଣଙ୍କ ସ୍ଥିତିର ଅନୁଭୂତି କହିବେ । ଯଦି କଠିନ ଅନୁଭବ ହୁଏ, ତେବେ ତାହା ମଧ୍ୟ କହିବେ । ଆଚ୍ଛା, ଓଁ ଶାନ୍ତି ।

ଜିଜ୍ଞାସୁ—ଓଁ ଶାନ୍ତି ।



# ଅନ୍ନ-ଦୋଷରୁ ରକ୍ଷା ପାଇବାର ପ୍ରକୃତ ପନ୍ଥା

ଅନ୍ନ-ଦୋଷ ଏବଂ ସଙ୍ଗ-ଦୋଷ ସବୁଠାରୁ ଦୁଇଟି ବଡ଼ ଦୋଷ ବୋଲି ସମସ୍ତେ କହନ୍ତି । ଏହି ଦୋଷଦ୍ୱୟର ପ୍ରଭାବ ମନ ଉପରେ ଶୀଘ୍ର ପଡ଼େ । ତେଣୁ ଯେଉଁ ବ୍ୟକ୍ତି ଭଗବାନଙ୍କଠାରୁ ପବିତ୍ରତାରୂପୀ ବରଦାନ ପ୍ରାପ୍ତ କରିବାପାଇଁ ସର୍ବଦା ଅଭିଳାଷୀ, ସର୍ବଦା ନିଜର ଆହାର ଶୁଦ୍ଧି ପ୍ରତି ବିଶେଷ ଧ୍ୟାନ ଦେବା ଦରକାର । ଯୋଗୀ ଏବଂ ଭୋଗୀର ଆହାର ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି, କାରଣ ଯୋଗୀ ଶାନ୍ତି, ଶୀତଳତା, ସାତ୍ତ୍ୱିକ ବୃତ୍ତିକୁ ଧାରଣ କରି ପରମ ପବିତ୍ର ପରମାତ୍ମାଙ୍କର ସ୍ମୃତିରେ ସ୍ଥିତ ହେବାପାଇଁ ଲକ୍ଷ୍ୟ ରଖୁଥିବା ସ୍ଥଳେ ଭୋଗୀ ମାନବ ବିଷୟ-ବିକାରର କ୍ଷଣଭଙ୍ଗୁର ସୁଖପ୍ରାପ୍ତ କରିବାକୁ ଚାହେଁ । ଏଣୁ ଯେଉଁ ମାନବ ଏହି ଜନ୍ମରେ ପବିତ୍ରତାର ସିଢ଼ି ଆରୋହଣ କରି ଭଗବାନଙ୍କ ନିକଟରେ ପହଞ୍ଚିବା ପାଇଁ ଇଚ୍ଛା କରେ, ତାକୁ ଅପବିତ୍ର ବସ୍ତୁଗୁଡ଼ିକୁ ପରିତ୍ୟାଗ କରିବାକୁ ହେବ । ଏଥିପାଇଁ ସେ ସର୍ବପ୍ରଥମେ ଶୁଦ୍ଧ ଭୋଜନର ମହତ୍ତ୍ୱ ଉପଲବ୍ଧି କରିବା ଦରକାର । ଶୁଦ୍ଧ ଭୋଜନ ସମ୍ବନ୍ଧରେ ଏହି ଅଧ୍ୟାୟ ସମ୍ବନ୍ଧିତ ।

**ବ୍ରହ୍ମାକୁମାରୀ**—ଗତକାଲି ଆପଣ କହିଥିଲେ ଯେ, ଆପଙ୍କର ପୁରୁଷାର୍ଥରେ ଆଉ କେତେକ ଅସୁବିଧା ଦେଖାଦେଉଛି । ସେସବୁ କ'ଣ କହିବେ କି ?

**ଜିଜ୍ଞାସୁ**—ହଁ ଭଉଣୀ, ବାସ୍ତବରେ ମୋତେ କିଛି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଛି । ପ୍ରଥମତଃ ଅନ୍ନର ସାତ୍ତ୍ୱିକତା ବିଷୟରେ ଆପଣ ଯେଉଁ ନିୟମଗୁଡ଼ିକ ମୋତେ କହିଛନ୍ତି, ସେଗୁଡ଼ିକୁ ଯଥାର୍ଥ ଭାବରେ ପାଳନ କରିବାପାଇଁ କେତେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଛି ।

ଯେତେବେଳେ ମୁଁ ଦେଖୁଛି ଦୁନିଆଁର ଲୋକମାନେ ସବୁକିଛି ଖିଆପିଆ କରୁଛନ୍ତି, ସେତେବେଳେ ଏହି ନିୟମଗୁଡ଼ିକୁ ବନ୍ଧନ ଭଳି ଅନୁଭବ କରୁଛି । ଭଉଣୀ, ଏ ନିୟମକୁ ପାଳନ କରିବା କ'ଣ ଏତେ ଆବଶ୍ୟକ ?

## ଅନ୍ନର ପ୍ରଭାବ ମନ ଉପରେ ପଡ଼େ ।

ବ୍ରହ୍ମାକୁମାରୀ—ବାସ୍ତବରେ ଅନୁଭୂତ ହୁଏ ଯେ ମନୁଷ୍ୟର ଖାଦ୍ୟ ତା'ର ବିଚାର ଓ ଆଚାର-ବ୍ୟବହାର ସହିତ ଅତି ଗଭୀରଭାବେ ସମ୍ବନ୍ଧିତ । ଏଣୁ ଯେଉଁ ମାନବ ନିଜର ବିଚାର ( Thought ) ଏବଂ ଆଚାର ( Character )କୁ ଶ୍ରେଷ୍ଠ କରିବାପାଇଁ ଇଚ୍ଛା କରେ, ତା'ପକ୍ଷେ ରଜୋଗୁଣୀ ଏବଂ ତମୋଗୁଣୀ ଖାଦ୍ୟ ସର୍ବଦା ତ୍ୟାଜ୍ୟ, ଅର୍ଥାତ୍ ସତୋଗୁଣୀ ଆହାର ଏକମାତ୍ର ଭୋଗ୍ୟ । ତେଣୁ କିମ୍ବଦନ୍ତୀ ରହିଛି ଯେ—"ଯେପରି ଅନ୍ନ, ସେପରି ମନ" ଅଥବା "ଯେପରି ପାଣି, ସେପରି ବାଣୀ ।" ଯଦି ଜଣେ ସତୋଗୁଣୀ ଆହାର ପାଇଁ ବିଶେଷ ଧ୍ୟାନ ଦିଏ ତେବେ ତାର ମନ ନିର୍ବିକାର, ବାଣୀ ପବିତ୍ର ଏବଂ ବୁଦ୍ଧି ଶ୍ରେଷ୍ଠ ହୋଇପାରିବ ଏବଂ ସ୍ୱତଃ ସେ ପରମାତ୍ମାଙ୍କ ସହ ମଗ୍ନ ହୋଇପାରିବ । ଦେଖାଯାଏ ଯେ ତମୋଗୁଣୀ ଆହାରଦ୍ୱାରା ବିଚାର ମଧ୍ୟ ତମୋଗୁଣୀ ହୁଏ ଏବଂ ରଜୋଗୁଣୀ ଆହାର ଦ୍ୱାରା ମନ ମଧ୍ୟ ଚଞ୍ଚଳ ହୁଏ ଏବଂ ବ୍ୟବହାର ବହୁତ ନୀଚ ହୁଏ, ଯାହାର ପରିଣାମସ୍ୱରୂପ ମାନବକୁ ଦୁଃଖ ଏବଂ ଅଶାନ୍ତି ଭୋଗ କରିବାକୁ ପଡ଼େ ଏବଂ ଯୋଗରୁ ଲାଭ ହେଉଥିବା ଅପାର ଆନନ୍ଦରୁ ବଞ୍ଚିତ ହେବାକୁ ପଡ଼େ ।

## ମାଦକ ତଥା ତମୋଗୁଣୀ ପଦାର୍ଥର ଖରାପ ପ୍ରଭାବ ସର୍ବଦା ମନ ଉପରେ ପଡ଼େ ।

ଆପଣ ଦେଖିବେ ଯେ ଯେତେବେଳେ କୌଣସି ବ୍ୟକ୍ତି ମଦ୍ୟପାନ କରିବା କିମ୍ବା ଅନ୍ୟ କୌଣସି ମାଦକ ଦ୍ରବ୍ୟ ସେବନ କରିବା ପରେ ତାକୁ ସେ ବସ୍ତୁର ନିଶା ହୁଏ, ସେହି ସମୟରେ ତାର ବୁଦ୍ଧିରେ ସମତା ରହିପାରେ

ନାହିଁ । ଫଳରେ ତା'ର ବିଗ୍ରହ ଶକ୍ତି ଏବଂ ନିର୍ଣ୍ଣୟ ଶକ୍ତି ଠିକ୍‌ଭାବେ କାର୍ଯ୍ୟ ସମ୍ପାଦନ କରିପାରେ ନାହିଁ । ସେ ସମୟରେ ସେ ଶାନ୍ତିରେ ରହିପାରେ ନାହିଁ ଏବଂ ଛୋଟ ଛୋଟ କଥାରେ କ୍ରୋଧାନ୍ୱିତ ହୋଇ ଗଣ୍ଡଗୋଳ କରିବାପାଇଁ ଆଗଭର ହୁଏ । ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ମଦ୍ୟପାନଦ୍ୱାରା ମନୁଷ୍ୟର ବିଗ୍ରହ ଏବଂ ଆଗ୍ରହ ସ୍ୱତଃ ଭ୍ରଷ୍ଟ ହୁଏ । ଯେପରି ମଦର ପ୍ରଭାବ ମନୁଷ୍ୟର ମନ, ବଚନ ଏବଂ କର୍ମ ଉପରେ ପଡ଼େ, ସେହିପରି ଆମ୍ଭେମାନେ ଯେଉଁ ଅନ୍ନ ( ଖାଦ୍ୟ ) ଭୋଜନ କରୁଛେ, ତା'ର ଭଲ ଅଥବା ମନ୍ଦ, ସାମାନ୍ୟ ଅଥବା ଗମ୍ଭୀର, କମ୍ ଅଥବା ବେଶୀର ପ୍ରଭାବ ଆମ୍ଭମାନଙ୍କର ମନ ଉପରେ ଅବଶ୍ୟ ପଡ଼େ । ଏସବୁ ବିଷୟକୁ ସମ୍ମୁଖରେ ରଖି ଜ୍ଞାନ-ଯୋଗର ଅଭ୍ୟାସ କରିଥିବା ବ୍ୟକ୍ତି ଜ୍ଞାନ-ଯୋଗର ସହଜ ଏବଂ ଶ୍ରେଷ୍ଠ ପୁରୁଷାର୍ଥ ନିମିତ୍ତ ଉପଯୁକ୍ତ ଭୋଜନ ନିର୍ଣ୍ଣୟ କରିନେବା ଉଚିତ ।

ମଦ୍ୟପାନର ପ୍ରଭାବ ମନୁଷ୍ୟ ପକ୍ଷେ କ୍ଷତିକାରକ ହୋଇଥିବାରୁ ଅର୍ଥାତ୍ ମନୁଷ୍ୟର ମନକୁ ଦୂଷିତ କରୁଥିବାରୁ କେତେକ ପ୍ରାଦେଶିକ ସରକାର ନିଶାନିବାରଣ ନିୟମ ପ୍ରଚଳିତ କରିଛନ୍ତି ଏବଂ ମଦ ଇତ୍ୟାଦି ମାଦକ ଦ୍ରବ୍ୟ ଉପରେ କେତେକ କଟକଣା ମଧ୍ୟ ଜାରି କରିଛନ୍ତି । ବାସ୍ତବରେ ମାନବ ଜୀବନ ପକ୍ଷେ ଏହା ଅନୁକୂଳ ଆହାର ଅଥବା ପାନୀୟ ପଦାର୍ଥ ନୁହେଁ । ଯେପରି ମଦ ଏବଂ ଅନ୍ୟାନ୍ୟ ମାଦକ ଦ୍ରବ୍ୟ ସେବନ କରିବାଦ୍ୱାରା ମନ ଉପରେ ଖରାପ ପ୍ରଭାବ ପଡ଼େ ଏବଂ କ୍ରୋଧ ଓ ଅଶାନ୍ତିର ବାତାବରଣ ସ୍ୱତଃ ସୃଷ୍ଟି ହୋଇଯାଏ; ସେହିପରି ମାଂସ, ଅଣ୍ଡା ଇତ୍ୟାଦି ଭୋଜନ କରିବାଦ୍ୱାରା ମନୁଷ୍ୟ ମନରେ ଉତ୍ତେଜନା ଏବଂ ବିଭିନ୍ନ ବିକାର ସୃଷ୍ଟି ହୁଏ । ମଦ୍ୟପର ଯେପରି ନିଜର ମାନସିକ ଭାରସାମ୍ୟ ରହେନାହିଁ, ସେହିପରି ତମୋଗୁଣୀ ଭୋଜନ ଗ୍ରହଣ କରୁଥିବା ବ୍ୟକ୍ତିର ସ୍ମରଣ ମଧ୍ୟ ରହେ ନାହିଁ ଯେ ସେ ବାସ୍ତବରେ କିଏ, ଏହି ସଂସାରରୂପୀ ରଙ୍ଗମଞ୍ଚ ଉପରକୁ ସେ କେଉଁଠାରୁ ଆସିଛି, ତାକୁ କ'ଣ କରିବାକୁ ହେବ ଏବଂ ନାଟକ ଶେଷ ହେବା ପରେ ତାକୁ କେଉଁଠାକୁ ଯିବାକୁ ପଡ଼ିବ ? ତେଣୁ ଆତ୍ମିକ ସ୍ୱରୂପରେ ସ୍ଥିତ ହେବାପାଇଁ ପରମପିତା ପରମାତ୍ମାଙ୍କର ସ୍ମୃତିରେ ସଦା

ମଗ୍ନ ରହିବା ପାଇଁ ତଥା ମନକୁ ବିକାର-ମୁକ୍ତ ରଖିବାପାଇଁ ସତୋଗୁଣୀ ଭୋଜନ ସର୍ବଦା ଗ୍ରହଣୀୟ । ଆଜି ପ୍ରତ୍ୟେକ ମନୁଷ୍ୟ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଏକ ରୋଗୀ । ତେଣୁ ନିଜର ଭୋଜନ ବିଷୟରେ ତା'ର ବିଶେଷ ଧ୍ୟାନ ଦେବା ଦରକାର ।

ଜିଜ୍ଞାସୁ—ଆମ୍ଭମାନଙ୍କର ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ରୋଗୀ ଜୀବନ ଏବଂ ଖାଦ୍ୟ ପ୍ରତି ବିଶେଷ ଧ୍ୟାନ ଦେବାର ଆବଶ୍ୟକତା କ'ଣ ?

**ଯେପରି ରୋଗୀପାଇଁ ଖାଦ୍ୟ ବିଷୟରେ ଯତ୍ନ ନେବା ଆବଶ୍ୟକ, ସେହିପରି ଯୋଗୀପାଇଁ ମଧ୍ୟ ଖାଦ୍ୟ ବିଷୟରେ ଯତ୍ନ ନେବା ଆବଶ୍ୟକ**

ବ୍ରହ୍ମାକୁମାରୀ—କାମ, କ୍ରୋଧ, ଲୋଭ, ମୋହ ଏବଂ ଅହଙ୍କାର ଇତ୍ୟାଦି ବିକାରଗୁଡ଼ିକ ଆତ୍ମାର ଗୋଟିଏ ଗୋଟିଏ ବଡ଼ ରୋଗ, ଯେଉଁ କାରଣରୁ କି ଆଜି ମାନବ ଦୁଃଖୀ ହୋଇଛି । ଏହି ରୋଗରୁ ମୁକ୍ତ ହୋଇ ସମ୍ପୂର୍ଣ୍ଣ ସୁଖ-ଶାନ୍ତି ଲାଭ କରିବାପାଇଁ ମାନବ ଆଜି ଦୁଃଖହର୍ତ୍ତା-ସୁଖକର୍ତ୍ତା ଆତ୍ମିକ ସର୍ଜନ (ଚିକିତ୍ସକ) ପରମପିତା ପରମାତ୍ମାଠାରୁ ଈଶ୍ୱରୀୟ ଜ୍ଞାନରୂପୀ ଔଷଧ ଏବଂ ଯୋଗରୂପୀ ଇଞ୍ଜେକ୍‌ସନ୍ ନେଉଛି । ଏଣୁ ଯେପରି ଶାରୀରିକ ରୋଗରେ ପୀଡ଼ିତ ଥିବା ମନୁଷ୍ୟ ଖାଦ୍ୟ ସମ୍ବନ୍ଧୀୟ କେତେକ ଉପଚାର ଏବଂ ସାବଧାନତା ଗ୍ରହଣ କରେ ଏବଂ ବର୍ଜିତ ବସ୍ତୁକୁ ଉପଭୋଗ କରେ ନାହିଁ, ସେହିପରି ଏହି ବିକାରରୂପୀ ରୋଗଦ୍ୱାରା ପୀଡ଼ିତ ଥିବା ମାନବ ମଧ୍ୟ ତା'ର ଖାଦ୍ୟ ପ୍ରତି ବିଶେଷ ସାବଧାନତା ରହିବା ଦରକାର, ଅର୍ଥାତ୍ ସର୍ବଦା ସାତ୍ତ୍ୱିକ ଭୋଜନ ଗ୍ରହଣ କରିବା ଉଚିତ । ନଚେତ୍ ସେ ଈଶ୍ୱରୀୟ ଜ୍ଞାନ ଏବଂ ଯୋଗରୁ ସମ୍ପୂର୍ଣ୍ଣ ଲାଭ ପ୍ରାପ୍ତି କରିପାରିବ ନାହିଁ । ଆଜି ଅନେକ ବ୍ୟକ୍ତି ଈଶ୍ୱରୀୟ ଜ୍ଞାନ ଶୁଣୁଛନ୍ତି ଏବଂ ଯୋଗାଭ୍ୟାସ ମଧ୍ୟ କରୁଛନ୍ତି ସତ, କିନ୍ତୁ ସେମାନଙ୍କ ଜୀବନରେ କୌଣସି

ବିଶେଷ ପରିବର୍ତ୍ତନ ନାହିଁ । ସେମାନଙ୍କର ମାନସିକ ସ୍ଥିତି ଶୀତଳ ଏବଂ ଶାନ୍ତ ହୋଇପାରୁ ନାହିଁ ଏବଂ ସେମାନଙ୍କର ମନ ମଧ୍ୟ ପରମାତ୍ମା ସ୍ମୃତିରେ ମଗ୍ନ ହୋଇ ପାରୁନାହିଁ । ଦେଖାଯାଇଛି ଯେ ଏପରି ଦଶାରେ ପୀଡ଼ିତ ଥିବା ମାନବ କେବେହେଲେ ତାର ଆହାର ଶୁଦ୍ଧି ପ୍ରତି କୌଣସି ଧ୍ୟାନ ଦେଇପାରିନାହିଁ । ପୂର୍ବକାଳରେ ଲୋକମାନେ ସେମାନଙ୍କର ଖାଦ୍ୟ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ ।

ଜିଜ୍ଞାସୁ- ମୋର ମନ ମଧ୍ୟ କହୁଛି ଯେ ସାତ୍ତ୍ୱିକ ଅନ୍ନ ହିଁ ଗ୍ରହଣ କରିବା ଉଚିତ । ମୁଁ ଏକ ଶ୍ରେଷ୍ଠ ସୀମାରେଖା ମଧ୍ୟରେ ଏହାର ନିୟମ ପାଳନ କରୁଛି । ବାସ୍ତବରେ ମୁଁ ବୁଝିପାରୁ ନାହିଁ ଯେ ଅନ୍ନର ପ୍ରଭାବ ମନ ଉପରେ କିପରି ପଡ଼ୁଛି ? କେତେଥର ମନରେ ପ୍ରଶ୍ନ ଉଠୁଛି ଯେ ଅନ୍ନ ପ୍ରକୃତିକୃତ ସ୍ଥୂଳ ପଦାର୍ଥ ହୋଇଥିବା ସ୍ଥଳେ ମନ ପ୍ରକୃତିକୃତ ନୁହେଁ, ମାତ୍ର ଆତ୍ମାର ସଙ୍କଳ୍ପ, ବିଚାର ଅଥବା ଅନୁଭବ ଆଦି ଯୋଗ୍ୟତାର ନାମ ଅଟେ । ତେଣୁ ପ୍ରକୃତିକୃତ ଅନ୍ନର ପ୍ରଭାବ ଶରୀର ଉପରେ ପ୍ରତିଫଳିତ ହେବା ସ୍ୱାଭାବିକ, ପରନ୍ତୁ ଏହାର ପ୍ରଭାବ ଏକ ସୂକ୍ଷ୍ମ ଏବଂ ଚେତନ ଆତ୍ମା ଉପରେ କିପରି ସମ୍ଭବ ?

## ଅନ୍ନର ପ୍ରଭାବ ମନ ଉପରେ କିପରି ପଡ଼େ ?

ବ୍ରହ୍ମାକୁମାରୀ—ଆପଣଙ୍କୁ କୁହାଯାଇଛି ଯେ ଆତ୍ମା ଯଦିଓ ଏକ ଚେତନ ଜ୍ୟୋତିର୍ବିନ୍ଦୁ ଏବଂ ଭ୍ରୂକୁଟୀଦ୍ୱୟର ମଧ୍ୟଭାଗ ହେଉଛି ଏହାର ନିବାସସ୍ଥାନ, ତଥାପି ମାନବର ମସ୍ତିଷ୍କ ସହିତ ଏହାର ସମ୍ବନ୍ଧ ରହିଛି । ଆପଣ ଜାଣିଥିବେ ଯେ ମସ୍ତିଷ୍କ ହେଉଛି ସାରା ଶରୀରର ନିୟନ୍ତ୍ରଣାଗାର ( Control room ) ଏବଂ ଏହା ନିର୍ଦ୍ଦେଶବାହକ ସ୍ନାୟୁ ( Sensory nerves ) ଓ ଚାଳକ-ସ୍ନାୟୁ ( Motor nerves ) ଦ୍ୱାରା ଶରୀରର ପ୍ରତ୍ୟେକ ଅଂଶ ସହିତ ସମ୍ବନ୍ଧିତ । ତେଣୁ ଆପଣ ମନେରଖିବା ଦରକାର ଯେ ଆତ୍ମା

ଶରୀରରେ ଅବସ୍ଥାନ କରୁଥିବାବେଳେ ଏହି ମସ୍ତିଷ୍କ ମାଧ୍ୟମରେ ହିଁ କର୍ମ ସମ୍ପାଦନ କରେ ଅଥବା ସୁଖ-ଦୁଃଖ ଭୋଗ କରେ ।

ଯେଉଁସବୁ ଖାଦ୍ୟ ଆମ୍ଭେମାନେ ଭୋଜନ କରୁଛେ ତା'ର ବିଶେଷ ପ୍ରଭାବ ଆମ୍ଭମାନଙ୍କର ମସ୍ତିଷ୍କ ଏବଂ ସ୍ନାୟୁଗୁଡ଼ିକ ଉପରେ ପଡ଼େ ଏବଂ ଏହାଦ୍ୱାରା ମସ୍ତିଷ୍କ ଆମ୍ଭ ମନକୁ ଅର୍ଥାତ୍ ଆତ୍ମାକୁ ପ୍ରଭାବିତ କରେ । ଉଦାହରଣସ୍ୱରୂପ, ଯେପରି ମଦ୍ୟପାନ କରିବା ଫଳରେ ତା'ର ଏପରି ପ୍ରଭାବ ମସ୍ତିଷ୍କ ଉପରେ ପଡ଼େ ଯେ ଆତ୍ମା ସେହି ପ୍ରଭାବ ବଳରେ ନିଶା ଏବଂ ଉତ୍ତେଜନା ଅନୁଭବ କରେ, ସେହିପରି ଅନ୍ୟ ପ୍ରତ୍ୟେକ ପଦାର୍ଥ ମଧ୍ୟ ତା'ର କିଛି ନା କିଛି ପ୍ରଭାବ ମନ ଉପରେ ପକାଏ ଯେତେବେଳେ ଆପଣ ବୁଝିପାରିବେ ଯେ ମସ୍ତିଷ୍କଦ୍ୱାରା ଆତ୍ମା ଶରୀରର ଅଙ୍ଗପ୍ରତ୍ୟଙ୍ଗକୁ ପରିଚାଳନା କରେ ଏବଂ ସେଗୁଡ଼ିକଦ୍ୱାରା କାର୍ଯ୍ୟ ସମ୍ପାଦନ କରେ ଏବଂ ମସ୍ତିଷ୍କ ମାଧ୍ୟମରେ ଆତ୍ମା ସବୁକିଛି ଅନୁଭବ କରେ, ତେବେ ଆପଣ ସ୍ପଷ୍ଟ ଭାବରେ ଜାଣିପାରିବେ ଯେ ଅନ୍ନର ପ୍ରଭାବ ସ୍ୱତଃ ମନ ଉପରେ ପଡ଼େ । ରାଜସିକ ତଥା ତାମସିକ ଆହାର ଯୋଗୁଁ ମନୁଷ୍ୟ ମନରେ ଉତ୍ତେଜନା ସୃଷ୍ଟି ହୁଏ ତଥା ଚିତ୍ତର ମନ୍ଦ, ମଳିନ ଏବଂ ଅସ୍ଥାୟୀ ହୁଏ ।

**ଜିଜ୍ଞାସୁ**—ବର୍ତ୍ତମାନ ମୁଁ ଠିକ୍ ଭାବରେ ବୁଝିପାରିଲି ଯେ ଅନ୍ନର ପ୍ରଭାବ ମନ ଉପରେ ସର୍ବଦା ପ୍ରତିଫଳିତ ହୁଏ, କିନ୍ତୁ ଏ ବିଷୟରେ ମୋ ମନରେ ଅନ୍ୟ ଏକ ପ୍ରଶ୍ନ ଆସୁଛି । ମୁଁ ଦେଖୁଛି ଯେ ଅଣ୍ଡା ଏବଂ ମାଂସ ଭୋଜନ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ କେତେକ ବ୍ୟକ୍ତି ବହୁତ ଶାନ୍ତ ଓ ସରଳ ହୋଇଥିବା ସ୍ଥଳେ କେତେକ ଶାକାହାରୀ ମନୁଷ୍ୟ ତା'ର ବିପରୀତ । କେତେକ ଶାକାହାରୀ ବ୍ୟକ୍ତିମାନଙ୍କର ଦୃଷ୍ଟି-ବୃତ୍ତି ଏତେ ଖରାପ ଯେ ଯାହାକି ଏକ ମାଂସାହାରୀ ବ୍ୟକ୍ତିଠାରେ ପରିଲକ୍ଷିତ ହୁଏ ନାହିଁ । ଏହାର କାରଣ କ'ଣ ? କେତେକ ବ୍ୟକ୍ତିମାନଙ୍କ ମନରେ ଅନ୍ନର କଣ କୌଣସି ପ୍ରଭାବ ପଡ଼େନାହିଁ କି ? ଉପରୋକ୍ତ ନିୟମରେ କ'ଣ କିଛି ବ୍ୟତିକ୍ରମ ( Exceptions ) ହୋଇପାରେ କି ?

## ଏକ ଦୃଷ୍ଟାନ୍ତ

**ବ୍ରହ୍ମାକୁମାରୀ**—ଆପଣଙ୍କର ପ୍ରଶ୍ନ ଶୁଣି ମୋର ଗୋଟିଏ ଦୃଷ୍ଟାନ୍ତ ମନେପଡ଼ୁଛି । ଗୋଟିଏ ଗାଁରେ ଜଣେ କୃଷକ ବାସ କରୁଥିଲା । ସେ ରୋଟି ସହିତ ତରକାରି ନ ଖାଇ ଅନେକଥର କେବଳ ଲୁଣ ଏବଂ ଲାଲ ଲଙ୍କାମରିଚ ଖାଉଥିଲା । ସେ ଏଭଳି ରୋଟି ଖାଉଥିବା ଦୃଶ୍ୟ ତା'ର ଏକ ସହରବାସୀ ବନ୍ଧୁ ଅନେକଥର ମଧ୍ୟ ଦେଖିଥିଲା । ସେହି ବ୍ୟକ୍ତି ଉକ୍ତ କୃଷକର ସ୍ୱାସ୍ଥ୍ୟକୁ ବହୁତ ପସନ୍ଦ କରୁଥିଲା । ବାସ୍ତବରେ କୃଷକର ଚେହେରା ବହୁତ ଲାଲ ଥିଲା । ସେହି ବ୍ୟକ୍ତି କୌଣସି ଉପାୟରେ ଏହି ସିଦ୍ଧାନ୍ତରେ ଉପନୀତ ହେଲା ଯେ ଲାଲ ଲଙ୍କାମରିଚ ଖାଉଥିବା ହେତୁ କୃଷକର ଚେହେରା ଲାଲ ହୋଇଛି । ତେଣୁ ସେ ମଧ୍ୟ ସେହିଦିନଠାରୁ ରୋଟି ସହିତ କେବଳ ଲୁଣ ଏବଂ ଲାଲ ଲଙ୍କାମରିଚ ଖାଇବାକୁ ଲାଗିଲା । ସେ ଭାବିଥିଲା ଯେ କିଛିଦିନ ପରେ ତା'ର ଚେହେରା ମଧ୍ୟ ଲାଲ ହୋଇଯିବ । ମାତ୍ର କିଛିଦିନ ପରେ ତା'ର ସ୍ୱାସ୍ଥ୍ୟ ଉପରେ ଏହାର ଖରାପ ପ୍ରଭାବ ପଡ଼ିଲା । ଶେଷରେ ସେ ଜଣେ ଡାକ୍ତର ପାଖକୁ ଯାଇ ତା'ର ଦୁଃଖ ଜଣାଇଲା ଏବଂ ତା'ର ଆଖି ଓ ପାଚନ କ୍ରିୟା ଉପରେ ଯେଉଁ ଖରାପ ପ୍ରଭାବ ପଡ଼ିଥିଲା, ତାହା ମଧ୍ୟ ବର୍ଣ୍ଣନା କଲା । ତା' କଥା ଶୁଣି ଡାକ୍ତର ହସି କହିଲେ—"ଆପଣ କି ବିଚିତ୍ର ସ୍ୱଭାବର ବ୍ୟକ୍ତି ! ଆପଣ କୃଷକକୁ ଲାଲ ମରିଚ ଖାଉଥିବାର ଦେଖି ଏହା ତା'ର ଲାଲ ଚେହେରାର କାରଣ ବୋଲି କପରି ମାନିନେଲେ ? ସେ କୃଷକ ଖୋଲା ସ୍ଥାନରେ ରହୁଛି, ସ୍ୱଚ୍ଛ ବାୟୁ ଗ୍ରହଣ କରୁଛି, ଖୁସିରେ ସର୍ବଦା ରହୁଛି, ଶସ୍ୟ-କ୍ଷେତ୍ରରେ କାର୍ଯ୍ୟ କରିବାଦ୍ୱାରା ତା'ର ଶାରୀରିକ ବ୍ୟାୟାମ ହେଉଛି । ବଂଶ ପରମ୍ପରା ଯୋଗୁଁ ମଧ୍ୟ ହୁଏତ ତା'ର ସ୍ୱାସ୍ଥ୍ୟ ସୁନ୍ଦର ହୋଇପାରେ—ଏହିସବୁ ତଥ୍ୟ ଉପରେ ଆପଣ କାହିଁକି ଧ୍ୟାନ ନ ଦେଇ କେବଳ ଓଲଟା ଧାରଣା ଗ୍ରହଣ କରିନେଲେ ?"

ବର୍ତ୍ତମାନ ଆପଣ କହୁଛନ୍ତି ଯେ କେତେକ ଶାକାହାରୀ ଲୋକମାନଙ୍କ ମଧ୍ୟରେ ଅଧିକ କ୍ରୋଧ ପରିଲକ୍ଷିତ ହେଉଥିବା ସ୍ଥଳେ କେତେକ ମାଂସାହାରୀ

ବ୍ୟକ୍ତିମାନଙ୍କ ପାଖରେ କ୍ରୋଧ ବହୁତ କମ୍ ଦେଖାଯାଏ । କିନ୍ତୁ ମନୁଷ୍ୟର ଅବସ୍ଥା ଖରାପ ହେବା କିମ୍ବା ଭଲ ହେବାର କାରଣ ଏକମାତ୍ର ଅନ୍ନ ନୁହେଁ । ଅନ୍ୟ କେତେକ ବିଷୟର ପ୍ରଭାବ ମଧ୍ୟ ମନ ଉପରେ ପଡ଼େ । ଉଦାହରଣସ୍ୱରୂପ କାମୀ ପୁରୁଷର ଅଧିକ ଶକ୍ତି କ୍ଷମତା ହେତୁ ତା'ଠାରେ ଅଧିକ କ୍ରୋଧ ଉତ୍ପନ୍ନ ହୁଏ । କୌଣସି ବ୍ୟକ୍ତି ଅନ୍ୟ ଅଶ୍ଳୀଳ ଲୋକମାନଙ୍କର ସମ୍ପର୍କରେ ଆସିବା ଫଳରେ ତା'ଠାରୁ ସେ ଗାଳି ଏବଂ ଲଢ଼ାଇ କରିବା ମଧ୍ୟ ଶିକ୍ଷା କରେ । ଯଦି କୌଣସି ବ୍ୟକ୍ତି ଦୀର୍ଘ ଦିନ ଧରି କୌଣସି ଶାରୀରିକ ରୋଗରେ ପୀଡ଼ିତ ରହେ ତେବେ ତା'ର ଚିଡ଼ିଚିଡ଼ା ସ୍ୱଭାବ ମଧ୍ୟ ହୋଇ-ପାରେ । କୌଣସି ବ୍ୟକ୍ତିଙ୍କ ଜୀବନରେ କେବେ କେବେ ଏପରି ଘଟଣା ଘଟେ, ଯାହାଫଳରେ ତା' ଜୀବନରେ ଅସଫଳତା, ନିରାଶ ଓ ଅସମର୍ଥତା ଦିନକୁ ଦିନ ବୃଦ୍ଧିପାଏ ଏବଂ ଏହାର ପରିଣାମସ୍ୱରୂପ ତା'ଠାରେ କ୍ରୋଧର ମାତ୍ରା ଅଧିକ ହୋଇପାରେ । କେତେକଙ୍କର ପୂର୍ବଜନ୍ମର ସଂସ୍କାର ହେତୁ ଅନ୍ୟ ଅପେକ୍ଷା କ୍ରୋଧ ଉଗ୍ରତା ଏବଂ କ୍ରୋଧ ମଧ୍ୟ ଉତ୍ପନ୍ନ ହୋଇପାରେ । ତେଣୁ କ୍ରୋଧ ସ୍ୱଭାବ ହେବାର ଏହିପରି ଅନେକ କାରଣ ହୋଇପାରେ ଏବଂ ଅନ୍ନ ସେମାନଙ୍କ ମଧ୍ୟରେ ଅନ୍ୟତମ ।

ଗତ ଦୁଇ ଦିନ ମଧ୍ୟରେ କାମ-କ୍ରୋଧ ଇତ୍ୟାଦି ବିକାରର ମୂଳ କାରଣଗୁଡ଼ିକର ନିବାରଣର ପନ୍ଥା ଏବଂ ବିଭିନ୍ନ ଯୁକ୍ତି ମଧ୍ୟ ମୁଁ ଆପଣଙ୍କୁ ବୁଝାଇଛି । କିନ୍ତୁ ଆପଣଙ୍କର ଯଦି ଅନ୍ନ-ଦୋଷ ଥାଏ ତେବେ ସେହି ଯୁକ୍ତିଗୁଡ଼ିକୁ ଧାରଣ କରିବାରେ ଅନେକ ବାଧାବିଘ୍ନ ଆସିପାରେ, ଯାହା ଫଳରେ ସଂସ୍କାର ଏବଂ ସ୍ୱଭାବର ଶୁଦ୍ଧିକରଣରେ ବିଭିନ୍ନ ସମସ୍ୟା ମଧ୍ୟ ଦେଖା ଦେଇପାରେ । ଆପଣ ବିଚାର କରନ୍ତୁ ଯେ ଯଦି ଜଣେ ବ୍ୟକ୍ତି ଗୋଟିଏ ଲୁଗାକୁ ବାରମ୍ବାର ସଫାକରି ସ୍ୱଚ୍ଛ କରେ, କିନ୍ତୁ ଅନ୍ୟଜଣେ ଧୂଳି ମାଟି ଉଡ଼ାଇ ତାକୁ ମଇଳା କରେ, ତେବେ ତା'ର ଫଳାଫଳ କ'ଣ ହେବ ? ଅର୍ଥାତ୍ ଜଣେ ଗୋଟିଏ ପକ୍ଷରେ ମନକୁ ଶୁଦ୍ଧ କରିବାପାଇଁ ପୁରୁଷାର୍ଥ କରୁଛି ଏବଂ ଅନ୍ୟଜଣେ ଅପର ପକ୍ଷରେ ତାମସିକ ଅନ୍ନ ଭୋଜନ କରି ମନକୁ ପୁନଶ୍ଚ ମଳିନ ଅଥବା ଅଶୁଦ୍ଧ କରୁଛି—ଏ କ'ଣ ବାସ୍ତବରେ ଠିକ୍ ?

**ଜିଜ୍ଞାସୁ** - ବାସ୍ତବରେ ଏହା ଭୁଲ । ବର୍ତ୍ତମାନ ମୁଁ ସମ୍ପୂର୍ଣ୍ଣଭାବେ ଉପଲବ୍ଧି କରୁଛି ଯେ ଅନ୍ନର ପ୍ରଭାବ ମନ ଉପରେ ନିଶ୍ଚିତଭାବେ ପ୍ରତିଫଳିତ ହୁଏ । ତେଣୁ ମାନବର ସାତ୍ତ୍ୱିକ ଅନ୍ନ ସେବନ କରିବା ଏକାନ୍ତ ଆବଶ୍ୟକ । କିନ୍ତୁ ଭଉଣୀ, ଅନ୍ୟ ଏକ ପ୍ରଶ୍ନ ହେଉଛି ଯେ ମୋର ବନ୍ଧୁମାନେ ମୋତେ କେତେଥର କହୁଛନ୍ତି ଯେ ପିଆଜ ଏବଂ ରସୁଣରେ ଅନେକ ଗୁଣ ରହିଛି । ତେଣୁ ସେଗୁଡ଼ିକୁ ତ୍ୟାଗ କରିବା କ'ଣ ଦରକାର ? ଘରେ ମଧ୍ୟ କହନ୍ତି ଯେ ପିଆଜ ରସୁଣଦ୍ୱାରା ତରକାରୀ ସ୍ୱାଦିଷ୍ଟ ହୁଏ । ଅନ୍ୟ କେତେକ ବନ୍ଧୁ କହନ୍ତି ଯେ ବର୍ତ୍ତମାନର ଖାଦ୍ୟପଦାର୍ଥରେ ବିଶେଷ ଶକ୍ତି ନାହିଁ, ତେଣୁ ଅଣ୍ଡା ଇତ୍ୟାଦି ଶସ୍ତା ଦରର ପଦାର୍ଥ ଯଦି ମନୁଷ୍ୟ ଭୋଜନ ନ କରେ, ତେବେ ତା'ଠାରେ ଶକ୍ତି ଆସିବ କିପରି ? ଆପଣ ଦୟାକରି ଏହା ଉପରେ ଆପଣଙ୍କର ମନ୍ତବ୍ୟ ପ୍ରଦାନ କଲେ ମୋର ପୁରୁଷାର୍ଥର ମାର୍ଗ ସ୍ପଷ୍ଟ ହୋଇଯିବ ଏବଂ ଏ ବିଷୟରେ କୌଣସି ସନ୍ଦେହ ମଧ୍ୟ ଭବିଷ୍ୟତରେ ଉପୁଜିବ ନାହିଁ ।

**ବ୍ରହ୍ମାକୁମାରୀ**—ଦେଖନ୍ତୁ, ଯାହାର ଯେପରି ମାନସିକ ସ୍ଥିତି, ସେପରି ସେ ନିଶ୍ଚୟ କଥାବାର୍ତ୍ତା କରିବ । ଆପଣ ଅନ୍ୟର କଥାବାର୍ତ୍ତା ଶୁଣିବା ସଙ୍ଗେ ସଙ୍ଗେ ସ୍ୱୟଂ ନିଜର ଲାଭ କ୍ଷତି ବିଚାର କରିବା ଦରକାର । ପିଆଜ ଏବଂ ରସୁଣକୁ ତରକାରୀରେ ପକାଇ ଖାଦ୍ୟକୁ ସ୍ୱାଦିଷ୍ଟ କରିବା ଅର୍ଥ ମନୁଷ୍ୟ ତା'ର କର୍ମେନ୍ଦ୍ରିୟର ଦାସତ୍ୱ ସ୍ୱୀକାର କରିବା । ପୁନଶ୍ଚ ପିଆଜ ରସୁଣ ବ୍ୟତୀତ ତରକାରୀ ବହୁତ ସ୍ୱାଦିଷ୍ଟଭାବେ ରନ୍ଧାଯାଇ ପାରେ । ଆମ୍ଭେମାନେ ଏ ବିଷୟରେ ସ୍ୱୟଂ ଅନୁଭବୀ । ଖାଦ୍ୟକୁ ଭଲ ଭାବରେ ପ୍ରସ୍ତୁତ କରିବାପାଇଁ ରନ୍ଧାକାରୀ ଭଲ ହେବା ଦରକାର । ଅନ୍ୟପକ୍ଷରେ ମନୁଷ୍ୟ ଯେଉଁ ଖାଦ୍ୟ ସବୁ ଭୋଜନ କରେ ସେଥିରେ ସେ ସ୍ୱତଃ ଅଭ୍ୟାସୀ ହୋଇଯାଏ ଏବଂ ସେଥିରୁ ମଧ୍ୟ ସେ ସ୍ୱାଦ ଲାଭ କରିପାରେ । ତେଣୁ ପିଆଜ ରସୁଣ ଭଳି ଉତ୍ତେଜକ ପଦାର୍ଥ ସର୍ବଦା ତ୍ୟାଜ୍ୟ ।

ଦ୍ୱିତୀୟତଃ, ଏକଥା କହିବା ଭୁଲ ଯେ ଅଣ୍ଡା ଇତ୍ୟାଦି ବ୍ୟତୀତ ଅନ୍ୟ ପଦାର୍ଥରେ ଶକ୍ତି ନାହିଁ କିମ୍ବା ଅଣ୍ଡା ମନୁଷ୍ୟ ଯଦି ନ ଖାଏ ତେବେ ତା' ଠାରେ ଶକ୍ତି ମଧ୍ୟ ଆସିବ ନାହିଁ । ସାଧାରଣତଃ ଶ୍ରମିକମାନେ କେବଳ ଡାଲି ଭାତ ଖାଇ ସାରାଦିନ ଅକ୍ଳାନ୍ତ ପରିଶ୍ରମ କରନ୍ତି, ଭାରି ବସ୍ତୁ ମଧ୍ୟ ଉଠାନ୍ତି ତଥା ପଥର ଗୁଣ୍ଡିକରଣ ସହନ କରନ୍ତି ଏବଂ ଏସବୁ ସତ୍ତ୍ୱେ ସେମାନେ ମଧ୍ୟ ସୁସ୍ଥ । ଯଦି ମାନବ ଚିନ୍ତାଠାରୁ ଦୂରରେ ରହେ, ସଦା ଖୁସିରେ ରହେ, କିଛି ଶାରୀରିକ ପରିଶ୍ରମ କରେ ଏବଂ ବ୍ରହ୍ମଚର୍ଯ୍ୟ ପାଳନ କରେ, ତେବେ ସେ ଶକ୍ତିହୀନ ହେବାର କୌଣସି କାରଣ ନାହିଁ । ଯଦି ଜନ୍ମରୁ କାହାର ଶାରୀରିକ ବିକୃତି ଘଟିଛି କିମ୍ବା କୌଣସି ରୋଗ କାରଣରୁ ଦୁର୍ବଳତା ସଦା ରହି ଆସିଛି ତେବେ କୌଣସି ଉପାୟଦ୍ୱାରା ତାହା ଠିକ୍ ହୁଏ ନାହିଁ । ତେଣୁ

ପ୍ରତ୍ୟେକ ବିଷୟକୁ ସମ୍ମୁଖରେ ରଖି ଜୀବନରେ ଆଧ୍ୟାତ୍ମିକ ଉନ୍ନତିର ଆଶା ପୋଷଣ କରୁଥିବା ବ୍ୟକ୍ତି ତା'ର ଶ୍ରେଷ୍ଠ ଏବଂ ସହଜ ପୁରୁଷାର୍ଥରେ ସହାୟକ ହେଉଥିବା ଖାଦ୍ୟକୁ ସେବନ କରିବା ଦରକାର ଏବଂ ଅନ୍ୟ ସବୁକୁ 'ଅଭକ୍ଷ୍ୟ' ଭାବି ସର୍ବଦା ତ୍ୟାଗ କରିବା ବିଧେୟ । ବାସ୍ତବରେ ଯୋଗଯୁକ୍ତ ହେବା କିମ୍ବା ଆଧ୍ୟାତ୍ମିକ ଉନ୍ନତିର ଶିଖରରେ ପହଞ୍ଚିବା ଏ ଦୁନିଆଁରେ ସବୁ ଲୋକ-ମାନଙ୍କର ଲକ୍ଷ୍ୟ ନୁହେଁ । ତେଣୁ ଯେଉଁ ବ୍ୟକ୍ତିମାନେ ଆଧ୍ୟାତ୍ମିକତାଠାରୁ ବହୁ ଦୂରରେ ଥାଆନ୍ତି, ସେମାନଙ୍କର ସିଦ୍ଧାନ୍ତ ହେଉଛି ଯେ—"ଖାଇବା, ପିଇବା, ମଉଜ କରିବାପାଇଁ ଏହି ଦୁନିଆଁ ଏବଂ ଏହି ମାନବ ଜୀବନ ହିଁ ଉଦ୍ଦିଷ୍ଟ ।" ତେଣୁ ଏପରି ବ୍ୟକ୍ତିମାନେ ଅପଣଙ୍କୁ ଯାହା କିଛି ଶୁଣାଇବେ ତାହା ବାସ୍ତବରେ ଆପଣଙ୍କ ଲକ୍ଷ୍ୟ ଏବଂ ପୁରୁଷାର୍ଥର ବିପରୀତ ହେବା ସଂସାରରେ ଅନେକାନେକ ଖାଦ୍ୟ-ପାନୀୟ ରହିଛି ଏବଂ ଯେଉଁଗୁଡ଼ିକ ମଧ୍ୟରେ ବହୁତ ମଧ୍ୟ ରୁଚିକାରୀ ଏବଂ ପୁଷ୍ଟିକର । କିନ୍ତୁ ମନୁଷ୍ୟ ତା'ର ଲକ୍ଷ୍ୟର ଅନୁକୂଳ ସାତ୍ତ୍ୱିକ ଭୋଜନ ଗ୍ରହଣ କରିବା ଉଚିତ ।

**ଜିଜ୍ଞାସୁ**—ହଁ ଭଉଣୀ ମୁଁ ଉପରୋକ୍ତ ସିଦ୍ଧାନ୍ତ ଭଲଭାବରେ ବୁଝିପାରିଲି, କିନ୍ତୁ ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ସାତ୍ତ୍ୱିକ ରାଜସିକ ଏବଂ

ତାମସିକ ପଦାର୍ଥଗୁଡ଼ିକୁ କପରି ଜାଣିବା, ଯାହାଫଳରେ ତାମସିକ ଓ ରଜସିକ ପଦାର୍ଥକୁ ତ୍ୟାଗକରି କେବଳ ସାତ୍ତ୍ୱିକ ପଦାର୍ଥ ଗ୍ରହଣ କରି-ପାରିବା ?

**ବ୍ରହ୍ମାକୁମାରୀ**—ଦେଖନ୍ତୁ, ଅତିଶୟ ଉତ୍ତେଜକ, ମାଦକ, ବାସି ଗୁରୁପାକ, ପଚାସଡ଼ା ଅଥବା ନିଦ୍ରା ଏବଂ ଆଳସ୍ୟ ସୃଷ୍ଟି କରିବା ପଦାର୍ଥଗୁଡ଼ିକ ତମୋଗୁଣୀ ଖାଦ୍ୟରୂପେ ବିବେଚିତ । ମାଛ, ମାଂସ, ପିଆଜ ଏବଂ ରସୁଣ ଇତ୍ୟାଦି ସବୁ ଏହି ଶ୍ରେଣୀର ଅନ୍ତର୍ଗତ । ମଦ, ବିଡ଼ି ସିଗାରେଟ୍ ଇତ୍ୟାଦି ମଧ୍ୟ ତମୋପ୍ରଧାନ ଏବଂ ମନୁଷ୍ୟାତ୍ମାର ଅଧୋପତନରେ ସର୍ବଦା ସହଯୋଗୀ । ଏହିସବୁ ପଦାର୍ଥ ଯୋଗାଭ୍ୟାସ ଅଥବା ପରମାତ୍ମା-ଚିନ୍ତନର ପୁରୁଷାର୍ଥରେ ଅନେକ ପ୍ରତିବନ୍ଧକ ସୃଷ୍ଟି କରେ ।

ସେହିପରି ଜିହ୍ୱାକୁ ସ୍ୱାଦିଷ୍ଟ ଅନୁଭୂତ ହେଉଥିବା ଖାଦ୍ୟ, ଇନ୍ଦ୍ରିୟ-ମାନଙ୍କ ବଶୀଭୂତ ହୋଇ ଭୋଜନ କରାଯାଉଥିବା ପଦାର୍ଥ, ଜୀବନରେ ଭୋଗବିଳାସର ଭାବନା ଉତ୍ପନ୍ନକାରୀ ପଦାର୍ଥ ଏବଂ ମନ ଓ ବୁଦ୍ଧିକୁ ଚଞ୍ଚଳ କରିବା ପଦାର୍ଥକୁ ରଜୋଗୁଣୀ କୁହାଯାଏ ।

ଫଳ, ଭଲ ଭଲ ପନିପରିବା ଏବଂ ଯୁକ୍ତିଯୁକ୍ତ ଭାବେ ରନ୍ଧା ହୋଇଥିବା ଅନ୍ନକୁ 'ସତୋଗୁଣୀ ଆହାର' କୁହାଯାଏ । ଯେହେତୁ ଆମ୍ଭେମାନେ ସତୋଗୁଣୀ ହେବାପାଇଁ ଇଚ୍ଛା କରୁଛେ ଏବଂ ଆମ୍ଭମାନଙ୍କର ଯୋଗବଳରେ ମନ ଓ ବୁଦ୍ଧିକୁ ପରମପିତା ପରମାତ୍ମାଙ୍କର ସ୍ମୃତିରେ ସ୍ଥିତ କରିବାପାଇଁ ଲକ୍ଷ୍ୟ ରଖୁଛେ ଏବଂ ଜୀବନରେ ମୁଖ୍ୟତଃ ଦୈବୀ ଗୁଣ ଧାରଣ କରିବାପାଇଁ ପୁରୁଷାର୍ଥ କରୁଛେ, ସେହେତୁ ଆମ୍ଭେମାନେ ସତୋଗୁଣୀ ଆହାର ସେବନ କରିବା ବିଧେୟ; ଯାହାଦ୍ୱାରା କି ଉତ୍ତେଜନା, ମାଦକତା, ଆଳସ୍ୟ, ନିଦ୍ରା, ବିଷୟ-ଲିପ୍ସା, ପଦାର୍ଥର ଆକର୍ଷଣ ଇତ୍ୟାଦିର ବିଘ୍ନ ଆମ୍ଭମାନଙ୍କ ସମ୍ମୁଖକୁ ଆସିବ ନାହିଁ, ମନ ଉତ୍ତେଜିତ ହେବନାହିଁ ତଥା ବୁଦ୍ଧି ମଧ୍ୟ ଇନ୍ଦ୍ରିୟମାନଙ୍କର ବଶୀଭୂତ

ହେବ ନାହିଁ । ବୁଦ୍ଧି ସଦା ଶୁଦ୍ଧ, ସଚେତ, ସନ୍ତୁଳିତ ଏବଂ ସାତ୍ତ୍ୱିକ ନ ରହିବା ଫଳରେ ମାନବ ପରମପିତା ପରମାତ୍ମାଙ୍କଠାରୁ ଶକ୍ତି ଏବଂ ଆନନ୍ଦ ସମ୍ପୂର୍ଣ୍ଣଭାବେ ଲାଭ କରିପାରେ ନାହିଁ ଏବଂ ସହଜ ଓ ସଠିକ୍‌ଭାବେ ସତ୍ୟ ଅସତ୍ୟ ଅଥବା ପାପପୁଣ୍ୟ ନିର୍ଣ୍ଣୟ କରିପାରେ ନାହିଁ ।

ଆପଣ ଯଦି ଗମ୍ଭୀରଭାବେ ବିଚାର କରିବେ, ତେବେ ଜାଣି-ପାରିବେ ଯେ ଅନ୍ନର ମନ ଉପରେ ଅନେକ ପ୍ରକାରର ପ୍ରଭାବ ପଡ଼େ । ଉଦାହରଣସ୍ୱରୂପ, ଯଦି କେହି ମାଂସ ଭୋଜନ କରୁଥାଏ ତେବେ ତା'ପକ୍ଷେ ଜୀବଜନ୍ତୁ ଧରିବା ଏବଂ ତାକୁ କଟାକଟି କରିବା ଏକ ସ୍ୱାଭାବିକ କାର୍ଯ୍ୟ । କିନ୍ତୁ ମାନବର ଏପରି ବୃତ୍ତି ଅଥବା ଏପରି କର୍ମ କ'ଣ ବାସ୍ତବରେ ଯୁକ୍ତିଯୁକ୍ତ ? ଆପଣ କହିବେ ଯେ— 'ନୁହେଁ' । ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ନିଜର ଭୋଜନାର୍ଥେ ପଶୁ-ପକ୍ଷୀ ମାରିବା ଏକ ହିଂସା ବୃତ୍ତି ଅଥବା ସ୍ୱାର୍ଥପରତା ବ୍ୟତୀତ ଅନ୍ୟ କିଛି ନୁହେଁ । ସେହିପରି ଜଣେ ମଦ୍ୟପର ସ୍ୱଭାବ ଏପରି ହୋଇଯାଏ ଯେ, ସେ ତାର ପ୍ରତ୍ୟେକ କର୍ମକୁ ଏକ ମାଦକତାର ପ୍ରଭାବରେ, ଏକ ନିଶାର ଲହରରେ ଅଥବା ଉତ୍ତେଜିତ ମନୋସ୍ଥିତିରେ ସମ୍ପାଦନ କରେ । ସେହିପରି ପିଆଜ, ରସୁଣ ଇତ୍ୟାଦି ଗନ୍ଧଯୁକ୍ତ ପଦାର୍ଥ ଗ୍ରହଣ କରୁଥିବା ବ୍ୟକ୍ତି ମନରେ ସ୍ୱତଃ ଅନ୍ୟର ଅବଗୁଣ ପ୍ରତିଫଳିତ ହୁଏ ଏବଂ ସେହି ଦୁର୍ଗୁଣଗୁଡ଼ିକୁ ନିଜର ଜୀବନୋପଯୋଗୀ ଭାବି ସେଗୁଡ଼ିକୁ ସେ ଧାରଣ କରି ନିଜର ଜୀବନ ଅତିବାହିତ କରେ । ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ସଦ୍‌ଗୁଣ, ସଦାଚାର ତଥା ବୌଦ୍ଧିକ ସାତ୍ତ୍ୱିକତା ଇତ୍ୟାଦିକୁ ଜୀବନରେ ଲାଭ କରିବାପାଇଁ ଇଚ୍ଛା କରୁଥିବା ବ୍ୟକ୍ତି ପକ୍ଷରେ ଉପରୋକ୍ତ ତମୋଗୁଣୀ ପଦାର୍ଥ ଗ୍ରହଣଯୋଗ୍ୟ ନୁହେଁ । କାରଣ ଏଗୁଡ଼ିକୁ ଜୀବନରେ ସ୍ୱୀକାର କଲେ ସେହି ମାନବର ମନୋବୃତ୍ତି ଏବଂ ସଂସ୍କାରରେ ହିଂସା, ସ୍ୱାର୍ଥପରତା, ମାଦକତା, ଅବଗୁଣଗ୍ରାହକତା ଇତ୍ୟାଦି ଅବଗୁଣ-ଗୁଡ଼ିକର ସମାବେଶ ହୁଏ । ପୁନଶ୍ଚ ପରମପିତା ପରମାତ୍ମା ଶିବ କହନ୍ତି

ଯେ ଯୋଗାଭ୍ୟାସୀ ପାଇଁ ଯେ କେବଳ ଭୋଗ୍ୟ ପଦାର୍ଥ ସତ୍ତୋଗୁଣୀ ହେବା ଉଚିତ ତାହା ନୁହେଁ, ଏହା ବ୍ୟତୀତ ଯେହି ଖାଦ୍ୟ ପ୍ରସ୍ତୁତ-କାରୀ ଏବଂ ଉପାର୍ଜନକାରୀ ଅଥବା ଅନ୍ନଦାତା ମଧ୍ଯ ସତ୍ତୋଗୁଣୀ ସ୍ୱଭାବଯୁକ୍ତ ହୋଇଥିବା ଅତ୍ୟାବଶ୍ୟକ । କାରଣ ଅନ୍ନର ମନ ଉପରେ ଯେତିକି ପ୍ରଭାବ ପଡ଼େ, ତାଠାରୁ ମନର ଅଧିକ ପ୍ରଭାବ ଅନ୍ନ ଉପରେ ପଡ଼େ ।

ଜିଜ୍ଞାସୁ—'ଅନ୍ନର ପ୍ରଭାବ ମନ ଉପରେ ପଡ଼େ'—ଏକଥା ମୁଁ ଶୁଣିଥିଲି ଏବଂ ବର୍ତ୍ତମାନ ଏହାର ପ୍ରକୃତ ରହସ୍ୟ ମଧ୍ଯ ସଠିକ୍ ଭାବରେ ବୁଝିପାରିଲି । କିନ୍ତୁ ମନର ଅନ୍ନ ଉପରେ କିପରି ପ୍ରଭାବ ପଡ଼ିପାରେ ?

### ମନ ଏବଂ ଦୃଷ୍ଟିର ଅନ୍ନ ଉପରେ ପ୍ରଭାବ

ବ୍ରହ୍ମାକୁମାରୀ—ମନର ପ୍ରକମ୍ପନ ( Vibrations ) ଏପରି ଯାହାକି ସାରା ବାୟୁମଣ୍ଡଳକୁ ପ୍ରଭାବିତ କରେ । ଅନ୍ନ ଏପରି ଏକ ବସ୍ତୁ ଯାହାକି ମନର ପ୍ରକମ୍ପନକୁ ଗ୍ରହଣ କରେ ଏବଂ ତଦ୍ଦ୍ୱାରା ପ୍ରଭାବିତ ମଧ୍ଯ ହୁଏ । ଆପଣ ଜାଣିଥିବେ ଯେ ବିଜୁଳିଶକ୍ତି ( Electricity ) ଏପରି ଏକ ଶକ୍ତି ଯେ ଯଦି କୌଣସି ବ୍ୟକ୍ତି ବିଜୁଳିଶକ୍ତି ପ୍ରଭାବିତ ହେଉଥିବା ନଗ୍ନ ତାରକୁ କେବେ ଛୁଇଁଦିଏ ତେବେ ବିଜୁଳିଶକ୍ତି ତାକୁ ଧରିନିଏ କିମ୍ବା ଧକ୍କା ଦେଇ ଦୂରକୁ ଫୋପାଡ଼ିଦିଏ । ବିଜୁଳି ଶକ୍ତିର ଆକର୍ଷଣ ଅଥବା ବିକର୍ଷଣ ଏତେ ଶକ୍ତିଶାଳୀ ଯେ ତାହା ଜୀବନ୍ତକୁ ଏକ ସେକେଣ୍ଡରେ ମୃତ କରିଦିଏ । କିନ୍ତୁ ମାନବ କାଠର ବାଡ଼ିକୁ ହାତରେ ଧରି ଯଦି ବିଜୁଳି ତାରକୁ ସ୍ପର୍ଶକରେ, ତେବେ ତା' ଉପରେ ବିଜୁଳିଶକ୍ତିର କୌଣସି ପ୍ରଭାବ ପଡ଼େ ନାହିଁ । ସେହିପରି ଆପଣ ମଧ୍ଯ ଦେଖିଥିବେ ଯେ ଚୁମ୍ବକ ( Magnet )ର ଏପରି

ଶକ୍ତି ଅଛି, ଯାହାକି ଲୁହାଗୁଣ୍ଡକୁ ଆକର୍ଷିତ ବା ପ୍ରଭାବିତ କରେ । ତଥାପି ସ୍ଥୂଳ ଚକ୍ଷୁରେ ଆମ୍ଭେମାନେ ଦେଖିପାରୁନାହୁଁ ଯେ ଚୁମ୍ବକରେ ଏହି ଶକ୍ତି କେଉଁଠାରେ ବାସ୍ତବରେ ଲୁକ୍‌କାୟିତ ଭାବରେ ରହିଛି । ଆମ୍ଭେମାନେ ଲୁହାଗୁଣ୍ଡ ଅଥବା ଛୁଞ୍ଚି ଉପରେ ତା'ର ପ୍ରଭାବ ପରିଲକ୍ଷିତ କରିପାରୁଛେ ଏବଂ ତାପରେ ଏହି ସିଦ୍ଧାନ୍ତରେ ଉପନୀତ ହେଉଛେ ଯେ ଚୁମ୍ବକରେ ଏପରି ଶକ୍ତି ରହିଛି, ଯାହାକି ଅନ୍ୟକୁ ଆକର୍ଷଣ କରେ । ଠିକ୍ ସେହିପରି ମନର ଅନ୍ନ ଉପରେ ଯେଉଁ ପ୍ରଭାବ ପଡ଼େ ତାହା ସେହି ଅନ୍ନକୁ ଉପଭୋଗ କରିବା ପରେ ହିଁ ଜଣାପଡ଼େ କିମ୍ବା ଦିବ୍ୟ ବୁଦ୍ଧି ଏବଂ ଦିବ୍ୟ ଦୃଷ୍ଟି ଧାରଣ କରିଥିବା ମାନବ ଏହାକୁ ସ୍ୱତଃ ଜାଣିପାରେ ।

ଯୋଗଯୁକ୍ତ ବ୍ୟକ୍ତିର ମନରୁ ଯେଉଁ ଶୁଦ୍ଧ ପ୍ରକାଶ ଅଥବା ଶକ୍ତି-ରଶ୍ମି ବିନିଃସୃତ ହୁଏ, ତାହାର ପ୍ରଭାବରେ ଆହାର ମଧ୍ୟ ଶୁଦ୍ଧ କରିଯାଏ । ଏହାଦ୍ୱାରା ମାନବର କାମ କ୍ରୋଧାଦି ବିକାର ମଧ୍ୟ ଦଗ୍‌ଧ ହୋଇଯାଏ ଏବଂ ମନୁଷ୍ୟ ଧୀରେ ଧୀରେ ଅନାଶକ୍ତ, ସନ୍ତୁଷ୍ଟ, ନିର୍ମଳ ତଥା ପ୍ରକାଶଯୁକ୍ତ ହୋଇଯାଏ । ଏସବୁ ଯୋଗୁଁ ଆହାର ମଧ୍ୟ ଶୁଦ୍ଧ ହୁଏ ।

ଜିଜ୍ଞାସୁ—ବୈଜ୍ଞାନିକମାନେ ବିଭିନ୍ନ ଶକ୍ତିର ପ୍ରଭାବକୁ ପ୍ରୟୋଗ-ଦ୍ୱାରା ସ୍ପଷ୍ଟ କରିଛନ୍ତି ସତ କିନ୍ତୁ ମନ, ଆତ୍ମାର ଏକ ଯୋଗ୍ୟତା ଅଥବା ଅଭିବ୍ୟକ୍ତିର ନାମ ହୋଇଥିବାରୁ ଏହା ଅତି ସୂକ୍ଷ୍ମ । ଏଣୁ ଏହାର ପ୍ରଭାବ ସ୍ଥୂଳ ପଦାର୍ଥ ଉପରେ ପଡ଼ୁଛି - ଏ ସତ୍ୟତା ଆମ୍ଭେମାନେ ଆଜିକାଲିର ଲୋକମାନଙ୍କୁ କିପରି ବୁଝାଇବା ?

## ବୃତ୍ତି ଏବଂ ସ୍ମୃତିର ପ୍ରଭାବ ଅନ୍ନ ଉପରେ ପଡ଼େ ।

ବ୍ରହ୍ମାକୁମାରୀ—ମନୁଷ୍ୟର ଦୃଷ୍ଟି ଏବଂ ଏକାଗ୍ର ବୃତ୍ତି ଇତ୍ୟାଦିର ପ୍ରଭାବକୁ ଆଜି ବୈଜ୍ଞାନିକମାନେ ମଧ୍ୟ ସ୍ୱୀକାର କରୁଛନ୍ତି । ଏ ସମ୍ବନ୍ଧରେ କିଛିଦିନ ତଳେ ରୁଷିଆର 'ଟାସ୍' ସମ୍ବାଦପତ୍ରରେ ଏକ ଦୃଷ୍ଟାନ୍ତ ପ୍ରକାଶ

ପାଇଥିଲ । ପ୍ରକାଶିତ ସମ୍ବାଦ ହେଉଛି ଯେ 'ମିଖିଲୋଓ୍ୟା' ନାମ୍ନୀ ଜଣେ ମହିଳା ଘଡ଼ିକୁ ଦୃଷ୍ଟି ଦେଇ ତା'ର ଗତିକୁ ବନ୍ଦ କରିବାରେ କୃତକାର୍ଯ୍ୟ ହୋଇ ପାରିଛନ୍ତି । ସେହି ମହିଳା କେତେକ ବୈଜ୍ଞାନିକ ଏବଂ ପ୍ରେସ ସମ୍ବାଦ-ଦାତାମାନଙ୍କ ସମ୍ମୁଖରେ ମଧ୍ୟ ତାଙ୍କର ପ୍ରତିଭା ଦେଖାଇଛନ୍ତି । କେତେବେଳେ ସେ ଘଡ଼ି ଉପରକୁ ଦୃଷ୍ଟି ଦେଇ ଘଡ଼ିର ଗତିକୁ ବନ୍ଦ କରିଦିଅନ୍ତି ତ ଅନ୍ୟ କେତେବେଳେ ତାର ଗତିର ବେଗକୁ ବଢ଼ାଇ ଦିଅନ୍ତି ଏବଂ କମ୍ ମଧ୍ୟ କରିଦିଅନ୍ତି । ଟେବୁଲ ଉପରେ ଥିବା ଲୁଣପାତ୍ର ଏବଂ ଗ୍ଲାସକୁ ମଧ୍ୟ ସେ ଦୃଷ୍ଟି ଦେଇ ହଲାଇ ପାରନ୍ତି ଯାହାର କି ଫଟୋ ବୈଜ୍ଞାନିକ ଏବଂ ପ୍ରେସ ଫଟୋଗ୍ରାଫରମାନେ ନେଇଛନ୍ତି । ସେ ମଧ୍ୟ ଟେବୁଲ ଉପରେ ରଖା-ଯାଇଥିବା ରୁଟି ପ୍ରତି ଏପରି ଦୃଷ୍ଟି ଦିଅନ୍ତି ଯେ ରୁଟି ସ୍ୱତଃ ବିନା ସ୍ଥୂଳ ମାଧ୍ୟମରେ ତାଙ୍କର ମୁଖଗହ୍ୱରରେ ପ୍ରବେଶ କରେ । ସେ ନଳଟିର ଯେଉଁ ପଟକୁ ଦୃଷ୍ଟି ଦିଅନ୍ତି ସେପଟ ସ୍ୱତଃ ଖୋଲିଯାଏ । ଏହି ସମ୍ବାଦ ୧୯୬୮ ମସିହା ମାର୍ଚ୍ଚ ୨୮ ତାରିଖ 'ଟାଇମ୍ସ ଅଫ୍ ଇଣ୍ଡିଆ'ରେ ତଥା ଅପ୍ରେଲ ୯ ତାରିଖ 'ଇଣ୍ଡିଆନ ଏକ୍ସପ୍ରେସ'ରେ ପ୍ରକାଶିତ ହୋଇଥିଲ । ଯଦିଓ ବୈଜ୍ଞାନିକମାନେ ଏସବୁ କଥାକୁ ପ୍ରଥମେ ପ୍ରଥମେ ଅବିଶ୍ୱାସ କରୁଥିଲେ, ତଥାପି ଏହାକୁ ବାସ୍ତବ କ୍ଷେତ୍ରରେ ଦେଖିସାରିବା ପରେ ଏହା ଉପରେ ବିଚାର କରିବାକୁ ଲାଗିଛନ୍ତି । ଶେଷରେ ରୁଷ ସରକାରଙ୍କର ବିଭିନ୍ନ ସଦସ୍ୟବୃନ୍ଦ ଏହାକୁ ମାନିଛନ୍ତି ଏବଂ ଘୋଷଣା ମଧ୍ୟ କରିସାରିଛନ୍ତି ଯେ—"ମନରୂପୀ ଶକ୍ତିର ପ୍ରଭାବ ପ୍ରକୃତି ଉପରେ ପଡ଼ିପାରେ ।" ବର୍ତ୍ତମାନ ବିଚାର କରିବା କଥା ଯେ ଯଦି ଦୃଷ୍ଟି-ଶକ୍ତି ଏବଂ ମନ-ଶକ୍ତିର ପ୍ରଭାବ ଏପରି ପଡ଼ିପାରେ ଯାହାଫଳରେ କି ରୁଟି ମଧ୍ୟ ଶୂନ୍ୟରେ ମୁଖଗହ୍ୱରକୁ ଚାଲିଯାଇପାରେ ଅଥବା ଚାଲୁଥିବା ଘଡ଼ି ମଧ୍ୟ ବନ୍ଦ ହୋଇଯାଇପାରେ, ତେବେ ମନର ସତ୍ତ୍ୱ, ରଜ ଏବଂ ତମ ନାମକ ବୃତ୍ତିଗୁଡ଼ିକର ପ୍ରଭାବ କ'ଣ ପ୍ରକୃତି ଉପରେ ପଡ଼ିପାରେ ନାହିଁ ? ଆଧ୍ୟାତ୍ମିବାଦୀ ଲୋକମାନଙ୍କର ଏପରି ଅନେକ ଅନୁଭୂତି ରହିଛି । ଗୋଟିଏ ଦୁଇଟି ଉଦାହରଣ ହିଁ ଏତ ଲୋକମାନଙ୍କ ପାଇଁ ଯଥେଷ୍ଟ ।

# ଏକ ଦୃଷ୍ଟାନ୍ତ

ଥରେ ଜଣେ ସନ୍ନ୍ୟାସୀ ଗୋଟିଏ ଗାଁ ମଧ୍ୟ ଦେଇ ଯାଉଥିଲେ ଏବଂ ଗାଁ ପାରହେବା ସମୟରେ ଗାଁ ଶେଷରେ ଗୋଟିଏ କୂଅ ଦେଖିଲେ । ସନ୍ନ୍ୟାସୀ ଯେତେବେଳେ ବହୁତ ତୃଷାର୍ତ୍ତ ଥିଲେ କୂଅ ମୂଳରେ ବାଲ୍‌ଟି ଏବଂ ଦଉଡ଼ି ଦେଖି ସନ୍ନ୍ୟାସୀ କୂଅ ମୂଳକୁ ଗଲେ ଏବଂ ପାଣି କାଢ଼ି ପିଇ-ସାରିବା ପରେ ପୁନଶ୍ଚ ନିଜ ଲକ୍ଷ୍ୟ ପଥରେ ଆଗେଇ ଚାଲିଲେ । କିଛି ଦୂର ଗଲା ପରେ ତାଙ୍କର ସଂକଳ୍ପ ଆସିଲା ଯେ ଆଗକୁ ଗଲା ପରେ ପୁଣି ଶୋଷ ଲାଗିପାରେ ଏବଂ ଆଗରେ ଥିବା କୂଅ ମୂଳରେ ହୁଏତ ବାଲ୍‌ଟି ଓ ଦଉଡ଼ି ନ ଥାଇପାରେ । ତେଣୁ ଏହି କୂଅ ପାଖରୁ ଦୌଡ଼ି ଏବଂ ବାଲ୍‌ଟି ସାଥିରେ ନେଇଯିବା ସବୁଠାରୁ ଭଲ । ଏହି ସଂକଳ୍ପ ନେଇ ସେ ପ୍ରତ୍ୟାବର୍ତ୍ତନ କଲେ ଏବଂ ଦଉଡ଼ି ଓ ବାଲ୍‌ଟି ନେଇ ଚାଲିଗଲେ । ପରନ୍ତୁ କିଛିଦୂର ଯିବା ପରେ ସେ ନିଜର କର୍ମକୁ ଭୁଲ ବୋଲି ମନେ ମନେ ବିଚାର କଲେ । ସେ ନିଜର ସବୁକିଛି ତ୍ୟାଗକରି ଶେଷରେ ଅନ୍ୟର ବସ୍ତୁ ଚୋରି କରି ନେଉଥିବାରୁ ସେ ନିଜକୁ ନିଜେ ବହୁତ ଭର୍ତ୍ସନା କଲେ । ସେ ପୁନର୍ବାର ପ୍ରତ୍ୟାବର୍ତ୍ତନ କରି କୂଅ ପାଖରେ ବାଲ୍‌ଟି ଓ ଦୌଡ଼ି ରଖି ଦେଲେ, ମାତ୍ର ତାଙ୍କର ବୃତ୍ତି ଏପରି ଦୂଷିତ ହେବାର କାରଣ ସେ ଖୋଜିବାକୁ ଲାଗିଲେ । ବାସ୍ତବରେ ପ୍ରଥମେ ତାଙ୍କ ପାଖରେ ଚୋରିର ସଂସ୍କାର ନ ଥିଲା । ତା'ପରେ ସେ ଆଖି ପାଖରେ କୂଅର ମାଲିକ ବିଷୟରେ ପଚାରିବା ପରେ ଜାଣିବାକୁ ପାଇଲେ ଯେ ଜଣେ ଚୋର ତାର ବୃଦ୍ଧାବସ୍ଥାରେ ନିଜର ଚୋରି ଧନକୁ ନେଇ ଲୋକମାନଙ୍କ ଉପକାର ଉଦ୍ଦେଶ୍ୟରେ କୂଅଟି ଖୋଲାଇଥିଲା । ସନ୍ନ୍ୟାସୀ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଚୋରି ମନବୃତ୍ତିଦ୍ୱାରା ଠୁଳ କରାଯାଇଥିବା ଧନର ପ୍ରଭାବ ଏତେ ବେଶୀ ଯେ ଆଜିସୁଦ୍ଧା ମଧ୍ୟ ସେହି କୂଅର ପାଣି ପିଇବାଦ୍ୱାରା ତାଙ୍କ ଉପରେ ତା'ର ଖରାପ ପ୍ରଭାବ ପଡ଼ିଲା । ଏହିପରି ଅନ୍ୟ ଏକ ଦୃଷ୍ଟାନ୍ତ ମଧ୍ୟ ରହିଛି ଯେ ଜଣେ ସାଧୁ ଥରେ ଗାଳି ଦେଉଥିବା ଏକ ପରିବାରରୁ ଭିକ୍ଷା

ଗ୍ରହଣ କରି ସେଥିରୁ ରୁଟି ତିଆରି କରି ଭୋଜନ କଲେ ଏବଂ ରାତ୍ରିରେ ନିଦ୍ରାବସ୍ଥାରେ ତାଙ୍କର ମୁଖରୁ ନିଃସୃତ ହେଉଥିବା ଗାଳିର ଉଚ୍ଚାରଣ ଶୁଣି ଶିଷ୍ୟବୃନ୍ଦ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ।

ତେଣୁ କହିବାର ଅର୍ଥ ହେଉଛି ଯେ ଖାଦ୍ୟର ପ୍ରଭାବ ନିଶ୍ଚିତଭାବେ ମନୁଷ୍ୟର ଶରୀର ଅଥବା ମାନସିକ ସ୍ଥିତି ଉପରେ ପ୍ରତିଫଳିତ ହୁଏ । ଭାରତରେ ପ୍ରାସାଦ କିମ୍ବା ଭୋଗ ତିଆରି କରିବାର ପ୍ରଥା ଅନେକ ଦିନରୁ ଚାଲିଆସୁଛି ଏବଂ ଏହା ପଛରେ ମଧ୍ୟ ବାସ୍ତବରେ ଏହି ମାନ୍ୟତା ରହିଛି । ଗୃହସ୍ଥ ଲୋକେ ପୂଜାରୀ ନିକଟକୁ କୌଣସି ମିଠାଇ ଅଥବା ଅନ୍ୟ କୌଣସି ଖାଦ୍ୟ ପଦାର୍ଥ ନେଇଗଲେ ସେ ତାହାକୁ ମୂର୍ତ୍ତି ଆଗରେ ସମର୍ପଣ କରେ । ଗୃହସ୍ଥ ଏବଂ ପୂଜାରୀ ଦୁହେଁ ବିଶ୍ୱାସ କରନ୍ତି ଯେ ଦେବତା ପବିତ୍ର ଏବଂ ନିର୍ବିକାର ଅଟନ୍ତି ଏବଂ ସେହି ପଦାର୍ଥକୁ ଦେବତା ମନରେ ସ୍ୱୀକାର କରିବାଦ୍ୱାରା ତାହା ସତୋଗୁଣୀ ଅଥବା ଶୁଦ୍ଧ ହୋଇଯାଏ, ଯାହାକୁ 'ପ୍ରସାଦ'ର ରୂପ ଦିଆଯାଏ । ଏହାକୁ ସେବନ କରିବାଦ୍ୱାରା ମନରେ ପବିତ୍ରତା, ଶାନ୍ତି ତଥା ଆନନ୍ଦ ସୃଷ୍ଟି ହୁଏ । ଏହିପରି ପ୍ରତ୍ୟେକ ଧର୍ମରେ ଭିନ୍ନ ଭିନ୍ନ ଭାବରେ ଭୋଗ ଲଗାଇବାର ପ୍ରଥା ଚାଲି ଆସିଛି । ତେଣୁ ଏଥିରୁ ସିଦ୍ଧ ହୁଏ ଯେ ପ୍ରାଚୀନ କାଳରୁ ମଧ୍ୟ ଏହି ପ୍ରଥା ଚାଲିଆସୁଛି ଯେ ମନର ମଧ୍ୟ ଅନ୍ନ ଉପରେ ପ୍ରଭାବ ପଡ଼େ । ଏହି କାରଣରୁ ଭକ୍ତମାନେ ପ୍ରସାଦ ଅଥବା ଭୋଗକୁ ସର୍ବାଧିକ ମହତ୍ତ୍ୱ ଦିଅନ୍ତି ଏବଂ ସବୁଠାରୁ ପବିତ୍ର ମାନନ୍ତି । ମନରେ କିଛି ବିଚାର ନ କରି ଶୁଭ ଭାବନା ରଖି ଅନ୍ୟଠାରୁ ମଧ୍ୟ ପ୍ରସାଦ ମାଗି ସେବନ କରନ୍ତି ଏବଂ ସେବନ କରିବା ସମୟରେ ଯଦି କିଛି ଅଂଶ କୌଣସି ପ୍ରକାରେ ଭୂମିରେ ପଡ଼ିଯାଏ, ତେବେ ସମ୍ମାନପୂର୍ବକ ତାହାକୁ ଉଠାଇ ନିଅନ୍ତି । କାରଣ ସେମାନେ ଭାବନ୍ତି ଯେ ତାହା ଶୁଦ୍ଧ ମନରେ ପ୍ରସ୍ତୁତ କରାଯାଇଛି ଅଥବା ତାହା ଭଗବାନଙ୍କୁ ଅର୍ପଣ କରାଯାଇଛି । ସେମାନଙ୍କର ବିଶ୍ୱାସ ଯେ ଆସକ୍ତ ଅଥବା ଇନ୍ଦ୍ରିୟମାନଙ୍କର ବଶୀଭୂତ ହୋଇ କେବେହେଲେ ଭୋଗ ପ୍ରସ୍ତୁତ କରାଯାଏ ନାହିଁ କିମ୍ବା ସେବନ ମଧ୍ୟ କରାଯାଏ ନାହିଁ । ଭୋଗ ପ୍ରସ୍ତୁତ କରାଯିବା ସମୟରେ ଏବଂ ଅନ୍ୟକୁ

ଦେବା ସମୟରେ ସାଧାରଣତଃ ମାନବର ଧ୍ୟାନ ଭଗବାନଙ୍କ ନିକଟରେ ଥାଏ ।

ଏଣୁ ବର୍ତ୍ତମାନ ପରମପିତା ପରମାତ୍ମା ଶିବ ଆମ୍ଭମାନଙ୍କୁ ଶିକ୍ଷା ଦେଉଛନ୍ତି ଯେ ମନର ପ୍ରଭାବ ମଧ୍ୟ ଅନ୍ନ ଉପରେ ପ୍ରତିଫଳିତ ହୁଏ । ତେଣୁ ଭୋଜନ ପ୍ରସ୍ତୁତ କରିବା ବ୍ୟକ୍ତିର ସ୍ଥିତି ଉପରେ ଅନ୍ନର ସାତ୍ତ୍ୱିକତା ନିର୍ଭର କରେ ଏବଂ ଏଥିପାଇଁ ଆମ୍ଭେମାନେ ବିଶେଷ ଧ୍ୟାନ ଦେବା ଦରକାର । ଆଜିକାଲି ହୁଏତ ଲୋକମାନେ ଭୋଜନ ପ୍ରସ୍ତୁତ କରିବା ସମୟରେ ଏହି ଧ୍ୟାନ ଦେଉଛନ୍ତି ଯେ ବାସନ ସଫା ଅଛି ନା ନାହିଁ, ଲୁଗାପଟା ସଫା ଅଛି ନା ନାହିଁ ଅଥବା ଖାଦ୍ୟ ପଦାର୍ଥ ଉପରେ ଘୋଡ଼ଣି ଅଛି ନା ନାହିଁ ଇତ୍ୟାଦି ଇତ୍ୟାଦି । ମାତ୍ର ଯେପରି ବାହାରର ସ୍ୱଚ୍ଛତା ଜରୁରୀ ଅଟେ ସେହିପରି ଭୋଜନ ପ୍ରସ୍ତୁତକାରୀର ମାନସିକ ପବିତ୍ରତା ଏକାନ୍ତ ଆବଶ୍ୟକ । ଯଦି ଭୋଜନ ପ୍ରସ୍ତୁତକାରୀ ବାସ୍ତବରେ ତମୋଗୁଣୀ ଏବଂ ବିକାରୀ ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ପାଳନ କରୁ ନ ଥାଏ ଅଥବା ତା'ର ଦୃଷ୍ଟି ବୃତ୍ତି ଅପବିତ୍ର ହେଉଥାଏ, ତେବେ ତା' ଦ୍ୱାରା ପ୍ରସ୍ତୁତ କରାଯାଇଥିବା ଭୋଜନ ଯେଉଁ ବ୍ୟକ୍ତି ସେବନ କରେ, ତା ପାଖରେ ଏତାଦୃଶ ସଂସ୍କାର ଉତ୍ପନ୍ନ ହେବାର ସମ୍ଭାବନା ରହିଛି ।

## ପବିତ୍ର ବୃତ୍ତି ଏବଂ ଦୃଷ୍ଟି ଦ୍ୱାରା ଅନ୍ନର ପବିତ୍ରତା

**ଜିଜ୍ଞାସୁ**—ମନର ବୃତ୍ତିର ପ୍ରଭାବ ଅନ୍ନ ଉପରେ କିପରି ପ୍ରତିଫଳିତ ହେଉଛି, ସେସବୁ ଆପଣ ମୋତେ ବୁଝେଇଲେ । ବର୍ତ୍ତମାନ ଆପଣ କହୁଛନ୍ତି ଯେ ଦୃଷ୍ଟି ମଧ୍ୟ ପବିତ୍ର ହେବା ଆବଶ୍ୟକ । ଏହାର ଅର୍ଥ କ'ଣ ? ଦୃଷ୍ଟିର କ'ଣ ଅନ୍ନ ଉପରେ ପ୍ରଭାବ ପଡ଼ିପାରେ ?

**ବ୍ରହ୍ମାକୁମାରୀ**—ଦୃଷ୍ଟିର ପ୍ରଭାବ ଅନ୍ନ ଉପରେ ମଧ୍ୟ ପଡ଼େ । ଆଖି ବାସ୍ତବରେ ମନ ଅଥବା ଆତ୍ମାର କବାଟ । ଭ୍ରୂକୁଟୀରେ ଆତ୍ମ

ଅବସ୍ଥାନ କରେ ଏବଂ ଆତ୍ମାର ସବୁଠାରୁ ନିକଟତମ ଇନ୍ଦ୍ରିୟ ହେଉଛି ଆଖି । ଯଦି ମନରେ କ୍ରୋଧ ଉତ୍ପନ୍ନ ହୁଏ ତେବେ ଆଖି ହଠାତ୍ ଲାଲ ହୋଇଯାଏ । ଯଦି ସ୍ନେହ ଉତ୍ପନ୍ନ ହୁଏ, ତେବେ ତାହା ମଧ୍ୟ ଆଖିରେ ଝଲକ ସୃଷ୍ଟି କରେ । ଯଦି କୌଣସି ବ୍ୟକ୍ତି ଅନ୍ୟ ପାଇଁ କାମ-ଭାବନା ଅଥବା ଈର୍ଷା-ଭାବନା ରଖେ, ତେବେ ଅନ୍ୟମାନେ ତା' ଝଗ୍ରପ ଦୃଷ୍ଟି ଭଙ୍ଗୀରୁ ତା'ର ମନୋଭାବ ଜାଣିପାରନ୍ତି । ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ଆତ୍ମାର ବିଚାରଧାରା ବା ଭାବନା ଆଖିଦ୍ୱାରା ପ୍ରକଟିତ ହୁଏ । ଯଦି କେହି ଜଣେ ଖାଦ୍ୟ ତିଆରି କରେ, ତେବେ ସେ ତା'ର ଦୃଷ୍ଟି ଦେଇ ନିଷ୍ଟୟ ତିଆରି କରିବ । ଆଖି ତ ବନ୍ଦ କରି ପ୍ରସ୍ତୁତ କରିବ ନାହିଁ । ଆତ୍ମାର ମାନସିକ କ୍ରିୟା ହିଁ ଏହି ଆଖି-ଦ୍ୱାରା ପ୍ରସ୍ଫୁଟିତ ହୋଇଥାଏ । ତେଣୁ ଏଥିରୁ ସିଦ୍ଧ ହୁଏ ଯେ ଅଖି ଦ୍ୱାରା ମନ ଅଥବା ଆତ୍ମାର ପ୍ରଭାବ ଅନ୍ନ ଉପରେ ପଡ଼େ ।

ଏହି ମାନ୍ୟତାକୁ ବାସ୍ତବ ଯେବରେ ଆପଣ ହୁଏତ ଅନୁଭବ କରିଥିବେ । ଦୁନିଆଁରେ କେତେକ ନିଷ୍ଠାଳୁ ବ୍ୟକ୍ତି ଅଛନ୍ତି, ଯେଉଁ-ମାନେ କି ଫଳ ଓ ମିଠେଇ ଇତ୍ୟାଦି ପଦାର୍ଥ ମହାତ୍ମାଙ୍କ ପାଖକୁ ନେଇ କହନ୍ତି ଯେ—"ମହାରାଜ, ଏହା ଉପରେ ଦୟାକରି ଦୃଷ୍ଟି ଦିଅନ୍ତୁ ।" ସେମାନେ ଭାବନ୍ତି ଯେ ମହାନ ଏବଂ ପବିତ୍ର ଆତ୍ମାମାନଙ୍କର ଦୃଷ୍ଟିରେ ବହୁତ ଶକ୍ତି ମିଳେ ଏବଂ ତାର ପ୍ରଭାବ ମଧ୍ୟ ଅନ୍ୟ ଉପରେ ପଡ଼େ । କେତେକ ବ୍ୟକ୍ତିଙ୍କର ମଧ୍ୟ ଅଭ୍ୟାସ ଅଛି ଯେ ଯଦି କୌଣସି ବ୍ୟକ୍ତି ସେମାନଙ୍କର ଭୋଜନକୁ ଲାଳସାପୂର୍ଣ୍ଣ ଦୃଷ୍ଟିରେ ଦେଖେ ଅଥବା ଈର୍ଷା ଓ ଅପବିତ୍ର ଦୃଷ୍ଟିରେ ଦେଖେ ତେବେ ସେମାନେ ଭାବନ୍ତି ଯେ ସେହି ଭୋଜନରେ ତାର ଦୃଷ୍ଟି ପଡ଼ିଗଲା ଏବଂ ଏପରିକି ସେମାନେ ସେହି ଭୋଜନକୁ ମଧ୍ୟ ତ୍ୟାଗ କରନ୍ତି । ଲୋକମାନେ ମଧ୍ୟ କଥାବାର୍ତ୍ତା ସମୟରେ ନିଜ କଥା ପ୍ରକାଶ କରିବାକୁ ଯାଇ କହନ୍ତି ଯେ—"ବନ୍ଧୁବର, ଆପଣଙ୍କ କୃପାଦୃଷ୍ଟିରୁ ମୋର ସବୁ କାର୍ଯ୍ୟ ଠିକ୍‌ଭାବରେ

ହୋଇଛି ।" ତେଣୁ ଏସବୁ କଥାର ତାତ୍ପର୍ଯ୍ୟ ହେଉଛି ଯେ ଦୃଷ୍ଟିର ପ୍ରଭାବ ମନ ଉପରେ ପଡ଼େ ।

ତେଣୁ ଭୋଜନ ପ୍ରସ୍ତୁତକାରୀର ମନ ପବିତ୍ର ହେବା ଉଚିତ । ତାର ମନରେ ଶୁଦ୍ଧ ବିଚାର ଆସିବା ସଙ୍ଗେ ସଙ୍ଗେ ତାର ଦୃଷ୍ଟି ବୃତ୍ତି ମଧ୍ୟ ପବିତ୍ର ହେବା ଏକାନ୍ତ ଆବଶ୍ୟକ । ତା'ର ମନରେ କାମ-ବାସନା, କ୍ରୋଧ ଲୋଭାଦି ବିକାରର ତରଙ୍ଗ ସୃଷ୍ଟିହେବା ଉଚିତ ନୁହେଁ । ଯେ କ୍ରୁଦ୍ଧ, ଅସନ୍ତୁଷ୍ଟ ଅଥବା ଇନ୍ଦ୍ରିୟମାନଙ୍କର ବଶୀଭୂତ ହୋଇ ଖାଦ୍ୟ ପ୍ରସ୍ତୁତ କରିବା ପରିବର୍ତ୍ତେ ସଦା ଆତ୍ମନିଷ୍ଠ ସ୍ଥିତିରେ ସ୍ଥିତ ହୋଇ, ପରମାତ୍ମାଙ୍କ ସ୍ମୃତିରେ ରହି, ଅନ୍ୟର ମନକୁ ଶୁଦ୍ଧ କରିବାର ସେବାକୁ ନିଜର କର୍ତ୍ତବ୍ୟ ଭାବି, ଖୁସିର ତରଙ୍ଗରେ ଭାସମାନ ହୋଇ ଯଦି ଖାଦ୍ୟ ପ୍ରସ୍ତୁତ କରେ ତେବେ ସେହି ଖାଦ୍ୟ ସେବନକାରୀ ଆତ୍ମାର ନିଶ୍ଚୟ କଲ୍ୟାଣ ହୁଏ, ବୁଦ୍ଧି ଶୁଦ୍ଧ ହୁଏ ତଥା ମନ ମଧ୍ୟ ପବିତ୍ର ଏବଂ ଶାନ୍ତ ହୁଏ । ମନେରଖିବା ଦରକାର ଯେ ଯେଉଁମାନେ କାମ-ବାସନା ଭୋଗ କରନ୍ତି, ଯେଉଁମାନେ କ୍ରୋଧୀ ଏବଂ ପରମାତ୍ମାଙ୍କ ସ୍ମୃତିରେ ରହିବା ପାଇଁ ଅଭ୍ୟାସ କରନ୍ତି ନାହିଁ, ସେମାନଙ୍କଦ୍ୱାରା ପ୍ରସ୍ତୁତ ଖାଦ୍ୟ ସତୋଗୁଣୀ ନ ହୋଇ ସଦା ଅଶୁଦ୍ଧ ବା ତମୋଗୁଣୀ ହୋଇଥାଏ ।

**ଜିଜ୍ଞାସୁ**—ଆପଣଙ୍କର କହିବାର ଅଭିପ୍ରାୟ ହେଉଛି ଯେ ଭୋଜନ ପ୍ରସ୍ତୁତକାରୀ ଯଦି ବ୍ରହ୍ମଚର୍ଯ୍ୟାଦି ନିୟମ ପାଳନ କରୁଥାଏ ତେବେ ସେହି ଭୋଜନ ସତୋଗୁଣୀ ହେବ ।

**ବ୍ରହ୍ମାକୁମାରୀ**—ହଁ, ଏହା ହେଉଛି ପରମପିତା ପରମାତ୍ମାଙ୍କର ଆଜ୍ଞା ବ୍ରହ୍ମଚର୍ଯ୍ୟ ପାଳନ କରିବାଦ୍ୱାରା, ମନ-ବୁଦ୍ଧି ଆଧାରରେ ଭୋଜନକୁ ପରମପିତା ପରମାତ୍ମାଙ୍କୁ ଅର୍ପଣ କରିବାଦ୍ୱାରା ଏବଂ ପରମାତ୍ମାଙ୍କର ସ୍ମୃତିରେ ସ୍ଥିତ ହୋଇ ଭୋଜନ ପ୍ରସ୍ତୁତ କରିବାଦ୍ୱାରା କଳିଯୁଗର

ତମୋଗୁଣୀ ପଦାର୍ଥ ସ୍ୱତଃ ସତୋଗୁଣୀ ହୋଇଯାଏ । ଗୀତାରେ ଭଗବାନଙ୍କର ମହାବାକ୍ୟ ରହିଛି ଯେ—"ଯେଉଁ ମନୁଷ୍ୟ ଭଗବାନଙ୍କୁ ଭୋଗ ନ ଲଗାଏ ସେ 'ଚୋର' ଯିଏ ବ୍ରହ୍ମଚର୍ଯ୍ୟ ପାଳନ ନ କରେ ସେ 'ଅସୁର' ଏବଂ ଯୋଗୀର ସର୍ବଦା ଯୁକ୍ତଯୁକ୍ତ ଆହାର ବ୍ୟବହାର କରିବା ଉଚିତ ।" ଯୋଗ-ଯୁକ୍ତ ହୋଇ ପ୍ରସ୍ତୁତ କରାଯାଇଥିବା ଭୋଜନ ହିଁ ବାସ୍ତବରେ 'ବୈଷ୍ଣବ ଭୋଜନ' । ତେଣୁ ଆପଣ ଭୋଜନ ଗ୍ରହଣ କରିବା ପୂର୍ବରୁ ପ୍ରଥମେ ପରମ-ପିତା ପରମାତ୍ମାଙ୍କ ସ୍ମୃତିରେ ସ୍ଥିତ ହୋଇ ସେହି ଖାଦ୍ୟକୁ ତାଙ୍କୁ ଅର୍ପଣ କରନ୍ତୁ ଏବଂ ନିଜକୁ ଏକ 'ଆତ୍ମା'-ନିଶ୍ଚୟ କରି ଭୋଜନ ଉପରେ ସତୋଗୁଣୀ ଦୃଷ୍ଟି ଦେଇ ପବିତ୍ର ଏବଂ ଯୋଗଯୁକ୍ତ ବ୍ୟକ୍ତିଦ୍ୱାରା ପ୍ରସ୍ତୁତ ହୋଇଥିବା ଭୋଜନ ଗ୍ରହଣ କରନ୍ତୁ ।

ପୁନଶ୍ଚ ଆପଣ ମନେରଖିବା ଦରକାର ଯେ ଭୋଜନରେ ନିୟୋଜିତ ଅର୍ଥ ଶୁଦ୍ଧ ଉପାୟରେ ଉପାର୍ଜନ କରାଯିବା ସର୍ବଦା ବିଧେୟ ।

ଭୋଜନ ସାତ୍ତ୍ୱିକତା ସହିତ ଆପଣ ଏକଥା ମଧ୍ୟ ମନେରଖିବା ଉଚିତ ଯେ, ଭୋଜନ ସମୟରେ ସର୍ବଦା ସଂଯମ ରକ୍ଷା କରି ଆବଶ୍ୟକତା ଅନୁସାରେ ଖାଇବା ଦରକାର । ବାରମ୍ବାର ଖାଇବା ଏବଂ ବିନା ଆବଶ୍ୟକତାରେ ଖାଇବା ମଧ୍ୟ 'ଯୁକ୍ତ-ଆହାର'ର ପରିଭାଷାରୁ ବହିର୍ଭୂତ । ଯୋଗାଭ୍ୟାସୀ ଅଢ଼େଇ ଇଞ୍ଚ ଲମ୍ବବିଶିଷ୍ଟ ଜିହ୍ୱାର ସ୍ୱାଦ ଦ୍ୱାରା ବଶୀଭୂତ ହେବା ଉଚିତ ନୁହେଁ । ଯୋଗାଭ୍ୟାସୀର ଅର୍ଥ ହେଉଛି ଇନ୍ଦ୍ରିୟଜିତ୍ । ଏତଦ୍‌ବ୍ୟତୀତ ସେ ତା'ର ଖାଦ୍ୟଭଣ୍ଡାରକୁ ନିଜର ବୋଲି ନ ଭାବି ପରମପିତା ଶିବଙ୍କର ଭଣ୍ଡାର ବୋଲି ବିଚାର କରିବା ଦରକାର ଏବଂ ଭୋଜନକୁ ଶିବ-ପ୍ରସାଦ ମାନି ବହୁତ ଶ୍ରେଷ୍ଠ ଭାବନାରେ ସେବନ କରିବା ଉଚିତ ।

**ଜିଜ୍ଞାସୁ**—ଆଦି ସନାତନ ଧର୍ମ ବ୍ୟତୀତ ଅନ୍ୟାନ୍ୟ ଧର୍ମାବଲମ୍ବୀ-ମାନେ କ'ଣ ଅନ୍ନଶୁଦ୍ଧି ଉପରେ ଧ୍ୟାନ ଦିଅନ୍ତି କି ?

# ବୌଦ୍ଧଧର୍ମରେ ଅନ୍ନ-ଶୁଦ୍ଧି ଉପରେ ଧ୍ୟାନ

ବ୍ରହ୍ମାକୁମାରୀ – ସମସ୍ତ ଥିଲି, ଯେତେବେଳେ କି ସବୁ ଧର୍ମର ଲୋକମାନେ ଅନ୍ନର ଶୁଦ୍ଧତା ଉପରେ ବିଶେଷ ଧ୍ୟାନ ଦେଉଥିଲେ । ସେମାନେ କୌଣସି ଖରାପ ଓ ଅପବିତ୍ର ବୃତ୍ତିଯୁକ୍ତ ଗୃହସ୍ଥ ହାତରୁ ଭୋଜନ ଗ୍ରହଣ କରିବା ତ ଦୂରର କଥା,. ଏପରିକି ଜଳ ମଧ୍ୟ ସ୍ପର୍ଶ କରୁ ନ ଥିଲେ । ଜ୍ଞାନ-ଧ୍ୟାନରତ ସନ୍ନ୍ୟାସୀ ଏବଂ ବୌଦ୍ଧଭିକ୍ଷୁମାନେ ଏହି ନିୟମ ଉପରେ ବିଶେଷ ସାବଧାନ ରହୁଥିଲେ । କାଳକ୍ରମେ ଅନ୍ନ-ଶୁଦ୍ଧି ଉପରୁ ଲୋକ-ମାନଙ୍କର ଧ୍ୟାନ ଧୀରେ ଧୀରେ ଦୂରେଇବାକୁ ଲାଗିଲା । ଏଣୁ ଆହାର ଭ୍ରଷ୍ଟ ହେବାରୁ ସେମାନଙ୍କ ଜୀବନରେ ଭ୍ରଷ୍ଟତାର ଗତି ମଧ୍ୟ ତୀବ୍ରତର ହେବାକୁ ଲାଗିଲା । ଏହାର ପରିଣାମସ୍ୱରୂପ ମନୁଷ୍ୟର ମନ ଓ ବୁଦ୍ଧିରେ ଏପରି ପରିବର୍ତ୍ତନ ଆସିଲା ଯେ ଆଜି ଜ୍ଞାନର କୌଣସି ଶବ୍ଦ ସେମାନଙ୍କୁ ପ୍ରଭାବିତ କରିପାରୁ ନାହିଁ । ଯଦି ଆମ୍ଭେମାନେ ଆର୍ଯ୍ୟ ସମାଜ, ବୌଦ୍ଧ, ଶିଖ୍ ପ୍ରଭୃତି ଧର୍ମଗୁଡ଼ିକର ଧର୍ମସ୍ଥାପକମାନଙ୍କ ଜୀବନ କାହାଣୀ ଉପରେ ଦୃଷ୍ଟି ପକାଇବା, ତେବେ ଜାଣିପାରିବା ଯେ ଉକ୍ତ ସ୍ଥାପକମାନେ ଶୁଦ୍ଧ ଭୋଜନ ଉପରେ ବିଶେଷ ଧ୍ୟାନ ଦେଇଥିଲେ । ତେଣୁ ଅନ୍ନ ଗ୍ରହଣ ପୂର୍ବରୁ ଅନ୍ନଦାତାର ଦୃଷ୍ଟି, ବୃତ୍ତି ଏବଂ ଧନ ଉପାର୍ଜନର ପନ୍ଥା ବିଷୟରେ ଜାଣିବାପାଇଁ ବିଶେଷ ଧ୍ୟାନ ଦେବା ଅତ୍ୟାବଶ୍ୟକ ।

## ଏକ ଦୃଷ୍ଟାନ୍ତ

ବୌଦ୍ଧଧର୍ମର ବିଭିନ୍ନ କାହାଣୀଗୁଡ଼ିକ ମଧ୍ୟରୁ 'ସୁନ୍ଦର ସମୁଦ୍ର କୁମାର'ର ଜୀବନ-କାହାଣୀ ଅନ୍ୟତମ । ସୁନ୍ଦର ସମୁଦ୍ର କୁମାର ଗୋଟିଏ କୋଟିପତି ପରିବାରରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନରୁ ସେ ଅଚଳାଚଳ ସମ୍ପତ୍ତିର ମାଲିକ ମଧ୍ୟ ଥିଲେ । ସେ ଦିନେ ଦେଖିଲେ ଯେ କେତେକ ଲୋକ ସେମାନଙ୍କ ହାତରେ ଫୁଲମାଳ ନେଇ ଅନ୍ୟ ଗୋଟିଏ ଗ୍ରାମକୁ ଯାଉଛନ୍ତି । ସେ ସେହି ବ୍ୟକ୍ତିମାନଙ୍କୁ ସେମାନଙ୍କର ଯାତ୍ରାର

ଉଦ୍ଦେଶ୍ୟ ପଚ୍ଚାରବା ପରେ ସେ ଜାଣିବାକୁ ପାଇଲେ ଯେ ସେମାନେ ବୁଦ୍ଧଦେବଙ୍କଠାରୁ ଧର୍ମଶିକ୍ଷା କରିବାପାଇଁ ଯାଉଛନ୍ତି । ଧର୍ମଶିକ୍ଷା କରିବା କଥା ଶୁଣି ତାଙ୍କ ମନରେ ଅପୂର୍ବ ଅଭିଳାଷ ଜାତ ହେଲା ଏବଂ ସେ ସେମାନଙ୍କ ସହିତ ବୁଦ୍ଧଙ୍କ ନିକଟକୁ ଗଲେ । ସେହି ଗ୍ରାମରେ ପହଞ୍ଚି ସେ ବୁଦ୍ଧଙ୍କର ଉପଦେଶ ଶୁଣି ବହୁତ ପ୍ରଭାବିତ ହେଲେ ଏବଂ ସେହି ସମୟରେ ସେ ତାଙ୍କର ଧନ-ସମ୍ପତ୍ତି ଓ ଘରଦ୍ୱାର ତ୍ୟାଗ କରି ବୁଦ୍ଧଙ୍କର ସଙ୍ଘରେ ସମ୍ମିଳିତ ହେବାର ଦୃଢ଼ ସଙ୍କଳ୍ପ ନେଲେ । ସତ୍ସଙ୍ଗର ସମାପ୍ତି ପରେ ସେ ତାଙ୍କର ବିଚାରକୁ ବୁଦ୍ଧଙ୍କ ସମ୍ମୁଖରେ ରଖିଲେ । କିନ୍ତୁ ବୁଦ୍ଧ ଉତ୍ତର ଦେଲେ ଯେ—"ଆପଣ ପ୍ରଥମେ ଆପଣଙ୍କର ପିତାମାତାଙ୍କର ସମ୍ମତି-ପତ୍ର ଆଣନ୍ତୁ ତା'ପରେ ଆପଣଙ୍କୁ ଏହି ସଙ୍ଘରେ ରଖାଯାଇପାରିବ । ଏହା ହେଉଛି ଆମର ନିୟମ ।" ସୁନ୍ଦର ସମୁଦ୍ର କୁମାର ଘରକୁ ଯାଇ ମାତା-ପିତାଙ୍କଠାରୁ ବହୁତ ଯତ୍ନସହକାରେ ଆବଶ୍ୟକୀୟ ସମ୍ମତି-ପତ୍ର ଆଣିଲେ ଏବଂ ସେହିଦିନଠାରୁ ସେ ସନ୍ନ୍ୟାସ କରି ଉକ୍ତ ସଙ୍ଘରେ ନିୟମପୂର୍ବକ ଜୀବନ ଅତିବାହିତ କଲେ । କିଛିଦିନ ପରେ ସେ ସେହି ଗାଁ ଛାଡ଼ି ଅନ୍ୟ ଗୋଟିଏ ଗାଁରେ ଯାଇ ରହିଲେ ।

ଦିନେ ତାଙ୍କ ନିଜ ଗାଁରେ ଗୋଟିଏ ମେଳା ହେଉଥାଏ । ତାଙ୍କର ପିତାମାତା ସେହି ମେଳା ଦେଖିବାକୁ ଯାଇଛନ୍ତି । ସୁନ୍ଦର ସମୁଦ୍ର କୁମାରର ଅନେକ ସାଙ୍ଗସାଥୀ ସେହି ମେଳାରେ ଖେଳୁଥିବା ଏବଂ ମଉଜ କରୁଥିବାର ବିଭିନ୍ନ ଦୃଶ୍ୟ ଦେଖି ସେମାନେ କାନ୍ଦିବାକୁ ଲାଗିଲେ । ସେମାନେ ମନେ ମନେ ଭାବୁଥିଲେ ଯେ ସେମାନଙ୍କର ପୁତ୍ର ଯଦି ଆଜି ସେମାନଙ୍କ ପାଖରେ ଥାଆନ୍ତା ତେବେ କେତେ ମଉଜ କରୁ ନ ଥାନ୍ତା—ମାତ୍ର ତାକୁ ବର୍ତ୍ତମାନ ଫେରାଇ ଆଣିବା ପ୍ରାୟ ସମ୍ଭବ ନୁହେଁ । ସେହି ସମୟରେ ଗୋଟିଏ ବେଶ୍ୟା ସେମାନଙ୍କ ଘରେ ଆସି ପହଞ୍ଚିଲା ଏବଂ ସେମାନଙ୍କର ଦୁଃଖର କାରଣ ପଚାରିଲା । ବେଶ୍ୟା ସବୁ ଘଟଣା ଶୁଣି ସାରିବା ପରେ ସେମାନଙ୍କୁ ଉତ୍ତର ଦେଲା ଯେ ସେ ସୁନ୍ଦର ସମୁଦ୍ର କୁମାରଙ୍କୁ ଏହି ଦୁନିଆଁକୁ ଫେରାଇ ଆଣିବା ପାଇଁ ସମର୍ଥ, ମାତ୍ର ତା'ର

ପ୍ରଶ୍ନ ହେଉଛି ଯେ, ସେ ଯଦି ଏଥିରେ କୃତକାର୍ଯ୍ୟ ହୁଏ ତେବେ ତାକୁ କ ପୁରସ୍କାର ମିଳିବ ? ସୁନ୍ଦର ସମୁଦ୍ର କୁମାରର ମା ସେହି ବେଶ୍ୟାକୁ ସେମାନଙ୍କର ସବ ସମ୍ପତ୍ତିର ଅଧିକାରିଣୀ କରିବାପାଇଁ ପ୍ରତିଜ୍ଞା କରିଥିଲେ । ଏହି କାର୍ଯ୍ୟ ସମ୍ପାଦନ ପାଇଁ ସେହି ବେଶ୍ୟା କିଛି ଟଙ୍କା ନେଇ ସେମାନଙ୍କ-ଠାରୁ ବିଦାୟ ନେଲା ।

ଯେତେବେଳେ ସୁନ୍ଦର ସମୁଦ୍ର କୁମାର ରାଜଗହା ଗ୍ରାମରେ ରହୁ-ଥାଆନ୍ତି । ବେଶ୍ୟା ସେହି ଗ୍ରାମରେ ପହଞ୍ଚି ଦେଖିଲେ ଯେ ସୁନ୍ଦର ସମୁଦ୍ର କୁମାର ଭିକ୍ଷା କରିବା ନିମିତ୍ତ ପ୍ରତିଦିନ କୌଣସି ନା କୌଣସି ସ୍ଥାନକୁ ଯାଉଛନ୍ତି । ତା'ପରେ ସେହି ବେଶ୍ୟା ଗୋଟିଏ ଗଳିରେ ଗୋଟିଏ ସୁନ୍ଦର ଘର ନେଇ ରହିଲା । ସେ ଗଳିକୁ ପ୍ରାୟ ଅଧିକାଂଶ ସମୟ ସୁନ୍ଦର ସମୁଦ୍ର କୁମାର ଭିକ୍ଷାର୍ଥେ ଯାଉଥାଆନ୍ତି । ସେହି ବେଶ୍ୟା ସକାଳୁ ସକାଳୁ ବହୁତ ସୁନ୍ଦର ଭୋଜନ ପ୍ରସ୍ତୁତ କରି ରଖୁଥିଲା ଏବଂ ଯେତେବେଳେ ସନ୍ନ୍ୟାସୀ ସୁନ୍ଦର ସମୁଦ୍ର କୁମାର ସେଠାକୁ ଆସୁଥିଲେ ସେତେବେଳେ ସେ ତାଙ୍କୁ ସେହି ଖାଦ୍ୟକୁ ଭିକ୍ଷାରୂପେ ଦାନ କରୁଥିଲା । ଏପରି କିଛିଦିନ ଗଲା ପରେ ଦିନେ ସେ କହିଲା "ହେ ମହୋଦୟ, ଏଠାରେ ହିଁ ବସି ଆପଣ ଭୋଜନ କରନ୍ତୁ ।" ଏହା କହି ସେ ତାଙ୍କର ବାସନ ମାଗିଲା ଏବଂ ସନ୍ନ୍ୟାସୀ ମଧ୍ୟ ଦେଇଦେଲେ । ସେଥିରେ ବେଶ୍ୟା ବିଭିନ୍ନ ସ୍ୱାଦିଷ୍ଟ ଖାଦ୍ୟ ଆଣି ତାଙ୍କୁ ଖାଇବାକୁ ଦେଲା ଏବଂ ଭୋଜନ ପରେ କହିଲା—"ହେ ମହାତ୍ମନ୍, ଏହା ପରିଷ୍କାର ସ୍ଥାନ, ତେଣୁ ଆପଣ ଏଠାରେ ପ୍ରତିଦିନ ବସି ଭୋଜନ ଗ୍ରହଣ କରନ୍ତୁ ।" ଏହିପରି ସେ ପ୍ରତିଦିନ ତାଙ୍କୁ ବସାଇ ତାର ନିଜ ହାତରେ ପ୍ରସ୍ତୁତ ହୋଇଥିବା ଭୋଜନ ଦେବାକୁ ଲାଗିଲା ।

ଏହାପରେ ସେ ଗଳିର ପିଲାମାନଙ୍କୁ ମିଠେଇ ଖାଇବାକୁ ଦେଇ ସେମାନଙ୍କ ମନକୁ ଜୟ କଲା । ଦିନେ ସେ ପିଲାମାନଙ୍କୁ କହିଲା— "ଯେତେବେଳେ ସେହି ଭିକ୍ଷୁ ଏଠାକୁ ଆସିବେ ସେତେବେଳେ ତୁମ୍ଭେମାନେ ଏଠାକୁ ଚାଲିଆସିବ ଏବଂ ଧୂଳି ଉଡ଼ାଇବ ଏବଂ ମନାକଲେ ମଧ୍ୟ ମୋ

କଥାକୁ ମାନିବ ନାହିଁ ।’’ ଏଣୁ ତା ପରଦିନ ଯେତେବେଳେ ସେ ଭିକ୍ଷୁ ଆସି ପହଞ୍ଚିଲେ ଏବଂ ଭୋଜନ କରିବାକୁ ଆରମ୍ଭ କଲେ ସେତେବେଳେ ପିଲାମାନେ ଆସି ଧୂଳି ଉଡ଼ାଇବାକୁ ଲାଗିଲେ ଏବଂ ମନା କରିବା ସତ୍ତ୍ୱେ ମଧ୍ୟ ମାନିଲେ ନାହିଁ । ତେଣୁ ତା’ପରଦିନଠାରୁ ବେଶ୍ୟା କଥା ମାନି ଭିକ୍ଷୁ ଘର ମଧ୍ୟରେ ଭୋଜନ କରିବାକୁ ଲାଗିଲେ । ପୁନଶ୍ଚ କିଛିଦିନ ପରେ ବେଶ୍ୟା ପିଲାମାନଙ୍କୁ ଶିକ୍ଷାଦେଲେ ଯେ ଯେତେବେଳେ ଭିକ୍ଷୁ ଘର ଭିତରେ ବସିବେ ଏବଂ ଭୋଜନ କରିବେ ସେତେବେଳେ ତୁମେମାନେ ଏଠାକୁ ଆସି ଝାପଟ ପାଟି କରିବ ଏବଂ ମନା କରିବା ସତ୍ତ୍ୱେ ମଧ୍ୟ ଗୋଳମାଳ ଚାଲୁ ରଖିବ । ଏଣୁ ଯେତେବେଳେ ଏପରି ଘଟଣା ଘଟିଲା, ସେତେବେଳେ ବେଶ୍ୟା ସେହି ଘରର ଉପର ମହଲକୁ ଯାଇ ଶାନ୍ତିରେ ଭୋଜନ କରିବାପାଇଁ ଭିକ୍ଷୁଙ୍କୁ ଅନୁରୋଧ କଲା ଏବଂ ଭିକ୍ଷୁ ମଧ୍ୟ ତାହା ସ୍ୱୀକାର କଲେ । ତା’ପରେ ବେଶ୍ୟା ତାର ଅଶ୍ଳୀଳ କାମନା ତାଙ୍କ ନିକଟରେ ପ୍ରକାଶ କଲା ।

:

ଏହିପରି ଭାବରେ ସେହି ବେଶ୍ୟା ହାତରୁ ଭୋଜନ ଗ୍ରହଣ କରିବା-ଦ୍ୱାରା ବୈରାଗ୍ୟର ବଶୀଭୂତ ହୋଇ ଅଚଳାଚଳ ସମ୍ପତ୍ତିକୁ ପଦାଘାତ କରି ଏକ ଭିକ୍ଷୁ ଜୀବନ ଧାରଣ କରିଥିବା ସୁନ୍ଦର ସମୁଦ୍ର କୁମାର ତାଙ୍କର ଭିକ୍ଷୁ ଜୀବନର ଧର୍ମ-କର୍ମକୁ ଭୁଲି ବେଶ୍ୟା ଅଧିନତା ସ୍ୱୀକାର କରି-ଥିଲେ । ମାତ୍ର ଶେଷରେ ତାଙ୍କୁ ବହୁତ ପଶ୍ଚାତ୍ତାପ କରିବାକୁ ପଡ଼ିଥିଲା । ବେଶ୍ୟା ବାସ୍ତବରେ. ‘କାମ-ବୃତ୍ତି’ ଏବଂ ପୁରସ୍କାର ପାଇବା ଆଶାରେ ‘ଲୋଭ’ର ବଶୀଭୂତ ହୋଇଥିଲା । ଏଣୁ ତା’ର ଝଟପଟ ବୃତ୍ତିର ପ୍ରଭାବ ଅନ୍ନ ଉପରେ ପଡ଼ିବା ଫଳରେ ଭିକ୍ଷୁଙ୍କର ସ୍ୱାଦିଷ୍ଟ ଭୋଜନ ପ୍ରତି ଲୋଭ ଜାତ ହେଲା ଏବଂ ମାନସିକ ସ୍ଥିତିରେ ମଧ୍ୟ ଚହଲ ସୃଷ୍ଟି ହେଲା । କଥିତ ଅଛି ଯେ ବୁଦ୍ଧ ତାଙ୍କର ଆତ୍ମିକ ଶକ୍ତିଦ୍ୱାରା ତାଙ୍କୁ ପତିତାବସ୍ଥାରୁ ରକ୍ଷା ପାଇଥିଲେ । ଏହି କାହାଣୀ ବୌଦ୍ଧଗ୍ରନ୍ଥରେ ‘ସୁନ୍ଦର ସମୁଦ୍ର କୁମାର ଓ ବେଶ୍ୟା’ ଶୀର୍ଷକ ରୂପେ ପ୍ରସିଦ୍ଧ । ଏହାର ଆଲୋଚନା ବୁଦ୍ଧ ତାଙ୍କର ସର୍ବୋତ୍ତମ ଶିଷ୍ୟ ‘ଆନନ୍ଦ’ଙ୍କ ସହିତ କରିଥିଲେ । ଏଥିରୁ ଅନ୍ନ ପ୍ରସ୍ତୁତକାରୀ

ଏବଂ ଅନ୍ନଦାତାର ମନର ଅନ୍ନ ଉପରେ କି ପ୍ରଭାବ ପଡ଼ିପାରେ ତାହାର ସ୍ପଷ୍ଟୀକରଣ ମିଳେ ଏବଂ ଅନ୍ନକୁ ସେବନ କରିବା ବ୍ୟକ୍ତିର ସ୍ଥିତି କ'ଣ ହୁଏ, ତାହାର ମଧ୍ୟ ପ୍ରମାଣ ମିଳେ ।

## ଅନ୍ୟ ଏକ ଦୃଷ୍ଟାନ୍ତ

## ବୁଦ୍ଧଙ୍କର ସର୍ବୋତ୍ତମ ଶିଷ୍ୟ 'ଆନନ୍ଦ'ଙ୍କ ଉପରେ ମାୟାର ପ୍ରଭାବ

ବୌଦ୍ଧଗ୍ରନ୍ଥରେ ମଧ୍ୟ ଏପରି ଅନ୍ୟ ଏକ ବୃତ୍ତାନ୍ତ ରହିଛି । ସେଥିରେ ବର୍ଣ୍ଣନା କରାଯାଇଛି ଯେ ଜଣେ ରାଜାଙ୍କର ନିମନ୍ତ୍ରଣ ରକ୍ଷାକରି ମହାତ୍ମା ବୁଦ୍ଧ ଏବଂ ତାଙ୍କର ଶିଷ୍ୟମଣ୍ଡଳୀ ଭୋଜନ କରିବାପାଇଁ ଉକ୍ତ ରାଜାଙ୍କ ଘରକୁ ଯାଇଥିଲେ । ସେତେବେଳେ ତାଙ୍କର ମୁଖ୍ୟ ଶିଷ୍ୟ 'ଆନନ୍ଦ' କୌଣସି କାର୍ଯ୍ୟବଶତଃ ବାହାରକୁ ଯାଇଥିଲେ ଏବଂ ବୁଦ୍ଧଙ୍କର ପ୍ରସ୍ଥାନ ପରେ ଆସି ପହଞ୍ଚିଲେ । ତା'ପରେ ସେ ଭିକ୍ଷାପାତ୍ର ନେଇ ଭିକ୍ଷା କରିବାକୁ ବାହାରି ପଡ଼ିଲେ । ସେ ଭିକ୍ଷା ଗ୍ରହଣ କରିବା ସମୟରେ କେବେହେଲେ ଭିକ୍ଷାଦାତାଙ୍କ ବିଷୟରେ କିଛି ଜାଣୁ ନ ଥିଲେ । ଭିକ୍ଷା କରୁ କରୁ ସେ ଗୋଟିଏ ବେଶ୍ୟା ଘରେ ପହଞ୍ଚି ଭିକ୍ଷା ମାଗିବାକୁ ଲାଗିଲେ । ବେଶ୍ୟାର କନ୍ୟା ଆନନ୍ଦର ଶାରୀରିକ ସୌନ୍ଦର୍ଯ୍ୟରେ ମୋହିତ ହୋଇ ତାଙ୍କୁ ଯାଦୁ କରିବାପାଇଁ ସେ ତା'ର ମା'କୁ କହିଲା । କିଛି ସମୟ ପରେ ଆନନ୍ଦ ଭିକ୍ଷା ପଛେ ପଛେ ସେହି ବେଶ୍ୟାର ଘର ଭିତରକୁ ଚାଲିଗଲା ଏବଂ ସେଠାରେ ତା'ର ଦୃଷ୍ଟି-ବୃତ୍ତି ମଧ୍ୟ ଦୂଷିତ ହୋଇଗଲା । କିନ୍ତୁ କଥିତ ଅଛି ଯେ ବୁଦ୍ଧ ରାଜାଙ୍କ ପ୍ରାସାଦରେ ବସି ମଧ୍ୟ ଆନନ୍ଦର ଅବସ୍ଥାକୁ ଜାଣିପାରିଲେ ଏବଂ ସଙ୍ଗେ ସଙ୍ଗେ ସେ ତାଙ୍କର ଅନ୍ୟ ଏକ ଶିଷ୍ୟକୁ ଆନନ୍ଦ ପାଖକୁ ପଠାଇ ଆନନ୍ଦର ଅବସ୍ଥାରେ ପରିବର୍ତ୍ତନ ଆଣିଥିଲେ । ଏହି ଦୁଇଟି ବୃତ୍ତାନ୍ତରୁ ଏହା ସ୍ପଷ୍ଟ ଅନୁମେୟ ଯେ ସ୍ଥାନ, ଦୃଷ୍ଟି ଏବଂ ବୃତ୍ତିର ପ୍ରଭାବ ମଧ୍ୟ ମନୁଷ୍ୟର ମନ ଉପରେ

ପଡ଼େ । ଅନ୍ନ-ଦୋଷ ଏକ ବହୁତ ବଡ଼ ଦୋଷ ଅଟେ । ଯଦି ମନୁଷ୍ୟ ତା'ର ସ୍ୱରୂପରେ ସ୍ଥିତ ରହେ କିମ୍ବା ପରମପିତା ପରମାତ୍ମାଙ୍କ ସ୍ମୃତିରେ ସ୍ଥିତ ରହେ ତେବେ ପ୍ରଭାବ କମ୍ ପରିମାଣରେ ପଡ଼େ । ନଚେତ୍ ତାହା ସମ୍ପୂର୍ଣ୍ଣଭାବେ ଗ୍ରାସ କରେ । କିନ୍ତୁ ଆଜିକାଲିର ଦୁନିଆଁରେ ଭୌତିକବାଦ ଏବଂ ନାସ୍ତିକବାଦ ଅଧିକ ପରିମାଣରେ ମୁଣ୍ଡ ଟେକିଥିବାରୁ ଲୋକମାନେ ଭୋଜନ ଉପରେ ବହୁତ କମ୍ ଧ୍ୟାନ ଦେଉଛନ୍ତି । ଯେଉଁମାନେ ନିଜକୁ ଆସ୍ତିକ ବୋଲି ଭାବୁଛନ୍ତି ସେମାନେ ମଧ୍ୟ ମାଛ, ମାଂସ ଓ ମଦକୁ ତାମସିକ ଆହାର ବୋଲି ସ୍ୱୀକାର କରୁଛନ୍ତି, ମାତ୍ର ପ୍ରସ୍ତୁତକାରୀ ତଥା ଉପାର୍ଜନକାରୀର ଦୃଷ୍ଟି ଏବଂ ବୃତ୍ତି ଉପରେ କୌଣସି ଧ୍ୟାନ ଦେଉନାହାନ୍ତି ।

## ଆର୍ଯ୍ୟ ସମାଜର ସ୍ଥାପକ 'ଦୟାନନ୍ଦ'ଙ୍କ ଜୀବନର ଏକ ବୃତ୍ତାନ୍ତ

ଆର୍ଯ୍ୟ ସମାଜର ପ୍ରବର୍ତ୍ତକ ସ୍ୱାମୀ ଦୟାନନ୍ଦ ମଧ୍ୟ ଅନ୍ନଶୁଦ୍ଧି ଉପରେ ଅଧିକ ଧ୍ୟାନ ଦେଇଛନ୍ତି । ଆର୍ଯ୍ୟ ସମାଜର ପ୍ରସିଦ୍ଧ ଲେଖକ ଏବଂ ପ୍ରଚାରକ ଆନନ୍ଦ ସ୍ୱାମୀ ତାଙ୍କର 'ପ୍ୟାର ଋଷି' ଶୀର୍ଷକ ପୁସ୍ତକରେ ଭୋଜନ ସମ୍ବନ୍ଧୀୟ କେତେକ ବୃତ୍ତାନ୍ତ ଉଲ୍ଲେଖ କରିଛନ୍ତି । କୁକର୍ମୀର ଭୋଜନକୁ ସ୍ୱୀକାର ନ କରିବାପାଇଁ ସେ ଲେଖିଛନ୍ତି । ଏଥିରେ ସେ ଉଲ୍ଲେଖ କରିଛନ୍ତି ଯେ, ବେଶ୍ୟାରତ ଇତ୍ୟାଦି ଦୁର୍ବ୍ୟସନରେ ଲିପ୍ତଥିବା ମୁରାଦବାଦର ବଶିଷ୍ଟ ଧନୀ 'ସାହୁ ଶ୍ୟାମ ସୁନ୍ଦର' ଏକଦା ସ୍ୱାମୀଙ୍କୁ ତାଙ୍କ ଘରେ ଭୋଜନ ଗ୍ରହଣ କରିବା ପାଇଁ ପ୍ରାର୍ଥନା କରିଥିଲେ । ମାତ୍ର ସ୍ୱାମୀଜୀ ସେହି ପ୍ରାର୍ଥନାକୁ ସ୍ୱୀକାର କରି ନ ଥିଲେ, କିନ୍ତୁ ସେହି ସମୟରେ ଅନ୍ୟ ଜଣେ ସଜ୍ଜନ ଏହି ପ୍ରାର୍ଥନା କରିବାରୁ ତାହା ସ୍ୱାମୀ ସ୍ୱୀକାର କରିଥିଲେ । ଏହି ଘଟଣାରେ ସାହୁ ଶ୍ୟାମ ସୁନ୍ଦର ବନ୍ଧୁବର୍ଗ ହୋଇଥିଲେ ମଧ୍ୟ ସ୍ୱାମୀ ସେ ସମୟରେ ନୀରବ ରହିଥିଲେ ଏବଂ

ପରେ ତାଙ୍କୁ ଜଣାଇଥିଲେ ଯେ ସେ ଯେପର୍ଯ୍ୟନ୍ତ ତା'ର କୁକର୍ମ ତ୍ୟାଗ ନ କରିଛି ସେ ପର୍ଯ୍ୟନ୍ତ ସେ ତା' ଘରେ ଭୋଜନ ଗ୍ରହଣ କରିବେ ନାହିଁ ।

ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ବାସନାପୂର୍ଣ୍ଣ ଏବଂ ବ୍ୟସନ ମାନବ ହସ୍ତରୁ ଭୋଜନ ଗ୍ରହଣ କରିବା ଉଚିତ ନୁହେଁ । ଏହାର କାରଣ କ'ଣ ? କାରଣ ହେଉଛି ଯେ ତା'ର ଦୂଷିତ ବୃତ୍ତିର ପ୍ରଭାବ ଅନ୍ୟ ଉପରେ ପଡ଼େ ଏବଂ ପୁନଶ୍ଚ ଭୋଜନ ଗ୍ରହଣ କରିବା ବ୍ୟକ୍ତିର ମନକୁ ମଧ୍ୟ ଦୂଷିତ କରେ । ସେତେବେଳେ ଶ୍ୟାମସୁନ୍ଦର ଦୟାନନ୍ଦଙ୍କର ସତ୍ସଙ୍ଗକୁ ଆସୁଥିଲେ ଏବଂ ଉପଦେଶ ମଧ୍ୟ ଶୁଣୁଥିଲେ । ତେଣୁ ସେ ଭକ୍ତି ଏବଂ ଆଦର ଭାବନା ରଖି ସ୍ୱାମୀଙ୍କୁ ତାଙ୍କର ଘରକୁ ଆସିବା ପାଇଁ ନିମନ୍ତ୍ରଣ କରିଥିଲେ । କିନ୍ତୁ ଯଦି ମାନବର ଚରିତ୍ର ନାହିଁ କିମ୍ବା ମନ ବ୍ୟସନରହିତ ନୁହେଁ ତେବେ ତାର ଆଦର ଏବଂ ଭାବନାର କୌଣସି ମୂଲ୍ୟ ନାହିଁ ।

## ଗୁରୁ ନାନକଙ୍କର ଏକ ବୃତ୍ତାନ୍ତ

ଶିଖ୍ ଧର୍ମର ସ୍ଥାପକ 'ଗୁରୁ ନାନକ'ଙ୍କର ଜୀବନ-କାହାଣୀରେ ମଧ୍ୟ କେତେକ ବୃତ୍ତାନ୍ତ ଉଲ୍ଲେଖ ଅଛି । କଥିତ ଅଛି ଯେ, 'ଭାଗେ' ନାମକ ଏକ ଧନୀର ନିମନ୍ତ୍ରଣକୁ ସେ ଅସ୍ୱୀକାର କରିଥିଲେ ଏବଂ ଗୋଟିଏ କୁଡ଼ିଆରେ ରହୁଥିବା ଜଣେ ନିର୍ଧନ ଏବଂ ନମ୍ର ଜାତିର ବ୍ୟକ୍ତିଠାରୁ ଭୋଜନ ଗ୍ରହଣ କରିଥିଲେ । ସେହି ଧନୀ ନାନକଙ୍କୁ ଏହାର କାରଣ ପଚାରିବାରୁ ଗୁରୁ ନାନକ ସେହି ବ୍ୟକ୍ତିର ଏକ ରୁଟିକୁ ନେଇ ଚିପୁଡ଼ିବାରୁ ସେଥିରୁ ରକ୍ତ ବାହାରିଥିଲା ଏବଂ ସେହି ନିର୍ଧନର ରୁଟିକୁ ଚିପୁଡ଼ିବାରୁ ସେଥିରୁ ଦୁଧ ବାହାରିଥିଲା । ଏହି ଘଟଣା ଉପରେ ନାନକ କହିଥିଲେ ଯେ ଧନୀର ରୋଜଗାର ମିଥ୍ୟା ଏବଂ ସେ ଲୋକମାନଙ୍କର ରକ୍ତ ଶୋଷଣ କରି ତାର ଅର୍ଥ ଉପାର୍ଜନ

କରିଥିବା ସ୍ଥଳେ ସେହି ନିର୍ଧନ ବ୍ୟକ୍ତି ତା'ର ସ୍ପରୀତ ପରିଶ୍ରମଦ୍ୱାରା ସତ୍‌ମାର୍ଗରେ ତାର ଅର୍ଥ ଉପାର୍ଜନ କରିଛି ।

ଉପରୋକ୍ତ ବୃତ୍ତାନ୍ତଗୁଡ଼ିକରୁ ଏହା ସ୍ପଷ୍ଟ ଅନୁମେୟ ଯେ ଆମକୁ ଯେପରି ଅନ୍ନ ଦୋଷ ସ୍ପର୍ଶ ନ କରେ ସେଥିପାଇଁ ବିଶେଷ ଧ୍ୟାନ ଦେବା ଦରକାର । ସଙ୍ଗ-ଦୋଷ ଭଳି ଅନ୍ନ-ଦୋଷ ମଧ୍ୟ ମନୁଷ୍ୟ ମନକୁ ମଳିନ ଅଥବା ବିକ୍ଷିପ୍ତ କରିଦିଏ । ଏହାଦ୍ୱାରା ମନୁଷ୍ୟ ମନରେ ଚଞ୍ଚଳତା ଉତ୍ପନ୍ନ ହୁଏ, ବିଭିନ୍ନ ବାସନା ଜାଗ୍ରତ ହୁଏ ଏବଂ ଅବସ୍ଥା ବିଚଳିତ ହୁଏ । ବିଶେଷଭାବେ କାମ ଓ କ୍ରୋଧର ସଂସ୍କାରରେ ବଶୀଭୂତ ହୋଇଥିବା ବ୍ୟକ୍ତି ହାତରୁ ଭୋଜନ ଗ୍ରହଣ କରିବା ସର୍ବଦା ନିଷେଧ । କାରଣ ଏହି ଦୁଇ ବିକାର ସବୁଠାରୁ ବଳୀୟାନ୍ । ତେଣୁ ବର୍ତ୍ତମାନ ପରମପିତା ପରମାତ୍ମା ଶିବ ଆତ୍ମମାନଙ୍କୁ ଶିକ୍ଷା ଦେଉଛନ୍ତି ଯେ ଯୋଗଯୁକ୍ତ ଏବଂ ପବିତ୍ର ଅବସ୍ଥାରେ ସ୍ଥିତ ହୋଇ ନିଜେ ନିଜର ଭୋଜନ ପ୍ରସ୍ତୁତ କରିବା ସବୁଠାରୁ ଭଲ ଅଥବା କୌଣସି ପବିତ୍ର ବ୍ୟକ୍ତି ହାତରୁ ଭୋଜନ ଗ୍ରହଣ କରିବା ଉଚିତ ।

## ମହାଭାରତର ଏକ ଆଖ୍ୟାନ

ପ୍ରାୟ ସବୁ ଧର୍ମରେ ଅନ୍ନ-ଶୁଦ୍ଧି ଉପରେ ବହୁତ ନିୟମ ପାଳନ କରିବାପାଇଁ ବିଭିନ୍ନ ଉପଦେଶ ରହିଛି । ମହାଭାରତରେ ମଧ୍ୟ ଏକ ଆଖ୍ୟାନ ରହିଛି ଯେ ଯେତେବେଳେ ଭୀଷ୍ମ ଶର-ଶଯ୍ୟାରେ ଥିଲେ ସେତେବେଳେ ଅର୍ଜ୍ଜୁନ ତାଙ୍କଠାରୁ ଶିକ୍ଷା ନେବାପାଇଁ ତାଙ୍କ ପାଖକୁ ଯାଇଥିଲେ ଏବଂ ଭୀଷ୍ମ ମଧ୍ୟ ଅର୍ଜ୍ଜୁନଙ୍କୁ ଏକ ଶ୍ରେଷ୍ଠ ଶିକ୍ଷା ଦେଇଥିଲେ । ଅର୍ଜ୍ଜୁନ ପ୍ରଶ୍ନ କରିଥିଲେ ଯେ ଯେତେବେଳେ ଦ୍ରୌପଦୀଙ୍କର ବସ୍ତ୍ର ହରଣ ହେଲା ସେତେବେଳେ ସେ (ଭୀଷ୍ମ) ନୀରବ ରହିଥିଲେ କାହିଁକି ? ଭୀଷ୍ମ ଉତ୍ତର ଦେଇଥିଲେ—"ମୁଁ କୌରବମାନଙ୍କର ଅନ୍ନ ଖାଇଥିଲି ।

ସେହି ରକ୍ତ ମୋ ଧମନୀରେ ପ୍ରବାହିତ ହେଉଥିଲା । ବର୍ତ୍ତମାନ ତୁମର ଶର ଲାଗିବାରୁ ତାହା ଶରୀରରୁ ବାହାରି ଯାଉଛି । ତେଣୁ ସେହି ଅଶୁଦ୍ଧ ଅନ୍ନର ପ୍ରଭାବ ବର୍ତ୍ତମାନ କମ୍ ହେଉଛି ।"

## ଗୃହସ୍ଥମାନଙ୍କ ସମ୍ମୁଖରେ ବିଭିନ୍ନ ସମସ୍ୟା

ଜିଜ୍ଞାସୁ—ଭଉଣୀ, ଏସବୁ ନିଶ୍ଚୟ ଠିକ୍ । ମାତ୍ର ଏକ ପ୍ରଶ୍ନ ହେଉଛି ଯେ ଗୃହସ୍ଥମାନଙ୍କୁ ଏଣେତେଣେ ଯିବାକୁ ପଡ଼ୁଥିବାରୁ କେତେକ ସମସ୍ୟା ସମ୍ମୁଖରେ ଉପସ୍ଥିତ ହେଉଛି । ଆଜିକାଲି ଯୁଗରେ ଯେତେବେଳେ ଲୋକମାନେ ଈଶ୍ୱରୀୟ ଜ୍ଞାନ ଓ ଯୋଗ ଅଭ୍ୟାସ କରୁନାହାନ୍ତି ଏବଂ ଅନ୍ୟ ପକ୍ଷରେ ଚଳଚ୍ଚିତ୍ର ବିଳାସ-ବ୍ୟସନ ଏବଂ ଜିହ୍ୱାର ସ୍ୱାଦର ସାଧନାରେ ସଦା ଲିପ୍ତ ରହୁଛନ୍ତି, ସେତେବେଳେ ସାତ୍ତ୍ୱିକ ସ୍ୱଭାବଯୁକ୍ତ ମାନବ ପାଇବା ଅସମ୍ଭବ । ତେଣୁ ଏପରି ସ୍ଥିତିରେ କଣ କରାଯିବ ? ଯେତେବେଳେ ଜଣେ ଅନ୍ୟ ଜଣଙ୍କ ଘରକୁ ଯାଏ ଏବଂ ସେହି ଗୃହସ୍ଥ ସ୍ନେହ, ସମ୍ମାନ ଅଥବା ଶିଷ୍ଟାଚାରପୂର୍ବକ କିଛି ଭୋଜନ ଅର୍ପଣ କରେ ତେବେ ସେତେବେଳେ କଣ କରାଯିବା ଉଚିତ ? ବାହାରର ଖାଦ୍ୟ ପଦାର୍ଥ ନ ଖାଇବା କେତେକ ଲୋକ ଭଲ ବୋଲି ମାନିନେଇ ପାରନ୍ତି, ମାତ୍ର ତାଙ୍କ ନିଜର ଘରର ଖାଦ୍ୟକୁ ଅସ୍ୱୀକାର କଲେ ହୁଏତ ତାଙ୍କ ମନରେ ଆଘାତ ଲାଗିପାରେ । ଯେଉଁମାନେ ଜାଣନ୍ତି ଯେ ଏହି ବ୍ୟକ୍ତି କୌଣସି ନିୟମ ଅନୁଯାୟୀ ଅନ୍ୟ କେଉଁଠାରେ ଖାଦ୍ୟ ଗ୍ରହଣ କରେନାହିଁ ତେବେ ସେ ହୁଏତ ଭୋଜନ ପାଇଁ ବାଧ୍ୟ କରିବ ନାହିଁ, ମାତ୍ର ଯେଉଁମାନେ ଏସବୁ ସିଦ୍ଧାନ୍ତକୁ ଅସ୍ୱୀକାର କରନ୍ତି ସେମାନେ ଏହାକୁ ଖରାପ ଭାବନ୍ତି ତେଣୁ ଏହାର ସମାଧାନ କିପରି ସମ୍ଭବ ?

ବ୍ରହ୍ମାକୁମାରୀ—ଏହା ସୁସ୍ପଷ୍ଟ ଯେ ଆମେ ଆମର ନିୟମରୁ ବିଚଳିତ ହେବା ଉଚିତ ନୁହେଁ । ଯେତେବେଳେ ଆମେ ଜାଣିପାରିଛୁ

ଯେ ଅନ୍ନଦୋଷର ଝପ୍ରୋପ ପ୍ରଭାବ ମନ ଉପରେ ପଡ଼େ, ଯେତେବେଳେ ଅନ୍ୟର ଖରାପ ଧାରଣାର ବଶୀଭୂତ ହୋଇ ଅଥବା ଅନ୍ୟଦ୍ୱାରା ଭୟଭୀତ ହୋଇ ନିଜର ମନ୍ତବ୍ୟ, ସିଦ୍ଧାନ୍ତ ତଥା ଅଭ୍ୟାସ ବ୍ୟବହାରକୁ ତ୍ୟାଗ କରିବା ଆମର ଦୁର୍ବଳତା ବ୍ୟତୀତ ଅନ୍ୟ କିଛି ନୁହେଁ । ଯେଉଁ ଧାରଣାର ଜ୍ଞାନ ଅନ୍ୟ ପାଖରେ ନାହିଁ ଅଥବା ଯେ ତାକୁ ଅସ୍ୱୀକାର କରେ ତାକୁ ବୁଝାଇବାରେ ଏବଂ ଧାରଣା କରାଇବାରେ କିଛି ସମୟ ତ ନିଶ୍ଚୟ ଲାଗିବ । ସେଥିପାଇଁ ଦରକାର ପଡ଼ିଲେ ଅନେକ ନିନ୍ଦା, ସମାଲୋଚନା, ସାମାଜିକ ବହିଷ୍କାର ଇତ୍ୟାଦିକୁ ସହିବାକୁ ପଡ଼େ । କିନ୍ତୁ ଏସବୁ ଖୁବ୍ କମ୍ ସମୟପାଇଁ ସହିବାକୁ ହୁଏ । ତା'ପରେ ଏହାର ଫଳ ବହୁତ ମଧୁର ଏବଂ ଶ୍ରେଷ୍ଠ ହୁଏ । ନିଜ ମନରେ ସ୍ଥାୟୀ ଶାନ୍ତ ବିରାଜମାନ ହେବା ସଙ୍ଗେ ସଙ୍ଗେ ଆତ୍ମିକ ଉନ୍ନତି ମଧ୍ୟ ହୁଏ ଏବଂ ଏପରି ସମୟ ଆସେ ଯେତେବେଳେ କି ବିଳାସୀ ବ୍ୟକ୍ତିମାନେ ଜୀବନର ଭ୍ରଷ୍ଟତାରେ ପୀଡ଼ିତ ହୋଇ ସତ୍ୟତା ନିକଟରେ ନତମସ୍ତକ ହୁଅନ୍ତି । ତେଣୁ ଆମ୍ଭେମାନେ ଶ୍ରେଷ୍ଠତାକୁ ସର୍ବଦା ସ୍ମୃତିରେ ରଖି ଏବଂ ଅନ୍ୟ ପ୍ରତି ସ୍ନେହ ଓ ଶୁଭ ଭାବନା ରଖି, ଆତ୍ମସ୍ଥିତିରେ ସ୍ଥିତ ହୋଇ ଅତି ମଧୁର ଭାଷାରେ ସେମାନଙ୍କୁ ବୁଝାଇବା ଏବଂ ନିଜର ନିୟମ ବିଷୟରେ ବିନମ୍ର ଭାବରେ ବତାଇବା ମଧ୍ୟ ଉଚିତ । ଏହି ଦୃଢ଼ତା ଦ୍ୱାରା ଆଜି ନୁହେଁ ତ କାଲି ସେମାନଙ୍କ ଜୀବନରେ ପ୍ରଭାବ ପଡ଼ିବ । କାରଣ ସେମାନେ ଅନୁଭବ କରିବେ ଯେ ଏହା ଫଳରେ ଧନ ବ୍ୟର୍ଥରେ ଖର୍ଚ୍ଚ ହେବନାହିଁ; ସେମାନେ ଜିହ୍ୱାର ଅଧୀନ ହେବେ ନାହିଁ, ସ୍ୱାସ୍ଥ୍ୟ ମଧ୍ୟ ସଦା ନୀରୋଗ ରହିବ ଏବଂ ମାନସିକ ଓ ଆତ୍ମିକ ଉନ୍ନତି ମଧ୍ୟ ହେବ ଆଚ୍ଛା, ଓଁ ଶାନ୍ତି ।

ଜିଜ୍ଞାସୁ—ଓଁ ଶାନ୍ତି ।

# ଆଳସ୍ୟ ଏବଂ ଲୋକଲଜ୍ଜା

ଆଜିର ସଂସାରରେ ଦେଖା ଦେଉଥିବା ବିଭିନ୍ନ ପ୍ରକାରର ଅଭାବ ଏବଂ ଭ୍ରଷ୍ଟତାର ମୂଳ କାରଣ ହେଉଛନ୍ତି ଆଳସ୍ୟ । ଲୋକମାନଙ୍କର ଆଳସ୍ୟ ହେତୁ ଅନେକ ଦେଶ ଆଜି ଅର୍ଥନୈତିକ କ୍ଷେତ୍ରରେ ବହୁତ ପଛରେ ପଡ଼ିଛନ୍ତି । ଯେଉଁ ଦେଶର ଦେଶବାସୀ କର୍ମପରାୟଣ ନୁହଁନ୍ତି ସେ ଦେଶ ବାସ୍ତବରେ ପ୍ରଗତିଶୀଳ ନୁହେଁ । ସେହିପରି ଆଧ୍ୟାତ୍ମିକ କ୍ଷେତ୍ରରେ ମଧ୍ୟ ଆଳସ୍ୟକୁ ଏକ ବଡ଼ ସମସ୍ୟାରୂପେ ପରିଗଣିତ କରାଯାଏ । ସକାଳେ ବିଳମ୍ବରେ ଶଯ୍ୟା ତ୍ୟାଗ କରିବା, ସତ୍ସଙ୍ଗରେ ଯୋଗ ନ ଦେବା, ଈଶ୍ୱରୀୟ ସେବାରୁ ଦୂରରେ ରହିବା, ଯୋଗାଭ୍ୟାସକୁ ଏକ ସମସ୍ୟା ଭାବିବା, ସ୍ନାନାଦିକୁ ବ୍ୟର୍ଥ ଭାବିବା—ଏଗୁଡ଼ିକ ଆଳସ୍ୟପରାୟଣ ବ୍ୟକ୍ତିମାନଙ୍କର ଲକ୍ଷଣ । ଏହିପରି ଏକ ବିକାରରୁ ଅନ୍ୟ ଏକ ବିକାର ମଧ୍ୟ ଜାତ ହୁଏ । କାରଣ ଯେଉଁ ବ୍ୟକ୍ତି ପ୍ରାତଃ ସମୟରେ ଈଶ୍ୱରୀୟ ଜ୍ଞାନ ଗ୍ରହଣ ନ କରେ, ତା' ନିକଟରେ ସାରା ଦିନ ମଧ୍ୟରେ ହୁଏତ କୌଣସି ପ୍ରକାରର ଉତ୍ତେଜନା ଅଥବା ଅସାବଧାନତା ହେତୁ କୌଣସି ନା କୌଣସି ଅବଗୁଣ ଦେଖାଦେଇପାରେ । ତେଣୁ ଆଳସ୍ୟକୁ ଏକ ବିକାର ଏବଂ ଦେହ-ଅଭିମାନର ଏକ ରୂପ ଭାବି ତାକୁ ପରିତ୍ୟାଗ କରିବାପାଇଁ ବିଶେଷ ପୁରୁଷାର୍ଥ କରିବା ଉଚିତ । ଏହି ଅଧ୍ୟାୟର କଥୋପକଥନ ଆଳସ୍ୟ ସହିତ ବିଶେଷଭାବେ ସମ୍ବନ୍ଧିତ ।

ବ୍ରହ୍ମାକୁମାରୀ—ଆମ୍ଭେମାନେ କିପରି ଆମର ବୃତ୍ତିକୁ ସତୋଗୁଣୀ କରିବା, ମନକୁ ଶୀତଳ କରିବା, ଚିତ୍ତ ଓ ବୁଦ୍ଧିକୁ ଉପରାମ ରଖିବା ଏବଂ ସ୍ୱଭାବକୁ ନମ୍ର କରିବା—ଏସବୁ ବିଷୟ ଆପଣ ଭଲ ଭାବରେ ହୃଦୟଙ୍ଗମ କରି ସାରିଥିବେ । ଏଣୁ ମୋର ଆଶା ଯେ ଆପଣ ବର୍ତ୍ତମାନ ଆପଣଙ୍କର

ପବିତ୍ର ଜୀବନର ଅପାର ଆନନ୍ଦ ବାସ୍ତବରେ ଅନୁଭବ କରୁଥିବେ । ଏହିସବୁ ସଦ୍‌ଗୁଣକୁ ଜୀବନରେ ଧାରଣ କରିବାପାଇଁ ଆପଣଙ୍କ ଶ୍ରେଷ୍ଠ ପୁରୁଷାର୍ଥରେ କେବେହେଲେ ଅବହେଳା ଆସୁନାହିଁ ତ ? ଦିନକୁ ଦିନ ତୀବ୍ର ଗତିରେ ଉନ୍ନତି ପଥରେ ଆଗେଇ ଚାଲିଛନ୍ତି ତ ?

**ଜିଜ୍ଞାସୁ**— ଭଉଣୀ, ଈଶ୍ୱରୀୟ ଜ୍ଞାନ, ଯୋଗ ତଥା ପବିତ୍ରତାର ମାର୍ଗକୁ ମୁଁ ଖୁବ୍ ଭଲ ଭାବରେ ଉପଲବ୍‌ଧ କରିପାରିଲିଣି । ଏହାର ପରିଣାମ-ସ୍ୱରୂପ ବର୍ତ୍ତମାନ ମୋ ଜୀବନରେ ଖୁସି ଏବଂ ଆନନ୍ଦ ବୃଦ୍ଧି ପାଉଛି । କିନ୍ତୁ ଏସବୁ ସତ୍ତ୍ୱେ କେତେବେଳେ କେତେବେଳେ ଏପରି ପରିସ୍ଥିତି ଆସୁଛି, ଯାହାଫଳରେ କି ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହେଉଛି । ପ୍ରାୟ ଅନେକଥର ଏପରି ପରିସ୍ଥିତି ମୋ ସମ୍ମୁଖରେ ଉପସ୍ଥିତ ହେଉଛି ଯେ ଅଫିସ୍‌ରେ କାମ କରିବା ଫଳରେ ସହଯୋଗୀମାନଙ୍କ ସହିତ ଅଧିକାଂଶ ସମୟରେ ବଣଭୋଜି ( Picnic ) କରିବାପାଇଁ ଅନ୍ୟତ୍ର ଯିବାକୁ ପଡ଼ୁଛି ଅଥବା ଅନ୍ୟ କେତେବେଳେ ବନ୍ଧୁବାନ୍ଧବମାନଙ୍କର ବିବାହ, ବ୍ରତ ଇତ୍ୟାଦି ଉତ୍ସବରେ ମଧ୍ୟ ଯୋଗ ଦେବାକୁ ପଡ଼ୁଛି । ଏହି ପରିସ୍ଥିତିରେ ବାହାର ଲୋକମାନଙ୍କଦ୍ୱାରା ପ୍ରସ୍ତୁତ ହୋଇଥିବା ଖାଦ୍ୟ ପଦାର୍ଥ ଅଥବା ବଜାରର ଥଣ୍ଡା ପାଣୀୟ ( Cold drink ) ଇତ୍ୟାଦି ଖାଇବା ପିଇବା ପାଇଁ ଅନ୍ୟମାନେ କହୁଛନ୍ତି । କିନ୍ତୁ ମୁଁ ବର୍ତ୍ତମାନ ନିଷ୍ପତ୍ତି କରିସାରିଛି ଯେ କୌଣସି ବିକାରୀ ଏବଂ ଆସୁରୀ ସ୍ୱଭାବଯୁକ୍ତ ଅଥବା ଅଜ୍ଞାନୀ ଏବଂ ଦେହ-ଅଭିମାନୀ ମନୁଷ୍ୟଦ୍ୱାରା ପ୍ରସ୍ତୁତ କରାଯାଇଥିବା କୌଣସି ପ୍ରକାରର ଖାଦ୍ୟ ପଦାର୍ଥ ଗ୍ରହଣ କରିବି ନାହିଁ । ଏଣୁ ଏପରି ନିଷ୍ପତ୍ତି ବା ନିୟମ ଯୋଗୁଁ ଉପରୋକ୍ତ ଉତ୍ସବ ଇତ୍ୟାଦିରେ ମୋର ବନ୍ଧୁମାନେ ପ୍ରାୟ ଅସନ୍ତୁଷ୍ଟ ହେଉଛନ୍ତି । ସମୟ ସମୟରେ ସାଙ୍ଗସାଥୀମାନେ ମଧ୍ୟ ଥଟ୍ଟା କରୁଛନ୍ତି । ସେମାନଙ୍କର ବିଭିନ୍ନ ଅଯଥା ଗପସପ କିମ୍ବା ଲୋକିକିଆର ଆଲୋଚନାରୁ ମୁଁ ଦୂରରେ ରହୁଥିବାରୁ ସେମାନେ ଉପହାସ କରି ମୋତେ କହୁଛନ୍ତି ଯେ—"ତା କଥା ଛାଡ଼, ସେ ତ ବର୍ତ୍ତମାନ ଜ୍ଞାନୀ, ସେ ବର୍ତ୍ତମାନ ବ୍ରହ୍ମାକୁମାରୀ ...।"

ତେଣୁ ସେ ସମୟରେ ମନରେ ଅସ୍ଥିରତା ଆସିଯାଉଛି ଏବଂ ଅନ୍ୟ କେତେ-ବେଳେ ମଧ୍ଯ ଏପରି ବିଚାର ଆସୁଛି କି ଏସବୁ ସମସ୍ୟାକୁ ଦୂର କରିବାପାଇଁ ଅଳ୍ପ କିଛି ଖାଇନେଲେ ଏବଂ କିଛି ଗପସପ କରିନେଲେ ସବୁଠାରୁ ଭଲ ।

## ସମାଲୋଚନା କରିବା ବ୍ୟକ୍ତି ମଧ୍ୟ ମିତ୍ର କିପରି ?

ବ୍ରହ୍ମାକୁମାରୀ—ଆପଣ ଲୋକଲଜ୍ଜା ଅନୁଭବ କରୁଛନ୍ତି ତ ? ମୋର ନିଜର ବିଚାର ହେଉଛି ଯେ ଯେଉଁ ବ୍ୟକ୍ତିମାନେ ଆପଣଙ୍କୁ ଉପହାସ କରୁଛନ୍ତି ସେମାନେ ମଧ୍ଯ ଆପଣଙ୍କର ମିତ୍ର ଏବଂ ପରୋକ୍ଷରେ ମଧ୍ଯ ଆପଣଙ୍କର ସହାୟକ ଅଟନ୍ତି । ସେମାନେ ବାସ୍ତବରେ ଆପଣଙ୍କୁ ସ୍ମରଣ କରାଇ ଦେଉଛନ୍ତି ଯେ ଆପଣ କିଏ ଏବଂ ଆପଣ କେଉଁ ନିୟମକୁ ଜୀବନରେ ଧାରଣ କରିଛନ୍ତି । ଏଣୁ ସେମାନଙ୍କ ପ୍ରତି ଆପଣଙ୍କର ସର୍ବଦା ଶୁଭ ଦୃଷ୍ଟି ରହିବା ଉଚିତ । ସେହି ସମୟ ବାସ୍ତବରେ ଆପଣଙ୍କ ପକ୍ଷେ ଏକ ଶୁଭ ଅବସର, ଯେତେବେଳେ କି ଆପଣ ସେମାନଙ୍କୁ ବୁଝାଇ ପାରିବେ ଯେ ବାସ୍ତବରେ ସବୁ ମନୁଷ୍ୟ ହେଉଛନ୍ତି ବ୍ରହ୍ମାକୁମାର । କାରଣ ପରମପିତା ପରମାତ୍ମା ପ୍ରଜାପିତା ବ୍ରହ୍ମାଙ୍କଦ୍ୱାରା ସୃଷ୍ଟି ରଚନା କରନ୍ତି । ଏତଦବ୍ୟତୀତ ବାହାରର ଖାଦ୍ୟପଦାର୍ଥ ଭୋଜନ ନ କରିବା ଏବଂ ଯୋଗାଭ୍ୟାସ କରୁ ନ ଥିବା ବ୍ୟକ୍ତିଠାରୁ ଖାଦ୍ୟ ପଦାର୍ଥ ଗ୍ରହଣ ନ କରିବାର କାରଣ ମଧ୍ଯ ସେ ସମୟରେ ଆପଣ ସେମାନଙ୍କୁ ବୁଝାଇ ପାରିବେ । ଯଦି ଆପଣ ଏସବୁ ରହସ୍ୟ ସେମାନଙ୍କ ନିକଟରେ ଉପସ୍ଥାପନା କରିବେ, ତେବେ ସେମାନଙ୍କ ମଧ୍ଯରୁ କେତେକ ବ୍ୟକ୍ତି ଆପଣଙ୍କ ବିଚାରକୁ ନିଶ୍ଚୟ ପସନ୍ଦ କରିବେ । ହଁ କେତେକ ଦୃଢ଼ ଭୌତିକବାଦୀ ହୁଏତ ଏ କଥାକୁ ମାନି ନ ପାରନ୍ତି, ତେବେ ସେଥିରେ କ'ଣ ଅଛି ? ସେମାନେ ଆପଣଙ୍କର ସହନଶୀଳତାକୁ ମଧ୍ଯ ପରୀକ୍ଷା କରୁଛନ୍ତି । କିଛିଦିନ ପରେ ଆପଣ ଦେଖିବେ ଯେ ସେହି ବ୍ୟକ୍ତିମାନେ ଆପଣଙ୍କର ଏହି ସଂଯମ ନିୟମକୁ ନିଶ୍ଚୟ ପ୍ରଶଂସା କରିବେ ।

## ନିଜର ନିୟମରେ ଦୃଢ଼ ରହିଲେ ପରିଣାମ ଭଲ ହୁଏ ।

ଏହି ଈଶ୍ୱରୀୟ ଜ୍ଞାନ ଯୋଗ ମାର୍ଗରେ ଏପରି ଅନେକ ଭାଇଭଉଣୀ ଅଛନ୍ତି, ଯେଉଁମାନେ କି ପ୍ରାରମ୍ଭରେ ବହୁତ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ମାତ୍ର ଦୁନିଆଁର ଲୋକଲଜ୍ଜାକୁ ଭ୍ରୂକ୍ଷେପ ନ କରି ସେମାନେ ନିଜର ଏହିସବୁ ନିୟମ ଉପରେ ଦୃଢ଼ ଭାବରେ ଦଣ୍ଡାୟମାନ ରହିଛନ୍ତି । ଏହାଫଳରେ ସେମାନେ ଏପରି ସ୍ଥିତି ଲାଭ କରିଛନ୍ତି ଯେ ଆଜି ସେମାନଙ୍କର ମିତ୍ର-ସମ୍ବନ୍ଧିମାନେ ମଧ୍ୟ ତାଙ୍କର ନିୟମର ଅପାର ଗୁଣ ଗାନ ଏବଂ ପ୍ରଶଂସା କରୁଛନ୍ତି । ସେମାନେ ମଧ୍ୟ କହୁଛନ୍ତି ଯେ—"ଆଜି ଏମାନେ ଆମଠାରୁ ବହୁତ ଭଲ । ପ୍ରଥମତଃ ଏମାନେ ଏଣେ ତେଣେ ଖାଦ୍ୟ ଖାଉ ନ ଥିବାରୁ ବିଭିନ୍ନ ଅସୁବିଧାରୁ ଦୂରରେ ରହୁଛନ୍ତି । ଦ୍ୱିତୀୟତଃ ଏମାନେ ଆମଠାରୁ କମ୍ ଖର୍ଚ୍ଚି । ତୃତୀୟତଃ ଏମାନଙ୍କ ଜୀବନରେ କୌଣସି ନିର୍ଦ୍ଦିଷ୍ଟ ନିୟମ ରହିଛି, ମାତ୍ର ଆଜିସୁଦ୍ଧା ଆମ୍ଭେମାନେ କୌଣସି ନିୟମକୁ ଆମର ଜୀବନରେ ଧାରଣ କରିପାରିଲୁ ନାହିଁ ।"

ଯଦି ଆପଣଙ୍କୁ କୌଣସି ମହୋତ୍ସବ ଅଥବା ବିବାହ ଇତ୍ୟାଦିରେ ଅନ୍ୟ ଘରକୁ ଯିବାକୁ ପଡ଼ୁଛି, ସେତେବେଳେ ସେମାନେ ଖାଇବା ପିଇବା କଥା ଆପଣଙ୍କୁ ପଚାରିଲେ କେବଳ ଫଳ ଗ୍ରହଣ କରିବାପାଇଁ ଆପଣ କହି ପାରିବେ । ଏଥିରେ ସେମାନେ ଆଦୌ ଖରାପ ଭାବିବେ ନାହିଁ, ବରଂ ସେମାନଙ୍କ ଉତ୍ସବରେ ଯୋଗଦାନ କରି ଆପଣ କୌଣସି ଏକ ବସ୍ତୁ ଖାଦ୍ୟ-ରୂପେ ସ୍ୱୀକାର କରିବା ଦ୍ୱାରା ସେମାନେ ଖୁସି ହେବେ । ସେମାନେ ମଧ୍ୟ ଅନୁଭବ କରିବେ ଯେ ଆପଣଙ୍କର କୌଣସି ଏକ ନିୟମ ରହିଛି । ତେଣୁ ସେହି ନିୟମକୁ ଭାଙ୍ଗିବା ପାଇଁ ସେମାନେ କଦାପି ଚାହିଁବେ ନାହିଁ ।

## ଜ୍ଞାନୀ ସର୍ବଦା ମେଳାପୀ ଏବଂ ହର୍ଷିତ ମୁଖ ହେବା ଉଚିତ, କିନ୍ତୁ ଗମ୍ଭୀର ହେବା ଅନୁଚିତ ।

ଯେତେବେଳେ ଗପସପ ବିଷୟ ଆସୁଛି ସେତେବେଳେ ମେଳାପୀ ଏବଂ ହର୍ଷିତମୁଖ ହୋଇ ରହିବା ଉଚିତ । କିନ୍ତୁ କୌଣସି ମୂଲ୍ୟହୀନ କଥା

କିମ୍ବା ଅଶ୍ଳୀଳ ଗପରେ ଆଦୌ ଭାଗ ନେବା ଉଚିତ ନୁହେଁ । ଆପଣ ମଧ୍ୟ ଚାହିଁଲେ ଜନପ୍ରୟୋଗୀ କୌଣସି ସୁନ୍ଦର ମନମୁଗ୍ଧକର କାହାଣୀ ଶୁଣାଇ ପାରିବେ । ସେମାନଙ୍କର କଥାକୁ ବଦଳାଇ ସୁନ୍ଦର ରୂପରେଖ ମଧ୍ୟ ଦେଇପାରିବେ ।

ଏଣୁ ଅପରଙ୍କ ନିୟମରେ ଆପଣ ଦୃଢ଼ ରହିବା ଉଚିତ । ଲୋକ-ଲଜ୍ଜାର ବଶୀଭୂତ ହେବା ଉଚିତ ନୁହେଁ । ସେମାନଙ୍କ ଉପହାସରେ ବିଚଳିତ ନ ହୋଇ ସେମାନଙ୍କୁ ଅତି ମଧୁର ଏବଂ ସ୍ନେହପୂର୍ଣ୍ଣ ଭାଷାରେ ଏବଂ ଯୁକ୍ତିଯୁକ୍ତ ଢଙ୍ଗରେ ଈଶ୍ୱରୀୟ ଜ୍ଞାନର କିଛି ପରିଚୟ ଦେବା ଉଚିତ । ଏପରି ପରିସ୍ଥିତିରେ କେବେହେଲେ ସଙ୍କୋଚ, ଲଜ୍ଜା, ଘୃଣା ଓ ଭୟଭିତ୍ତ ଉଦାସ ହୋଇଯିବା ଉଚିତ ନୁହେଁ ।

## ସହନଶୀଳତା ଦ୍ୱାରା ଆତ୍ମା ଶକ୍ତିଶାଳୀ ହୁଏ ।

ଯଦି କୌଣସି ତମୋପ୍ରଧାନ ସ୍ୱଭାବଯୁକ୍ତ ବ୍ୟକ୍ତି କୌଣସି ବ୍ୟର୍ଥ ଆଲୋଚନା କରେ କିମ୍ବା ଆପଣଙ୍କର ସ୍ଥିତିକୁ ଇତସ୍ତତଃ କରିବାକୁ ଚେଷ୍ଟା କରେ, ତେବେ ସୁଦ୍ଧା ସେଗୁଡ଼ିକୁ ସହିନେବା ଉଚିତ । ସୁନାକୁ ଅଗ୍ନିରେ ଯେତେ ଆଉଟାଯାଏ ତାହା ସେତେ ଶୁଦ୍ଧ ହେବାକୁ ଲାଗେ । ଦେଖନ୍ତୁ, ଲୁହାକୁ ମଧ୍ୟ ଯେତେବେଳେ ଅଗ୍ନିରେ ଗରମ କରାଯାଏ, ତାହା କଳାରୁ ଲାଲ୍ ହେବାକୁ ଲାଗେ । ଏଣୁ ବିଭିନ୍ନ ପରିସ୍ଥିତିକୁ ଅତିକ୍ରମ କଲେ ସହନ ଶକ୍ତି ଏବଂ ସଦ୍‌ଗୁଣ ବୃଦ୍ଧି ପାଏ । ଏକ ସତ୍‌କାର୍ଯ୍ୟ ଏବଂ ସତ୍ ଉଦ୍ଦେଶ୍ୟ ପାଇଁ ବହୁତ କିଛି ସହିବାକୁ ପଡ଼େ । ଯଦି ଭାରତର ତଥାକଥିତ ସ୍ୱାଧୀନତା ପାଇଁ ଲୋକମାନଙ୍କୁ ଜେଲ ଭୋଗିବାକୁ ପଡ଼ିଥିଲା, ଲାଠିମାଡ଼ ଖାଇବାକୁ ପଡ଼ିଥିଲା, ତେବେ ସ୍ୱର୍ଗୀୟ ସ୍ୱରାଜ୍ୟ କରିବାପାଇଁ ଆପଣ କିଛି ସମାଲୋଚନାକୁ ସହି ପାରିବେ ନାହିଁ ?

**ଜିଜ୍ଞାସୁ**—ଭଉଣୀ, ଏ ତ ବାସ୍ତବରେ ଠିକ୍ । କିନ୍ତୁ ଆଜିକାଲିର ଲୋକମାନେ ଧର୍ମ ଏବଂ ସାତ୍ତ୍ୱିକତାଠାରୁ ବହୁତ ଦୂରରେ । ତେଣୁ

ମନୁଷ୍ୟ ସେମାନଙ୍କ ସଙ୍ଗ କରିବା ଦ୍ୱାରା ହୁଏତ ଉତ୍ତେଜିତ ହୋଇଯାଏ । ନଚେତ୍ ଲୋକଲଜ୍ଜାର ବଶୀଭୂତ ହୋଇ ସେମାନଙ୍କ ପ୍ରଭାବଦ୍ୱାରା ସେମାନଙ୍କ ରଙ୍ଗରେ ରଞ୍ଜିତ ହୋଇଯାଏ ।

## ଏହି ସୃଷ୍ଟିରେ ପାପର କୁମ୍ଭ ପୂର୍ଣ୍ଣ ହେବାକୁ ଯାଉଛି, ଏଥିରେ ଲଜ୍ଜା କ'ଣ ?

**ବ୍ରହ୍ମାକୁମାରୀ**—ଆଜିକାଲି ଲୋକମାନେ ଧର୍ମ ଏବଂ ସାତ୍ତ୍ୱିକତାଠାରୁ ଦୂରେଇ ଯାଉଥିବାର ଦେଖି ଆପଣଙ୍କର ଏହା ସ୍ମରଣ ରହିବା ଦରକାର ଯେ ଏହା ହେଉଛି ଧର୍ମଗ୍ଲାନିର ସମୟ ଏବଂ ବର୍ତ୍ତମାନ ସମୟ ବାସ୍ତବରେ ଭଗବାନ ଅବତରଣ ସମୟ ତଥା ଦୈବୀ ଦୁନିଆଁ ଅର୍ଥାତ୍ ସତୋପ୍ରଧାନ ସତ୍ୟଯୁଗୀ ସୃଷ୍ଟିର ପୁନଃସ୍ଥାପନାର ସମୟ । ଏହା ଫଳରେ ଆପଣଙ୍କର ତତ୍‌କ୍ଷଣାତ୍ ପରମପିତା ପରମାତ୍ମା ଶିବ ତଥା ସଙ୍ଗମ ଯୁଗର ସ୍ମୃତି ଆସିବା ଉଚିତ । ଏତଦ୍‌ବ୍ୟତୀତ ଆପଣଙ୍କ ମନରେ ଏହି ବିଚାର ଆସିବା ଦରକାର ଯେ—"ବର୍ତ୍ତମାନ ଅନ୍ତିମ ସମୟର କେତେ କ୍ଷଣ ମାତ୍ର ରହିଛି; ପାପର କୁମ୍ଭ ପୂର୍ଣ୍ଣ ହେବାକୁ ଯାଉଛି ଏବଂ ଏହି ଧର୍ମଭ୍ରଷ୍ଟ ସୃଷ୍ଟି ମଧ୍ୟ ବିନାଶ ହେବାକୁ ଯାଉଛି ।"

ତେଣୁ ଯେଉଁ ଲୋକମାନେ ଅସୁର ସଙ୍ଗେ ତୁଳନୀୟ ଏବଂ ଅଦୂର ଭବିଷ୍ୟତରେ ବିନାଶର ସମ୍ମୁଖୀନ ହେବାକୁ ଯାଉଛନ୍ତି, ସେମାନଙ୍କ ପାଖରେ ଲଜ୍ଜା କ'ଣ ? ସେମାନଙ୍କର ବିକାରୀ ଏବଂ ଦୁଃଖଦାୟକ ରୀତି-ନୀତିରେ ଆପଣ ପ୍ରଭାବିତ ହେବା ଉଚିତ ନୁହେଁ । ବର୍ତ୍ତମାନ ଆପଣ ଆପଣଙ୍କ ପାଖରେ ଏହି ପୁରୁଷୋତ୍ତମ ସଙ୍ଗମଯୁଗୀ ଈଶ୍ୱରୀୟକୁଳ ଅଥବା ସର୍ବଶ୍ରେଷ୍ଠ ବ୍ରାହ୍ମଣକୁଳର ମର୍ଯ୍ୟାଦାକୁ ପାଳନ କରିବାପାଇଁ ଲୋକ-ଲଜ୍ଜା ଧାରଣ କରନ୍ତୁ । ଆପଣଙ୍କ ବୁଦ୍ଧିରେ ମଧ୍ୟ ଏ ବିଚାର ଆସିବା ଦରକାର ଯେ ଆପଣ ଜ୍ଞାନବାନ୍ କୁଳର ହୋଇ ମଧ୍ୟ ଯଦି ତା'ର ନିୟମକୁ ପାଳନ କରି ନ ପାରନ୍ତି ତେବେ ସେମାନେ କ'ଣ କହିବେ ? କଲ୍ୟାଣକାରୀ

ନୈତିକଲଜ୍ଜା ହେଉଛି ବାସ୍ତବରେ ଏହି ଆଧ୍ୟାତ୍ମିକ କୁଳର ନୈତିକଲଜ୍ଜା, ଯାହାକୁ ପାଳନ କରିବାଦ୍ୱାରା ମାନବ ଆତ୍ମାଭିମାନୀ ( Soul-conscious ) ହୁଏ ଏବଂ ଆତ୍ମୋନ୍ନତିକୁ ଲାଭ କରେ । ଅନ୍ୟ ପକ୍ଷରେ କଳିଯୁଗୀ, ଆସୁରୀ ମର୍ଯ୍ୟାଦା ମାନବର ପତନ କରାଏ ।

## ଲଜ୍ଜା ମନ୍ଦ କର୍ମ ପାଇଁ ନା ଭଲ କର୍ମ ପାଇଁ

ଏପରି ଲଜ୍ଜା କରିବା ଆମ୍ଭମାନଙ୍କ ପକ୍ଷରେ ଅନୁଚିତ ଯାହାଦ୍ୱାରା କି ଆମର ଅନେକ ଜନ୍ମର ଭକ୍ତି ପରେ ପରମପିତା ପରମାତ୍ମାଙ୍କଠାରୁ ଲାଭ କରୁଥିବା ପବିତ୍ରତା ଏବଂ ସୁଖ-ଶାନ୍ତିର ବରଦାନରୁ ଆମ୍ଭେମାନେ ବଞ୍ଚିତ ହେବା । ବାସ୍ତବରେ କାମ, କ୍ରୋଧ, ଲୋଭ, ମୋହ ଅହଂକାର ଇତ୍ୟାଦି ବିକାର ପ୍ରତି ଆମ୍ଭମାନଙ୍କର ଲାଜ ରହିବା ଉଚିତ । କୌଣସି ମନ୍ଦକର୍ମ କଲେ ସେଥିପାଇଁ ଲଜ୍ଜା କରିବା ଉଚିତ, ମାତ୍ର କୌଣସି ଶ୍ରେଷ୍ଠ କର୍ମ ପାଇଁ ତାହା ପ୍ରଯୁଜ୍ୟ ନୁହେଁ ।

**ଜିଜ୍ଞାସୁ**—ଭଉଣୀ, ଏ କଥା ବାସ୍ତବରେ ଠିକ୍ ଏବଂ ମୁଁ ବର୍ତ୍ତମାନ ଠିକ୍ ଭାବରେ ଏହା ବୁଝିପାରିଛି । ଯେତେବେଳେ ଆମ୍ଭେମାନେ କୌଣସି ଶ୍ରେଷ୍ଠତାକୁ ଧାରଣ କରି ଭ୍ରଷ୍ଟତାକୁ ପରିତ୍ୟାଗ କରୁଛେ, ସେତେବେଳେ ଲାଜ କ'ଣ ? ଏଥିପାଇଁ ଯଦି ଆମ୍ଭମାନଙ୍କର ଦୈହିକ ବନ୍ଧୁବାନ୍ଧବମାନେ ବ୍ୟର୍ଥ ଯୁକ୍ତି କରନ୍ତି ତେବେ ସେଥିରେ ଆମ୍ଭେମାନେ ବିଚଳିତ ହେବା ହିଁ ବାସ୍ତବରେ ହେଉଛି ଆମର ଦେହ-ଅଭିମାନ ।

ଭଉଣୀ, ବର୍ତ୍ତମାନ ଏହି ସମସ୍ୟା ସମାଧାନ ହୋଇଯିବ । ପୁନଶ୍ଚ ମନରେ ଅନ୍ୟ ଏକ ପ୍ରଶ୍ନ କେତେବେଳେ କେତେବେଳେ ଆସେ ଯେ— "ବର୍ତ୍ତମାନ ମୁଁ ତ ଜ୍ଞାନକୁ ଭଲ ଭାବରେ ବୁଝି ସାରିଲିଣି, ତେଣୁ ଘରେ ବସି ଯୋଗାଭ୍ୟାସ କରିପାରିବି ଏବଂ ସେଠାରେ ମଧ୍ୟ କିଛି ଈଶ୍ୱରୀୟ ସାହିତ୍ୟ ପଢ଼ିପାରିବି । ତେବେ ଆଜିଠାରୁ ଏହି ଈଶ୍ୱରୀୟ ସେବାକେନ୍ଦ୍ରକୁ ପ୍ରତିଦିନ ଆସିବା କ'ଣ ଆବଶ୍ୟକ ? ଭଉଣୀ, ଏ କଥା ମଧ୍ୟ ଭୁଲ ଯେ ମନରେ କେବେ

କେବେ ବିଚ୍ଛିର ଆସେ କି ଆଜି ମୁଁ ବହୁତ କ୍ଲାନ୍ତ ; ଆଜି ଶୋଇଯିବା ଉଚିତ ; ଆସନ୍ତାକାଲି ସେବାକେନ୍ଦ୍ରକୁ ଯିବା ; ଆଜି ଯିବାକୁ ମନ ଲାଗୁନି ଇତ୍ୟାଦି"—ଏସବୁ କ'ଣ ଠିକ୍ ?

ଆଳସ୍ୟ ଅଥବା ଷଷ୍ଠ ବିକାର ବହୁତ କ୍ଷତିକାରକ ।

ବ୍ରହ୍ମାକୁମାରୀ—ଏସବୁ କେବଳ ଭୁଲ ନୁହେଁ, କ୍ଷତିକାରକ ମଧ୍ୟ । ଏହି ଆଳସ୍ୟକୁ ଷଷ୍ଠ ବିକାରର ନାମ ଦିଆଯାଇଛି । ଏହା ସବୁ ମନ୍ଦ କାର୍ଯ୍ୟର ମୂର୍ତ୍ତି ଏବଂ ଭଲ କାର୍ଯ୍ୟ ପାଇଁ ଏକ ବିରାଟ ପ୍ରତିବନ୍ଧକ । କାରଣ ଆଳସ୍ୟର ବଶୀଭୂତ ହେବାଦ୍ୱାରା ମାନବ ଜ୍ଞାନ ଶ୍ରବଣ କରିବାରୁ ବଂଚିତ ହୁଏ ଏବଂ ଜ୍ଞାନରୁ ବଞ୍ଚିତ ହେବା ଫଳରେ ତାହା ପାଖରେ ଦେହ-ଅଭିମାନ ତଥା ଅବଗୁଣ ପରିଲକ୍ଷିତ ହୁଏ ଏବଂ ଜନ୍ମ-ଜନ୍ମାନ୍ତର ପରେ ଅବସ୍ଥା ବିଚଳିତ ହେବାଦ୍ୱାରା ସେ ଏହି ଅଲୌକିକ ପୁରୁଷାର୍ଥକୁ ମଧ୍ୟ ବନ୍ଦ କରିଦିଏ । ତେଣୁ ଆଳସ୍ୟକୁ ଯଥାଶୀଘ୍ର ପରିତ୍ୟାଗ କରିବା ଉଚିତ ।

ଜିଜ୍ଞାସୁ—ଭଉଣୀ, ଏହା ବାସ୍ତବରେ ଏକ ବିକାର, ମାତ୍ର ଏହାକୁ ପରିତ୍ୟାଗ କରିବାପାଇଁ ଉପାୟ କ'ଣ ?

ବ୍ରହ୍ମାକୁମାରୀ—ଆପଣ ଜାଣିଥିବେ ଯେ ଯେତେବେଳେ କୌଣସି ପରୀକ୍ଷା ନିକଟ ହୋଇଯାଏ ଯେତେବେଳେ ପରୀକ୍ଷାର୍ଥୀ ଖୁବ୍ କମ୍ ସମୟ ଶୟନ କରେ ଏବଂ ଅଧିକ ପରିଶ୍ରମ କରେ । କାରଣ ସେ ଭଲ ଭାବରେ ଜାଣେ ଯେ ତା'ର ପରୀକ୍ଷା ଫଳ ଅର୍ଥାତ୍ ତା'ର ପରିଶ୍ରମର ଫଳାଫଳ ଉପରେହିଁ ତା'ର ଭବିଷ୍ୟତ ନିର୍ଭର କରେ । ଯେତେବେଳେ କୌଣସି ବ୍ୟକ୍ତି ଯୁଦ୍ଧକ୍ଷେତ୍ରରେ ଯୁଦ୍ଧ କରିବାପାଇଁ ଦଣ୍ଡାୟମାନ ସେ ମଧ୍ୟ ସେ ସମୟରେ ଆଳସ୍ୟକୁ ପରିତ୍ୟାଗ କରି ନିଦ୍ରାକୁ ଭୁଲିଯାଏ । କାରଣ ସେ ଜାଣେ ଯେ ସେହି ସମୟର ଜୟ ଓ ପରାଜୟ ଉପରେ ତା'ର ଦେଶର ଇତିହାସ ନିର୍ଭର କରେ । ଯେତେବେଳେ କୌଣସି ମାନବ ଉଚ୍ଚ ସ୍ଥାନକୁ

ଅନ୍ୱେଷଣ କରେ। ଯେତେବେଳେ ମଧ୍ୟ ସେ ନିଜର ଚକ୍ଷୁ ବନ୍ଦ ରଖେ ନାହିଁ ଏବଂ ନିଜ ଭିତରେ ଅଳସ୍ୟକୁ ପ୍ରବେଶ କରିବାକୁ ଦିଏ ନାହିଁ । କାରଣ ସେ ଜାଣେ ଯେ ନିଦ ଆସିବାଦ୍ୱାରା ଯଦି ସେ ପାହାଡ଼ରୁ ତଳକୁ ଖସିଯାଏ ତେବେ ତା'ର ଅବସ୍ଥା ଶୋଚନୀୟ ହେବ ଏବଂ ଆଳସ୍ୟ ହେତୁ ଯଦି ଶିଖର ଉପରେ ନ ପହଞ୍ଚେ ତେବେ ତା'ର ପୁରୁଷାର୍ଥ ଅସମାପ୍ତ ରହିଯିବ । ସେହିପରି, ଯଦି କୌଣସି ବ୍ୟକ୍ତି ସମ୍ମୁଖରେ ଧନ ଉପାର୍ଜନର ସମସ୍ତ ଉପସ୍ଥିତ ହୁଏ ତେବେ ସେ ସମୟରେ ସେ ତା'ର କ୍ଲାନ୍ତିକୁ ଭୁଲି ରୋଜଗାରରେ ଲାଗିଯାଏ ଏବଂ ଘରେ ବିଶ୍ରାମ ନିଏ । ତେଣୁ ପଢ଼ିବା, ଲଢ଼େଇ କରିବା ଆରୋହଣ କରିବା ଏବଂ ରୋଜଗାର କରିବାରେ ବ୍ୟସ୍ତ ଥିବା ମାନବ କେବେହେଲେ ଆଳସ୍ୟର ବଶୀଭୂତ ହୁଏନାହିଁ ।

## ଈଶ୍ୱରୀୟ ଜ୍ଞାନ ହିଁ ସର୍ବୋଚ୍ଚ ପାଠ

ଆପଣ ଯେଉଁ ଈଶ୍ୱରୀୟ ଜ୍ଞାନ ଏବଂ ଯୋଗ ଶିକ୍ଷା କରୁଛନ୍ତି ତାହା ହେଉଛି ସର୍ବୋଚ୍ଚ ପାଠ, ଯାହାଦ୍ୱାରା ହିଁ ୨୧ ଜନ୍ମ ପାଇଁ ଦେବପଦ ଏବଂ ସ୍ୱର୍ଗୀୟ ସ୍ୱରାଜ୍ୟ-ଭାଗ୍ୟ ଲାଭ କରିପାରିବେ । କିନ୍ତୁ ଏହି ଉଚ୍ଚ ଶିକ୍ଷାରେ ପାରଙ୍ଗମ ହେବାପାଇଁ, ବିଗତ ୬୩ ଜନ୍ମର ପାପକୁ ଖଣ୍ଡନ କରିବାପାଇଁ, ସବୁ ଦୈବୀଗୁଣ ଧାରଣ କରିବାପାଇଁ ତଥା କର୍ମାତୀତ ଅବସ୍ଥାକୁ ଲାଭ କରିବା ପାଇଁ ବର୍ତ୍ତମାନ ଆପଣଙ୍କ ସମ୍ମୁଖରେ ବହୁତ କମ୍ ସମୟ ରହିଛି । ତେଣୁ ବର୍ତ୍ତମାନ ସମୟରେ ଯଦି ଆପଣ ଆଳସ୍ୟକୁ ପରିତ୍ୟାଗ ନ କରନ୍ତି ତେବେ ଆପଣଙ୍କର ଏପରି ଉଚ୍ଚ ଭାଗ୍ୟରେ ଆପଣ ନିଜେ ହିଁ କୁଠାରଘାତ କରୁଛନ୍ତି ବୋଲି କହିଲେ ଅଯୁକ୍ତ ହେବ ନାହିଁ ।

ଏହି ଈଶ୍ୱରୀୟ ଶିକ୍ଷାଲାଭ କରିବାପାଇଁ ସାରା କଳ୍ପରେ ମାତ୍ର ଗୋଟିଏ ଥର ଶୁଭ ଅବସର ମିଳେ । ଯେତେବେଳେ 'ସ୍ୱୟଂ' ଈଶ୍ୱର ଅର୍ଥାତ୍ ପରମପିତା ଶିବ ସୁଦୂର ପରମଧାମରୁ ଆମ୍ଭମାନଙ୍କ କଲ୍ୟାଣାର୍ଥେ ପଢ଼ାଇବା ନିମିତ୍ତ ଆସୁଛନ୍ତି, ସେତେବେଳେ ଆମ୍ଭେମାନେ ଶୋଇ ରହିବା ହେଉଛି

ଏକ ପ୍ରକାର ଅନିଶ୍ଚିତତା, ଅସାବଧାନତା, ଆଳସ୍ୟ ଏବଂ ଭୁଲ ଯାହାକି ବାସ୍ତବରେ ବହୁତ କ୍ଷତିକାରକ ।

## ଏହି ଈଶ୍ୱରୀୟ ଶିକ୍ଷା ବିକାର ବିରୁଦ୍ଧରେ ଏକ ଲଢ଼େଇ

ପୁନଶ୍ଚ, ଆମ୍ଭମାନଙ୍କର ଏହି ଶିକ୍ଷା ଏକ ପ୍ରକାରର ଯୁଦ୍ଧ ବୋଲି କହିଲେ ଅଯୁକ୍ତ ହେବ ନାହିଁ । କାରଣ ଜ୍ଞାନରୂପୀ ଅସ୍ତ୍ରଶସ୍ତ୍ର ତଥା ଯୋଗ ରୂପୀ ଢାଲଦ୍ୱାରା ଆମ୍ଭେମାନେ ପଞ୍ଚବିକାର ସହିତ ଯୁଦ୍ଧ କରୁଛେ । ଏହି ଅହିଂସା ଯୁଦ୍ଧଦ୍ୱାରା ଆମ୍ଭେମାନେ 'ମାୟାଜିତ୍-ଜଗତଜିତ୍' ହେବାକୁ ଯାଉଛେ । ଯଦି ବର୍ତ୍ତମାନ ଆଳସ୍ୟର ବଶୀଭୂତ ହେବା, ତେବେ ଆମ୍ଭେମାନେ ବିଶ୍ୱର ଦୈବୀ ସ୍ୱରାଜ୍ୟକୁ ସାରା କଳ୍ପ ପାଇଁ ହରାଇ ଶେଷରେ ପଶ୍ଚାତ୍ତାପ କରିବା ।

ଆମ୍ଭମାନଙ୍କର ଏହି ଅହିଂସା ଯୁଦ୍ଧ ଏବଂ ଯୋଗ ଅଭ୍ୟାସରେ ଜନ୍ମ-ଜନ୍ମାନ୍ତର ପାଇଁ ଅତୁଳନୀୟ ରୋଜଗାର ନିହିତ ରହିଛି । ଏହାର ଫଳସ୍ୱରୂପ ସ୍ୱର୍ଗୀୟ ସୃଷ୍ଟିରେ ମୁଣ୍ଡର ଝାଳ ତୁଣ୍ଡରେ ମାରି ଅର୍ଥାତ୍ ଅକ୍ଳାନ୍ତ ପରିଶ୍ରମ କରି ଜୀବିକା ନିର୍ବାହ କରିବାକୁ ପଡ଼ିବ ନାହିଁ କିମ୍ବା କୌଣସି ଚିନ୍ତା ବା ଅଭାବ ରହିବ ନାହିଁ । ଏହା ପୁରୁଷୋତ୍ତମ ସଙ୍ଗମ ଯୁଗରେ ଈଶ୍ୱରୀୟ ଜ୍ଞାନ ଓ ଯୋଗ ଶିକ୍ଷା କରି ଯଦି ଆମ୍ଭେମାନେ ପ୍ରକୃତ ରୋଜଗାର କରିପାରିବା, ତେବେ ପୁରୁଷରୁ ପୁରୁଷୋତ୍ତମ ବା ନରରୁ ଶ୍ରୀନାରାୟଣ ହୋଇପାରିବା । ତେଣୁ ବର୍ତ୍ତମାନ ଆଳସ୍ୟ କୋଳରେ ନିଜକୁ ସମର୍ପଣ କରିବା କ'ଣ ଯୁକ୍ତିଯୁକ୍ତ ? ବର୍ତ୍ତମାନ ଏହି ଆଳସ୍ୟଦ୍ୱାରା ଆମର ଯାହା କ୍ଷତି ହେବ, ତାହା ସାରା କଳ୍ପରେ ଅପୂରଣୀୟ ରହିଯାଏ ।

ଏହି ଶିକ୍ଷା ମଧ୍ୟ ଏକ ପ୍ରକାର ଆରୋହଣ ଏହି ଶିକ୍ଷାଦ୍ୱାରା ମନୁଷ୍ୟ ତା'ର ଜୀବନର ସର୍ବଶ୍ରେଷ୍ଠ ଏବଂ ସର୍ବୋଚ୍ଚ ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରେ । ତେଣୁ ଆପଣଙ୍କର ଯେତେବେଳେ ଏହା ସ୍ମରଣ ରହିବ ଯେ ଆପଣ

ଧର୍ମଚର୍ଚ୍ଚା ପାଠ ପଢ଼ୁଛନ୍ତି ଯାହାଦ୍ୱାରା କି ଆପଣ ସର୍ବୋଚ୍ଚ ପଦ ଲାଭ କରିପାରିବେ ଏବଂ ଆଗାମୀ ସାରା କଳ୍ପପାଇଁ ଆପଣଙ୍କର ଭବିଷ୍ୟତକୁ ନିଶ୍ଚିତ ରୂପେ ଦେଖିପାରିବେ, ଯେତେବେଳେ ଆଳସ୍ୟ ଓ ନିଦ୍ରା ଆପଣଙ୍କୁ ଆଉଦୌ ଆସିବ ନାହିଁ ।

**ଜିଜ୍ଞାସୁ**—ଭଉଣୀ, ଏସବୁ ବାସ୍ତବରେ ଠିକ୍ । ମାତ୍ର ଆଳସ୍ୟକୁ ଦୂର କରିବାପାଇଁ ଅନ୍ୟାନ୍ୟ ଉପାୟ କିଛି ଅଛି କି ?

## ମୃତ୍ୟୁ ଏବଂ ବିନାଶକୁ ସ୍ମୃତିରେ ରଖିଲେ ଆଳସ୍ୟ ଦୂର ହୁଏ

**ବ୍ରହ୍ମାକୁମାରୀ**—ଉପରୋକ୍ତ ଯୁକ୍ତି ବ୍ୟତୀତ ଆପଣ ସର୍ବଦା ସ୍ମୃତିରେ ରଖିବା ଦରକାର ଯେ ବର୍ତ୍ତମାନ ଏହି କଳିଯୁଗୀ ପତିତ ସୃଷ୍ଟି ନିକଟରେ ବିନାଶ ହେବାକୁ ଯାଉଛି । ଏତଦ୍‌ବ୍ୟତୀତ ନିଜର ଜୀବନ ଉପରେ କୌଣସି ଆସ୍ଥା ନାହିଁ । ମୃତ୍ୟୁକୁ ସର୍ବଦା ବୁଦ୍ଧିରେ ରଖିବାଦ୍ୱାରା ମାନବ ସଚେତନ ରହେ । ଉଦାହରଣସ୍ୱରୂପ ଶୋଇଥିବା ଏକ ବ୍ୟକ୍ତି ପାଖକୁ ଯାଇ ଆପଣ ଯଦି କହିବେ ଯେ—"ନିଆଁ-ନିଆଁ, ନିଆଁ ଲାଗି ଯାଇଛି, ପଳାଇ ଯାଅ....ପଳାଇ ଯାଅ", ତେବେ ଆପଣ ଦେଖିବେ ଯେ ସେହି ନିଦ୍ରିତ ବ୍ୟକ୍ତି ହଠାତ୍ ଉଠି ଏବଂ ରେକେଇକୁ ବାହାରକୁ ଫୋପାଡ଼ି ଖୁଲି ଯିବାପାଇଁ ଚେଷ୍ଟା କରିବ । ତା'ର ପୂର୍ବ ନିଦ ସ୍ୱତଃ କୁଆଡ଼େ ଗୁଲିଯିବ ।

ଠିକ୍ ସେହିପରି ଏହି କଳିଯୁଗୀ ଅସାର ସଂସାରରେ ବର୍ତ୍ତମାନ ଅଗ୍ନି ଲାଗିବାକୁ ଯାଉଛି ଏଥିପାଇଁ ଅଣୁବୋମା ଏବଂ ଉଦ୍‌ଜାନ ବୋମା ଆଦି ତିଆରି ହୋଇଯାଇଛି । ତେଣୁ ଏସବୁ କଥା ଆପଣଙ୍କର ଯଦି ସ୍ମରଣ ରହେ ତେବେ ଆପଣଙ୍କ ମନରୁ ଲୋକଲଜ୍ଜା ଏବଂ ଆଳସ୍ୟ ସ୍ୱତଃ କୁଆଡ଼େ ଗୁଲିଯିବ ।

ପ୍ରତି ବର୍ଷ ଦଶହରା ପର୍ବ ଉପଲକ୍ଷେ ରାବଣ ସହିତ କୁମ୍ଭକର୍ଣ୍ଣର ପ୍ରତି-ମୂର୍ତ୍ତିକୁ ଜଳାଯାଏ । ରାବଣର ଦଶ ମୁଣ୍ଡ ହେଉଛି ସ୍ତ୍ରୀର ପାଞ୍ଚ ବିକାର ଏବଂ ପୁରୁଷର ପାଞ୍ଚ ବିକାରର ପ୍ରତୀକ । କୁମ୍ଭକର୍ଣ୍ଣ ସମ୍ବନ୍ଧରେ ମଧ୍ୟ କଥିତ ଅଛି ଯେ ସେ ଛ'ମାସ ଶୋଇ ରହୁଥିଲା । ବାସ୍ତବରେ ଛ'ମାସ କ୍ରମାଗତ ଭାବେ କେହି ଶୋଇ ନ ପାରେ କିମ୍ବା କାହାର ଦଶ ମୁଣ୍ଡ ମଧ୍ୟ ହୋଇ ନ ପାରେ । କୁମ୍ଭକର୍ଣ୍ଣ ଯେତେବେଳେ ରାମଙ୍କର ଆଗମନର ବାର୍ତ୍ତା ଦିଆଗଲା ସେତେବେଳେ ମଧ୍ୟ ରାମ ବହୁତ ଦୂରରେ ଅଛନ୍ତି ବୋଲି କହି ସେ ଶୋଇଗଲା । ସେହିପରି ବର୍ତ୍ତମାନ ସମୟରେ ପରମପିତା ପରମାତ୍ମାଙ୍କର ଅବତରଣ ସୂଚନା ପାଇ ମଧ୍ୟ କୁମ୍ଭକର୍ଣ୍ଣ ଆରେ ଅନେକ ଲୋକ ଜାଣିଶୁଣି ଆଳସ୍ୟ ଏବଂ ଅଜ୍ଞାନ ନିଦ୍ରାରେ ମଗ୍ନ ହୋଇ ଯାଇଛନ୍ତି । କିନ୍ତୁ ଯୋଗାଗ୍ନି ଦ୍ୱାରା ଦଗ୍ଧ କରି ଆମ୍ଭମାନଙ୍କର ପ୍ରକୃତ ଦଶହରା ପାଳନ କରିବା ଉଚିତ ।

# ପ୍ରମାଦ ଅଥବା ଅସାବଧାନତାର ନିବାରଣ

ବିକାର ଉପରେ ଜୟଲାଭ କରିବା ପାଇଁ ଅନେକ ମାନବ ଚେଷ୍ଟାରତ ଅଛନ୍ତି । ପରନ୍ତୁ, ଆଉ ଗୋଟିଏ ବିକାର ରହିଛି ଯିଏ କି ମାନବକୁ ନିର୍ବିକାର ହେବାକୁ ଦେଉନାହିଁ; ତାହା ହେଉଛି—ପ୍ରମାଦ, ଅସାବଧାନତା ଅଥବା ଢିଲାପଣ । ଏହା ଆଳସ୍ୟର ସାଆଁଳା ଭାଇ । ଏହାର ରୂପ ଏପରି ଯେ ଏହା ମାନବକୁ ବହୁତ ଯୁକ୍ତିଯୁକ୍ତ ଏବଂ ବିବେକଯୁକ୍ତ ( Reasonable ) ଜଣାପଡ଼େ, ମାତ୍ର ବାସ୍ତବରେ ଏହା ବାହାନା ମାତ୍ର । ତେଣୁ ପ୍ରମାଦଠାରୁ ସର୍ବଦା ସତର୍କ ରହିବା ଆବଶ୍ୟକ । ଏହି ଅଧ୍ୟାୟରେ ଅସାବଧାନତା ଓ ଢିଲାପଣ ଉପରେ ଆଲୋଚିତ କରାଯାଇଛି । ଏସବୁ ଦୂର ହେଲେ ପବିତ୍ରତା କ୍ଷେତ୍ରରେ ପୁରୁଷାର୍ଥର ଗତି ତୀବ୍ରତର ହୁଏ ।

ବ୍ରହ୍ମାକୁମାରୀ—ବର୍ତ୍ତମାନ ଆପଣ କ'ଣ ଆପଣଙ୍କର ପୁରୁଷାର୍ଥରେ ସନ୍ତୁଷ୍ଟ ? ବର୍ତ୍ତମାନ ତ ଆପଣ ନିର୍ବିକାର ଜୀବନର ଆନନ୍ଦ ନିଶ୍ଚୟ ଅନୁଭବ କରୁଥିବେ ?

ଜିଜ୍ଞାସୁ—ଅବଶ୍ୟ ମୋ ଜୀବନରେ ବହୁତ ପରିବର୍ତ୍ତନ ଆସିଛି, ତଥାପି ମୁଁ ସେତିକରେ ସନ୍ତୁଷ୍ଟ ନୁହେଁ । ସମୟେ ସମୟେ ପୁରୁଷାର୍ଥରେ ମୁଁ ଢିଲାପଣ ତଥା କେତେକ ଅସାବଧାନତାର ସମ୍ମୁଖୀନ ହେଉଛି । ଭଉଣୀ, ମୁଁ ପୁରୁଷାର୍ଥୀ ହୋଇଥିବାରୁ ବୋଧହୁଏ ମୋର ଭୁଲ ହେଉଛି । ଦ୍ୱିତୀୟତଃ, ଆମ୍ଭେମାନେ ବ୍ୟବସାୟୀ ହୋଇଥିବାରୁ ବୋଧହୁଏ ଭୁଲ କରିବା ସ୍ୱାଭାବିକ ।

ବ୍ରହ୍ମାକୁମାରୀ—ଯଦି ଆପଣଙ୍କର ଏହି ଢିଲାପଣ ଏବଂ ଅସାବଧାନତା ଦୂର ନ ହୁଏ ତେବେ ଆପଣ ନିର୍ବିକାର କିପରି ହେବେ

ଏବଂ ଆପଣଙ୍କର ସଂସ୍କାରର ପରିବର୍ତ୍ତନ କିପରି ସମ୍ଭବ ହେବ ? ଏସବୁ ଦୂର ନ ହେଲେ ଆପଣ ଏହି ଜୀବନରେ ପବିତ୍ରତାର ସୁଖକୁ ଅନୁଭବ କରିପାରିବେ ନାହିଁ ଏବଂ ବିକର୍ମର ପରିଣାମସ୍ୱରୂପ ଉଚ୍ଚ ପଦ ଲଭ କରିବାରୁ ବଞ୍ଚିତ ହେବେ । ଏଣୁ ଢିଲାପଣ ଓ ଅସାବଧାନତାକୁ ତ୍ୟାଗ କରିବା ଏକାନ୍ତ ବିଧେୟ ।

## "ମୁଁ ପୁରୁଷାର୍ଥୀ, ବର୍ତ୍ତମାନ ସଂପୂର୍ଣ୍ଣ ନୁହେଁ"

ବର୍ତ୍ତମାନ ଆପଣ ଯାହା କହିଲେ ଯେ, "ବର୍ତ୍ତମାନ ମୁଁ ପୁରୁଷାର୍ଥୀ, ତେଣୁ ଭୁଲ ହୋଇଯାଉଛି"—ଏହା ଢିଲାପଣିଆର ଏକ ବଡ ପ୍ରମାଣ । ଏପରି ବିପରୀତ ଚିନ୍ତାଧାରା ଯେଉଁ ପୁରୁଷାର୍ଥୀ ପାଖରେ ଦେଖାଯାଏ ସେ ସ୍ୱୟଂ ନିଜର ସମ୍ପୂର୍ଣ୍ଣ ଅବସ୍ଥାକୁ ଆହୁରି ପଛକୁ ଠେଲିଦିଏ । କିନ୍ତୁ ବାସ୍ତବରେ ସେ ବିଚାର କରିବା ଉଚିତ ଯେ—'ସମ୍ପୂର୍ଣ୍ଣ ଅବସ୍ଥା ମୋର ସମ୍ମୁଖରେ ରହିଛି ଏବଂ ଏହି ସମ୍ପୂର୍ଣ୍ଣ ଅବସ୍ଥାକୁ ଲଭ କରିବା ପାଇଁ ମୁଁ ତୀବ୍ର ପୁରୁଷାର୍ଥ କରୁଛି । କାରଣ ସମ୍ପୂର୍ଣ୍ଣ ହେବାପାଇଁ ମୋ ଜୀବନରେ ଆଉ ଅନ୍ୟ ସମୟ ଆସିବ ନାହିଁ ।'

ପୁନଶ୍ଚ, ବାରମ୍ବାର ଭୁଲ କରିବା ଏବଂ ଅସାବଧାନ ରହିବା ପୁରୁଷାର୍ଥୀର ଲକ୍ଷଣ ନୁହେଁ । ଥରେ ଭୁଲ କରି ତାକୁ ଜାଣିପାରିବା ପରେ ଯିଏ ଦ୍ୱିତୀୟବାର ସେ ଭୁଲ ନ କରେ ଅଥବା ଈଶ୍ୱରୀୟଦ୍ୱାରା ଯିଏ ନିଜର ଦୁର୍ବଳତାକୁ ଅନୁଭବ କରି ତାକୁ ସୁଧାରିବା ପାଇଁ ତୀବ୍ର ପୁରୁଷାର୍ଥ କରେ ସେହି ବ୍ୟକ୍ତି ହେଉଛି ପ୍ରକୃତ ପୁରୁଷାର୍ଥୀ । ପୁରୁଷାର୍ଥ (ପୁରୁଷ + ଅର୍ଥ )ର ଭାବ ହେଉଛି 'ଆତ୍ମା-ନିମିତ୍ତ' ଅଥବା 'ଆତ୍ମାର ହିତ' । ଆତ୍ମାର କଲ୍ୟାଣାର୍ଥେ ଯେଉଁ ବ୍ୟକ୍ତି ସର୍ବଦା ଧ୍ୟାନ ଦିଏ ଅଥବା ପ୍ରକୃତି ମଧ୍ୟରେ ରହି ମଧ୍ୟ ଅନାସକ୍ତ ହୋଇ ଆତ୍ମା-ନିଷ୍ଠସ୍ଥ ( soul

conscious ) ରେ ରହେ, ସେହି ବ୍ୟକ୍ତିକୁ ଆଧ୍ୟାତ୍ମିକ ପରିଭାଷାରେ 'ପୁରୁଷାର୍ଥୀ' କୁହାଯାଏ ।

ଯିଏ ଆତ୍ମା ( ପୁରୁଷ ) କୁ ଅଥବା ଆତ୍ମାର ହିତ । ( ପୁରୁଷାର୍ଥ )କୁ ଭୁଲି ପ୍ରକୃତିର ଶରୀରରେ ପ୍ରଭାବିତ ହୁଏ ସେ ପୁରୁଷାର୍ଥୀ ରୂପେ ପରିଗଣିତ ହୁଏ ନାହିଁ । ଯିଏ ପରମାତ୍ମାଙ୍କର ଆଜ୍ଞାକୁ କିମ୍ବା ଅଂଶରେ ଉଲ୍ଲଙ୍ଘନ କରେ ତା'କୁ କ'ଣ ପୁରୁଷାର୍ଥୀ କହିବା ଉଚିତ ? ଶିବବାବା ଆତ୍ମମାନଙ୍କୁ ଯେଉଁ ଜ୍ଞାନ ଦେଉଛନ୍ତି ତାହା ଆମ ଆତ୍ମାମାନଙ୍କର କଲ୍ୟାଣାର୍ଥେ ଉଦ୍ଦିଷ୍ଟ । ତେଣୁ ପ୍ରକୃତ ପୁରୁଷାର୍ଥ ହେଉଛି ସେହି ମାନବ ଯିଏ କି ପରମପିତା ପରମାତ୍ମାଙ୍କର ଆଜ୍ଞାକୁ ଅକ୍ଷରେ ଅକ୍ଷରେ ନିଜ ଜୀବନରେ ପାଳନ କରେ । ଗୋଟିଏ ବାକ୍ୟରେ କହିବାକୁ ଗଲେ ଗୃହୀ, ବ୍ୟବସାୟୀ, କର୍ମଚାରୀ, ଧନୀ ଦରିଦ୍ର, ଜାତି, ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ ଏହା ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ।

ଶିବବାବା ଜାଣନ୍ତି ଯେ କିଏ ବେପାରୀ ତ ଅନ୍ୟ କେହି କର୍ମଚାରୀ । ଗୃହସ୍ଥମାନଙ୍କ ପାଇଁ ଶିବବାବା ଏହିସବୁ ନିୟମ ଶିକ୍ଷା ଦେଇଛନ୍ତି । ତେଣୁ— "ମୁଁ ତ ବେପାରୀ, ମୋଦ୍ୱାରା ଭୁଲ ହେବା ସ୍ୱାଭାବିକ"—ଏସବୁ କହିବାର ପ୍ରକୃତ ଅର୍ଥ କ'ଣ ? କ'ଣ ଜ୍ଞାନସାଗର ପରମାତ୍ମାଙ୍କୁ ଆପଣ ଜ୍ଞାନ ଦେବାକୁ ଚାହାଁନ୍ତି କି ? ପ୍ରିୟ ଭାତୃଦେବ ଭଗବାନଙ୍କଠାରୁ ସମ୍ପୂର୍ଣ୍ଣ ସୁଖ-ଶାନ୍ତିର ବରଦାନ ନେବା ହେଉଛି ଆପଣଙ୍କର ଧର୍ମ ଏବଂ ଏଥିପାଇଁ ଯେତେ ଉଚ୍ଚ ଏବଂ ଅଧିକ ପୁରୁଷାର୍ଥ କରିବେ ସେତେ ପାଇବେ । ତେଣୁ କେତେ ଉଚ୍ଚ ସ୍ଥିତି ଲଭ କରିବା ପାଇଁ ଆପଣ ଚାହୁଁଛନ୍ତି ତାହା ନିଜେ ସ୍ଥିର କରିବା ଦରକାର । ନିଜକୁ ବେପାରୀ ବା କର୍ମଚାରୀ କହିବା ଦ୍ୱାରା କ୍ଷତି କେବଳ ଆପଣଙ୍କର ହିଁ ହେବ—ଭଗବାନଙ୍କର ହେବ ନା ଅନ୍ୟ ଆତ୍ମାମାନଙ୍କର ହେବ ?" ତେଣୁ ନିଜର କ୍ଷତି କରିବା ହିଁ ଏପରି ସଂକଳ୍ପର ଉଦ୍ଦେଶ୍ୟ । ନିଜକୁ ବେପାରୀ ବ୍ୟବସାୟୀ ଭାବିବା ପୂର୍ବରୁ ପ୍ରଥମେ ନିଜକୁ ଆତ୍ମା ବୋଲି ଭାବିବା ଉଚିତ । ସ୍ୱୟଂ ଭଗବାନଙ୍କଠାରୁ

ଏତେ ଉଚ୍ଚ ଜ୍ଞାନ ଲାଭକରି ଯଦି ବର୍ତ୍ତମାନ ସୁଦ୍ଧା ଆପଣ ପବିତ୍ରତାର ଖଜଣା ପାଇ ନ ପାରିଲେ ତେବେ ଏହା ଆପଣଙ୍କର ଦୁର୍ଭାଗ୍ୟ ବୋଲି କହିବାକୁ ହେବ ।

**ଜିଜ୍ଞାସୁ**—ଭଉଣୀ, ମୋର ବିବେକ କହୁଛି ଯେ ମୋର ଏପରି ଅସାବଧାନତା ଯୋଗୁଁ ମୁଁ ମୋର ଅପୂରଣୀୟ କ୍ଷତି କରୁଛି । କିନ୍ତୁ କଥା ହେଉଛି ଯେ ମୁଁ ଯେତେବେଳେ ମୋ'ଠାରୁ ବଡ଼ଭାଇ ଅଥବା ଭଉଣୀମାନଙ୍କ ପାଖରେ କୌଣସି ପ୍ରକାର କିମ୍ବା ଦୁର୍ବଳତା ଦେଖୁଛି, ସେତେବେଳେ ମୁଁ ମଧ୍ୟ କିଛି ପରିମାଣରେ ଢିଲା ହୋଇଯାଉଛି ।

## ଅନୁକରଣ ନ କରି ଅନୁଧାବନ କରନ୍ତୁ

**ବ୍ରହ୍ମାକୁମାରୀ**—ଏହା ବାସ୍ତବରେ ଏକ ବଡ଼ ଭୁଲ । ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର କର୍ମ ପାଇଁ ନିଜେ ଦାୟୀ । ଆମେ ଅନ୍ୟକୁ ଦେଖି ନିଜେ କାହିଁକି ଖରାପ କର୍ମ କରିବା ? ଯଦି ଆମେ ଅନ୍ୟର ଦୁର୍ବଳତାକୁ ଦୂର କରିବାପାଇଁ ଅସମର୍ଥ, ତେବେ ଅନ୍ତତଃପକ୍ଷେ ନିଜକୁ ସେଥିରୁ ରକ୍ଷା କରିବା ଏକାନ୍ତ ଆବଶ୍ୟକ । ଖରାପ କଥାରେ ଅନ୍ୟକୁ ଖୁବ୍ ଶୀଘ୍ର ଅନୁକରଣ କରିବା ହେଉଛି ମାନବର ବଡ ଭୁଲ । ସେ ଯେତେବେଳେ ତା'ଠାରୁ ଅଧିକ ସମ୍ମାନୀୟ, ଜ୍ଞାନବାନ୍ ବ୍ୟକ୍ତି ଅର୍ଥାତ୍ ଜ୍ଞାନ କ୍ଷେତ୍ରରେ ମହାରଥୀ ରୂପେ ପରିଗଣିତ ହେଉଥିବା ଭାଇ ଅଥବା ଭଉଣୀମାନଙ୍କ ପାଖରେ କିଛି ଆଦେଶ ଆତ୍ମ ପ୍ରିୟତା ଅଥବା ଅଭିମାନର ଅଭ୍ୟାସ ଦେଖେ କିମ୍ବା ଅନ୍ୟ କୌଣସି ଦୁର୍ବଳତା ଦେଖେ, ସେତେବେଳେ ସେ ଚିନ୍ତାକରେ ଯେ—"ମୁଁ ତ ଜ୍ଞାନକ୍ଷେତ୍ରରେ ତାଙ୍କଠାରୁ ଶ୍ରେଷ୍ଠ ଅଥବା ମୁଁ ବହୁତ ପଛରେ ଏ ଜ୍ଞାନ ଲାଭ କରିଛି; ଏଣୁ ମୋ ପାଖରେ ଯଦି କୌଣସି ପ୍ରକାରର ଦୁର୍ବଳତା ରହିଛି, ତେବେ ଭୁଲ କ'ଣ ?" ସେ ମଧ୍ୟ କହେ ଯେ—"ଯେତେବେଳେ ବଡ଼ମାନେ ଏପରି କରୁଛନ୍ତି ସେତେବେଳେ ମୁଁ ତ ବର୍ତ୍ତମାନ ବହୁତ ଶ୍ରେଷ୍ଠ; ମୁଁ ଯଦି ସେପରି

କରୁଥାଏ, ତେବେ କ'ଣ ହେଲା ?" କିନ୍ତୁ ସେ ଜାଣିବା ଦରକାର ଯେ ବଡ଼ମାନେ ତାଙ୍କର ଦୁର୍ବଳତାକୁ ନେଇ ବଡ଼ପଣ ଦେଖାନ୍ତି ନାହିଁ । ସେମାନେ ବାସ୍ତବରେ ଯେଉଁ କଥାରେ ବଡ଼, ସେହି କଥାରେ ସେମାନେ ବଡ଼ପଣ ଦେଖାନ୍ତି । ବାସ୍ତବରେ ଯେଉଁଥିରେ ସେମାନଙ୍କର ଦୁର୍ବଳତା ରହିଛି ସେ କ୍ଷେତ୍ରରେ ସେମାନେ ମଧ୍ୟ ଶ୍ରେଷ୍ଠ ଏବଂ ଦୁର୍ବଳତାକୁ ଦୂର କରିବାପାଇଁ ସେମାନେ ମଧ୍ୟ ଚେଷ୍ଟା କରୁଛନ୍ତି । ତେଣୁ ଯେଉଁ ଅବଗୁଣକୁ ସେମାନେ ପରିତ୍ୟାଗ କରିବାପାଇଁ ଚେଷ୍ଟା କରୁଛନ୍ତି, ଅଥବା ଯେଉଁ ଦୁର୍ବଳତା ଯୋଗୁଁ ଆଜି ସେମାନେ ଶ୍ରେଷ୍ଠ, ସେମାନଙ୍କୁ ଦେଖି ଆପଣ ଆପଣଙ୍କର ସେହି ଅବଗୁଣକୁ ପ୍ରଥମେ ପରିତ୍ୟାଗ କରିବା ଉଚିତ । ମାତ୍ର ସେଥିପାଇଁ ଅଧିକ ଚିନ୍ତିତ ହୋଇ ଚାଲିବା ଅନୁଚିତ । ଯଦି ବଡ଼ମାନଙ୍କ ପାଖରେ ଏହି ଦୁର୍ବଳତା ଅଥବା ଅବଗୁଣ ଦେଖି ଆପଣଙ୍କୁ ଭଲ ଲାଗୁଛି ଅର୍ଥାତ୍ ଆପଣଙ୍କର ଆଖିକୁ ସେଗୁଡ଼ିକ ଦେଖାଯାଉଛି, ତେବେ ଆପଣଙ୍କ ପାଖରେ ଥିବା କୌଣସି ଅବଗୁଣ ଅନ୍ୟମାନଙ୍କ ଆଖିକୁ ଦେଖାଯିବ ନାହିଁ କି ?

ପୁନଶ୍ଚ, ଆମ୍ଭେମାନେ ଅନ୍ୟମାନଙ୍କର ଅବଗୁଣକୁ ଅନୁକରଣ କରି ନିଜର ଖାତାକୁ ଖରାପ କରିବା, ନା ଆମ୍ଭମାନଙ୍କର ଦୈବୀ ପିତାମାତା ( ପ୍ରଜାପିତା ବ୍ରହ୍ମା ତଥା ଜଗଦମ୍ବା ସରସ୍ୱତୀ ), ଯେଉଁମାନେ କି ସର୍ବଗୁଣରେ ଭରପୁର, ସେମାନଙ୍କୁ ଦେଖିବା ତଥା ସର୍ବଗୁଣର ସାଗର, ସର୍ବଦା ସମ୍ପୂର୍ଣ୍ଣ ନିରାକାର ପରମପିତା ପରମାତ୍ମାଙ୍କୁ ଦେଖିବା ? ଆମ୍ଭମାନଙ୍କଠାରୁ ଅଧିକ ସମ୍ମାନୀୟ, ମାନ୍ୟତାପ୍ରାପ୍ତ ବ୍ୟକ୍ତିମାନଙ୍କଠାରୁ ଅଥବା ବଡ଼ ଭାଇଭଉଣୀ-ମାନଙ୍କଠାରୁ ଆମ୍ଭେମାନେ କ'ଣ ଶିକ୍ଷା କରିବା ଉଚିତ—ଗୁଣ ନା ଅବଗୁଣ ? ଯଦି ସେମାନଙ୍କଠାରୁ କୌଣସି ଶ୍ରେଷ୍ଠ ଗୁଣ ନେଇ ଆମ୍ଭମାନଙ୍କୁ ଅମର ଜୀବନ ଗଢ଼ିବାକୁ ହେବ, ତେବେ ସେମାନଙ୍କର ଅବଗୁଣକୁ ଆମ୍ଭମାନଙ୍କର ଦେଖିବା ଉଚିତ ନୁହେଁ, ବରଂ ସେମାନଙ୍କ ସହ ଅନୁଧାବନ ( **Race** ) କରି ଆମ୍ଭେମାନେ ଯେପରି ଆଗକୁ ଯାଇପାରିବା, ସେଥିପାଇଁ ଶୁଭ ସଂକଳ୍ପ ସର୍ବଦା ମନରେ ରଖିବା ଉଚିତ ।

ସେହିପରି, ଯେତେଦୂର ସମ୍ଭବ ଈଶ୍ୱରୀୟ ସ୍ମୃତି ତଥା ଅବ୍ୟକ୍ତ ଅବସ୍ଥାକୁ ଧାରଣ କରିବାପାଇଁ ଆମ୍ଭମାନଙ୍କୁ ଆମର ବ୍ୟକ୍ତିଗତ ( Individual ) ପୁରୁଷାର୍ଥ ଉପରେ ବିଶେଷ ଧ୍ୟାନ ଦେବା ଆବଶ୍ୟକ ଏବଂ ନିଜର ଖାତାକୁ ସର୍ବଦା ସ୍ୱଚ୍ଛ ଭାବରେ ନିଜ ସମ୍ମୁଖରେ ରଖିବା ମଧ୍ୟ ଉଚିତ । ଆମ୍ଭେମାନେ ସର୍ବଦା ଈଶ୍ୱରୀୟ ସ୍ମୃତିର ଅଭ୍ୟାସକୁ ବଢ଼ାଇବା ପାଇଁ ତୀବ୍ର ପୁରୁଷାର୍ଥ କରିବା ଦରକାର ଏବଂ ଅନ୍ୟ କେହି ନିଜର କ୍ଷତି କରୁଥିବାର ଦେଖି ଆମେ ଆମର ଅନୁରୂପ କ୍ଷତି କରିବା ସର୍ବଦା ଅବାଞ୍ଛନୀୟ ।

**ଜିଜ୍ଞାସୁ**—ଠିକ୍ ଅଛି ଭଉଣୀ, ଭବିଷ୍ୟତରେ ମୁଁ ଏପରି କରିବି । ମୁଁ ଜାଣିପାରୁନାହିଁ ଯେ ଏସବୁ ଅବଗୁଣ ମୋ ପାଖକୁ କେଉଁଠାରୁ ଆସୁଛି ? ମୋର ମୂଳଦୁଆ ତ ପକ୍କା ରହିଛି, ତେଣୁ ସମୟ ଆସିଲେ ମୁକାବିଲା କରିପାରିବି ।

**ବ୍ରହ୍ମାକୁମାରୀ**—ପ୍ରଥମତଃ ଆପଣ ହୁଏତ ପ୍ରତିଦିନ ସତ୍‌ସଙ୍ଗ କରୁ ନ ଥିବେ ଅର୍ଥାତ୍ ଈଶ୍ୱରୀୟ ପାଠଶାଳାକୁ ଯାଉ ନ ଥିବେ । ଦ୍ୱିତୀୟତଃ ସଂସାରର ପରିବର୍ତ୍ତନ ସମୟରେ ଆମ୍ଭମାନଙ୍କୁ ଯେଉଁ ଶୁଭ ଅବସର ମିଳିଛି, ତା'ର ଅନ୍ତିମ ସମୟର ଅନ୍ତିମ ଘଡ଼ି ବର୍ତ୍ତମାନ ଆସି ପହଞ୍ଚିଥିବାରୁ ଆପଣଙ୍କ ମନରେ ହୁଏତ ନିଷ୍ଟୟତା ଜନ୍ମି ନାହିଁ ।

**ଜିଜ୍ଞାସୁ**—ଏହି କାରଣ ହୁଏତ ଠିକ୍ ହୋଇପାରେ ଆପଣ ଏହାର କିଛି ବିଶଦ ବିବରଣୀ ଦେଇପାରିବେ କି ?

**ବ୍ରହ୍ମାକୁମାରୀ**—ଅନେକଥର ମନୁଷ୍ୟ ଭାବେ ଯେ—"ମୋର ବୁଦ୍ଧିରେ ଜ୍ଞାନର ମୂଳଦୁଆ ପ୍ରାୟ ଠିକ୍ ଏବଂ ପକ୍କା ରହିଛି, ମୁଁ ଜ୍ଞାନର ପ୍ରତ୍ୟେକ ରହସ୍ୟକୁ ମଧ୍ୟ ହୃଦୟଙ୍ଗମ କରିସାରିଛି । ମୁଁ ଜ୍ଞାନର ପ୍ରତ୍ୟେକ ନିୟମ ଏବଂ ବିଧି ବିଧାନ ତଥା ପ୍ରାପ୍ତି ବିଷୟ ଜାଣିସାରିଛି । ସମୟ ଆସିଲେ ମୁଁ ସବୁ ଠିକ୍ କରିଦେବି ଏବଂ ନିଜର ଦୁର୍ବଳତାକୁ ମଧ୍ୟ ସୁଧାରି ପାରିବି । ତେବେ

ପ୍ରତିଦିନ ସତ୍‌ସଙ୍ଗକୁ ଯିବା କ'ଣ ଦରକାର ? ସବୁଦିନ ସେବାକେନ୍ଦ୍ରକୁ ଯାଉଥିବା ବ୍ୟକ୍ତିମାନଙ୍କଠାରୁ ମୁଁ ଯଥେଷ୍ଟ ଭଲ ।'' ବାସ୍ତବରେ ଏସବୁ ହେଉଛି ମାନବର ବିପରୀତ ସଙ୍କଳ୍ପ । ନିଜର ଦୁର୍ବଳତାକୁ ଦୂର କରିବା ପାଇଁ ଆଉ କେଉଁ ସମୟ ଆସିବ ? ଏପରି କେଉଁ ସମୟକୁ ଆମ୍ଭେମାନେ ଅପେକ୍ଷା କରିଛେ ? ଯେଉଁ ସମୟ ଚାଲିଗଲା ସେ ସମୟ କ'ଣ ପୁନର୍ବାର ଫେରିବ ? ଆମ ନିଜ ଜୀବନର ସମୟ ଉପରେ ଆମେ କ'ଣ କୌଣସି ଆସ୍ଥା ରଖିପାରିବା ? ଅଚ୍ଛା, ଦେଖି କହନ୍ତୁ ତ ଆମ ଜୀବନର ଆଉ କେତେ ଦିନ ବାକୀ ଅଛି । ଯଦି ଆଜି ଆମର ପ୍ରାଣବାୟୁ ଉଡ଼ିଯାଏ କିମ୍ବା କୌଣସି ଦୁର୍ଘଟଣାରେ ଶରୀର ତ୍ୟାଗ କରିବାକୁ ପଡ଼େ, ତେବେ ଆମର ଗତି କ'ଣ ହେବ ?

ଯଦି ଆମ୍ଭେମାନେ ପ୍ରତିଦିନ ଈଶ୍ୱରୀୟ ଜ୍ଞାନ ନ ଶୁଣିବା ତଥା ମନନ ନ କରିବା ତେବେ ଆମର ଦୁର୍ବଳତାଗୁଡ଼ିକ ଦୂର ହେବ କିପରି ? ପ୍ରତିଦିନ ସତ୍‌ସଙ୍ଗ ନ କରିବାଦ୍ୱାରା ଏହା ସିଦ୍ଧ ହୁଏ ଯେ ଆମ୍ଭେମାନେ ପରମାତ୍ମାଙ୍କର ମହାବାକ୍ୟକୁ ଅବଜ୍ଞା କରୁଛେ ।

ଏତଦ୍‌ବ୍ୟତୀତ ''ମୁଁ ପ୍ରତ୍ୟହ ସତ୍‌ସଙ୍ଗ କରୁଥିବା ବ୍ୟକ୍ତିମାନଙ୍କଠାରୁ ଭଲ'' —ଏପରି ପ୍ରମାଣପତ୍ର ଆପଣଙ୍କୁ କିଏ ଦେଲା ? ନିଜେ ହିଁ ନିଜକୁ ଏପରି ପ୍ରମାଣପତ୍ର ଦେବା କ'ଣ ଯୁକ୍ତିଯୁକ୍ତ ? ଅନ୍ୟପକ୍ଷରେ ଆପଣ ମଧ୍ୟ ଆପଣଙ୍କ ପରମ ଶିକ୍ଷକଙ୍କର ଆଦେଶକୁ ଭୁଲିଯିବା ଆଦୌ ଉଚିତ ନୁହେଁ । ଆପଣଙ୍କ ଶିକ୍ଷକ କ'ଣ କହିଛନ୍ତି ଯେ—''ବର୍ତ୍ତମାନ ଆପଣ ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାରିଛନ୍ତି, ପ୍ରତିଦିନ ସତ୍‌ସଙ୍ଗ କରିବା ଆପଣଙ୍କ ପକ୍ଷେ ଅନାବଶ୍ୟକ ?'' ଯେତେବେଳେ ଈଶ୍ୱରୀୟ ଜ୍ଞାନ-ଶିକ୍ଷା ବର୍ତ୍ତମାନ ସୁଦ୍ଧା ଚାଲିଛି, ତେବେ ଏହା ସିଦ୍ଧ ହେଉଛି ଯେ ଅନ୍ତିମ ପରୀକ୍ଷା ବର୍ତ୍ତମାନ ସୁଦ୍ଧା ହୋଇନାହିଁ କି ଆମ୍ଭେମାନେ ଉତ୍ତୀର୍ଣ୍ଣ ହୋଇସାରିଛେ ବୋଲି କୌଣସି ଫଳ ପ୍ରକାଶ ପାଇନାହିଁ । ତେଣୁ ସତ୍‌ସଙ୍ଗ ନ କରିବା କିମ୍ବା ଈଶ୍ୱରୀୟ

ଜ୍ଞାନର ମନନ ଚିନ୍ତନ ନ କରିବା ବାସ୍ତବରେ ବଡ଼ ଭୁଲ ଏବଂ ଏହାର ପରିଣାମସ୍ୱରୂପ ଅନ୍ୟାନ୍ୟ ଦୁର୍ବଳତା ଧୀରେ ଧୀରେ ଦେଖାଯାଏ ।

ପୁନଶ୍ଚ, ଏହି ସଙ୍ଗମଯୁଗୀ ଜୀବନକାଳ ମଧ୍ୟରେ ଆମ୍ଭେମାନେ ଯେତେ ସମୟ ଧରି ପବିତ୍ର ରହିବା, ଯେତେ ଅଧିକ ସମୟ ଧରି ଆମ୍ଭେମାନେ ଦିବ୍ୟଗୁଣ ଧାରଣ କରି ଦିବ୍ୟ ନିୟମକୁ ପାଳନ କରିବା, ଯେତେଦିନ ଧରି ନିୟମାନୁସାରେ ସତ୍ସଙ୍ଗ କରିବା, ସେ ସବୁର ଫଳ ଆମ୍ଭେମାନେ ନିଶ୍ଚୟ ଲାଭ କରିବା । ଏ କଥା ନୁହେଁ ଯେ ଦଶ ବର୍ଷ ହେଲା ଯେଉଁ ବ୍ୟକ୍ତି ଈଶ୍ୱରୀୟ ନିୟମକୁ ସୁଚାରୁରୂପେ ପାଳନ କରିଆସୁଛି ଏବଂ ଜ୍ଞାନଦ୍ୱାରା ବିଭିନ୍ନ ବିଘ୍ନ ଅଥବା ସମସ୍ୟାକୁ ଅତିକ୍ରମ କରିଆସୁଛି ତାକୁ ଯେଉଁ ଫଳ ମିଳିବ, ବର୍ତ୍ତମାନ ପୁରୁଷାର୍ଥ ଆରମ୍ଭ କରୁଥିବା ବ୍ୟକ୍ତିକୁ ଅନୁରୂପ ଫଳ ମିଳିବ । ତେଣୁ—'ମୋ ବୁଦ୍ଧିରେ ଜ୍ଞାନର ଚୈତନ୍ୟ ମନ୍ତ୍ର ପଡ଼ିଛି, ମୋର ନିଶ୍ଚୟର ମୂଳଦୁଆ ପୂରା ପକ୍କା ହୋଇ ସାରିଛି, ମୋର ଅମୁକ ପରିସ୍ଥିତି ସୁଧୁରିଗଲେ ମୁଁ ତୀବ୍ର ପୁରୁଷାର୍ଥରେ ଲାଗିଯିବି, ଇତ୍ୟାଦି"—ଏପରି କହିବାର ଅର୍ଥ ହେଉଛି ଯେ ଏସବୁ ବିପରୀତ ବିଚାର ଅଥବା ମିଥ୍ୟା ବାଣୀ । ବହୁତ ସମୟ ଧରି ଅଭ୍ୟାସ କରିବାଦ୍ୱାରା ହିଁ ଯୋଗର ଅବସ୍ଥା ଦୃଢ଼ ହୁଏ, ନଚେତ୍ ଅବସ୍ଥା କଞ୍ଚା ରହିଯାଏ ଏବଂ ବିନାଶ ସମୟ ମଧ୍ୟ ଆସି ସମ୍ମୁଖରେ ଉପସ୍ଥିତ ହେଲେ ସେତେବେଳେ ଆମ୍ଭେମାନେ କିଛି କରି ନ ପାରି ଆଶ୍ଚର୍ଯ୍ୟାନ୍ୱିତ ହୋଇ ରହିଯିବା । ପୁନଶ୍ଚ, ଆମ୍ଭେମାନେ ବର୍ତ୍ତମାନ ସମୟରେ ଈଶ୍ୱରୀୟ ବିଦ୍ୟାର୍ଥୀ । ବିଦ୍ୟାର୍ଥୀ ହିସାବରେ ଆମ୍ଭେମାନେ ପ୍ରତିଦିନ ଈଶ୍ୱରୀୟ ପାଠଶାଳାକୁ ଅଧ୍ୟୟନ ନିମିତ୍ତ ଯିବା ଏକାନ୍ତ ଆବଶ୍ୟକ । ପାଠଶାଳାକୁ ନ ଯାଇ ସେ ଯଦି ଘରେ ବସି ଭାବେ ଯେ ଉତ୍ତୀର୍ଣ୍ଣ ହୋଇଯିବ, ତେବେ ଏହା ମଧ୍ୟ ଏକ ଭୁଲ । ବର୍ତ୍ତମାନ ସୁଦ୍ଧା ପରମପିତା ଶିବ ପଢ଼ାଇବା ପାଇଁ ଆସୁଛନ୍ତି । ତେବେ ଆମର ଅଧ୍ୟୟନର ସମାପ୍ତି ହେଲା କିପରି ? ବର୍ତ୍ତମାନ ସମୟରେ ଆମ ବିଷୟବସ୍ତୁଗୁଡ଼ିକର ଗୁହ୍ୟ ଏବଂ ଅବ୍ୟକ୍ତ ଅର୍ଥର ଅଧ୍ୟାପନା ଏବଂ ଅଧ୍ୟୟନ ଚାଲିଛି ।

ଜିଜ୍ଞାସୁ—ଭଉଣୀ, ଯାହାହେଉ ମୋତେ ସାବଧାନ କରାଇ ବହୁତ ଭଲ କଲେ । କାରଣ ମୁଁ ମିଥ୍ୟା ନିଶାରେ ଝୁଲୁଥିଲି । କିନ୍ତୁ ଭଉଣୀ କ'ଣ କରିବା, ଆଜିକାଲି ଚତୁର୍ଦ୍ଦିଗର ବାତାବରଣ ବହୁତ ଖରାପ ।

ବ୍ରହ୍ମାକୁମାରୀ—ଏକଥା ବାସ୍ତବରେ ସତ, କିନ୍ତୁ ଆପଣ ଅନ୍ୟମାନଙ୍କୁ କାହିଁକି ଦେଖୁଛନ୍ତି ? ଆପଣ ନିଜକୁ ଦେଖନ୍ତୁ । ଆପଣଙ୍କର ବର୍ତ୍ତିମାନ ଯେଉଁ ଲକ୍ଷ୍ୟ, ତାହା ଅନ୍ୟମାନଙ୍କର ଆଦୌ ଲକ୍ଷ୍ୟ ନୁହେଁ । ସାଧାରଣ ବ୍ୟକ୍ତିମାନଙ୍କଠାରେ ପୁରୁଷାର୍ଥହୀନତା ଦେଖି ଆପଣ ସେମାନଙ୍କ ଭଳି ହେବାପାଇଁ କାହିଁକି ଭାବୁଛନ୍ତି ? ଆପଣ ଏହି ଈଶ୍ୱରୀୟ ଜ୍ଞାନ ଓ ଯୋଗଶକ୍ତି ବଳରେ ସେମାନଙ୍କୁ ମଧ୍ୟ ପୁରୁଷାର୍ଥର ମାର୍ଗକୁ ଆଣିବାକୁ ଚେଷ୍ଟା କରନ୍ତୁ ।

ଢିଲାପଣ ଆସିବାର ଏହା ମଧ୍ୟ ଏକ କାରଣ ଯେ ମନୁଷ୍ୟ ସାଧାରଣ ବାତାବରଣକୁ ଦେଖି ଚିନ୍ତାକରେ—"ମୁଁ ଏକମାତ୍ର ଏପରି ନୁହେଁ, ଏପରି ଦୁନିଆଁରେ ବହୁତ ଅଛନ୍ତି । ସେମାନଙ୍କର ଅବସ୍ଥା ଯାହା ହେବ, ମୋର ମଧ୍ୟ ଅନୁରୂପ ହେବ । ବର୍ତ୍ତିମାନ ସମୟରେ ଅନ୍ୟ ପୁରୁଷାର୍ଥ ଅଥବା ଜ୍ଞାନୀମାନଙ୍କର ଅବସ୍ଥାକୁ ଦେଖି ମୁଁ ଜାଣିପାରୁଛି ଯେ ପୁରୁଷାର୍ଥ କରିବାପାଇଁ ହୁଏତ କିଛି ଅଧିକ ସମୟ ଅଛି ।" କିନ୍ତୁ ଏପରି ଚିନ୍ତାକରି ମନୁଷ୍ୟ ତା'ର ବିଶେଷ ଦାୟିତ୍ୱକୁ ବହୁତ ସାଧାରଣ ଭାବି ନେଉଛି । ଦାୟିତ୍ୱକୁ ସଠିକ୍ ରୂପେ ପାଳନ ନ କରିବା ହିଁ ହେଉଛି ଢିଲାପଣ ।

କିନ୍ତୁ ମନୁଷ୍ୟର ଚିନ୍ତା କରିବା ଦରକାର ଯେ—"ଈଶ୍ୱରୀୟ ସ୍ମୃତିରେ ସ୍ଥିତ ହେବା ଏବଂ ନିର୍ବିକାର ହେବାପାଇଁ ପରମପିତା ଶିବବାବା ଯେଉଁ ଆଦେଶ ଦେଉଛନ୍ତି ତାହା ବାସ୍ତବରେ ବ୍ୟକ୍ତିଗତ ଭାବରେ ମୋ ପାଇଁ ପ୍ରଯୁଜ୍ୟ । ଅନ୍ୟମାନେ ତାହାକୁ ପାଳନ କରୁଛନ୍ତି କି ନାହିଁ—ଏସବୁ ଦେଖିବା ମୋର କ୍ଷମତାରି ପରିସରଭୁକ୍ତ ନୁହେଁ । ମୁଁ ଅନ୍ୟକୁ ଅନୁକରଣ କାହିଁକି କରିବ ? ମୁଁ ଏହି ଆଜ୍ଞାକୁ ପାଳନ କରି ମୋ ଜୀବନରେ ଦେଖାଇବ, ଯାହା ଫଳରେ ଅନ୍ୟମାନେ ମୋ ଠାରୁ ଏହି ଗୁଣ ଶିକ୍ଷା କରିବେ । ମୋର ଶିବବାବାଙ୍କ ଆଜ୍ଞା ପାଳନ କରିବା ଉଚିତ ନା ଅନ୍ୟ ମନୁଷ୍ୟକୁ ଅନୁକରଣ କରିବା ବା ଦେଖିବା ଉଚିତ ?

**ଜିଜ୍ଞାସୁ**—ଏଥିରେ କୌଣସି ସନ୍ଦେହ ନାହିଁ ଯେ ଆମ୍ଭେମାନେ ସର୍ବଦା ଆମ ସମ୍ମୁଖରେ ଏକ ଉଚ୍ଚ ଆଦର୍ଶ ରଖିବା ଉଚିତ ଏବଂ ଅନ୍ୟ ପୁରୁଷାର୍ଥୀ-ମାନଙ୍କୁ ନ ଦେଖି ସମ୍ପୂର୍ଣ୍ଣ ନିର୍ବିକାର ଜୀବନରୂପୀ ଲକ୍ଷ୍ୟକୁ ସର୍ବଦା ସମ୍ମୁଖରେ ରଖିବା ବିଧେୟ । କିନ୍ତୁ ମୁଁ ଜାଣିପାରୁ ନାହିଁ ଯେ କାହିଁକି ମୋ ସମ୍ମୁଖରେ ପ୍ରମାଦ ଆସିଯାଉଛି । ଗୃହସ୍ଥ ଜୀବନରେ ଯେତେବେଳେ ଛୁଆପିଲାଙ୍କୁ ସମ୍ଭାଳିବାକୁ ପଡ଼ୁଛି ଏବଂ ଶ୍ରେଷ୍ଠମାନଙ୍କ ସହିତ କାର୍ଯ୍ୟ ବ୍ୟବହାରରେ ଆସିବାକୁ ପଡ଼ୁଛି, ସେତେବେଳେ ସାମାନ୍ୟ ଆବେଶ, ବଡ଼ପଣ ଇତ୍ୟାଦି ସଂସ୍କାରରେ ଆସିଯାଉଛି ଏବଂ ମନୁଷ୍ୟ ଯେତେବେଳେ ନିଜକୁ ଅନ୍ୟ ଗୃହସ୍ଥଠାରୁ ଭଲ ବୋଲି ଶୁଣୁଛି, ସେତେବେଳେ ଭୁଲ ସମ୍ମୁଖରେ ଦଣ୍ଡାୟମାନ ହେବାକୁ ଲାଗୁଛି ।

**ବ୍ରହ୍ମାକୁମାରୀ**—ଗୃହସ୍ଥ ଉପରେ ଅଧିକ ଦାୟିତ୍ୱ ସାଧାରଣତଃ ଥାଏ । କାରଣ ସେ ଯେପରି କରେ ତା'ର ପ୍ରଭାବ ଘରର ବାତାବରଣ ଉପରେ ପ୍ରତିଫଳିତ ହୁଏ ଏବଂ ଶିଶୁମାନେ ମଧ୍ୟ ଏଗୁଡ଼ିକୁ ଅନୁକରଣ କରି ସେପରି କରିବାକୁ ଶିକ୍ଷା ପାଆନ୍ତି । ଯଦି ଗୃହସ୍ଥ ମିଥ୍ୟା କହୁଥାଏ, ତେବେ ଶିଶୁମାନେ ମଧ୍ୟ ମିଥ୍ୟା କହିବାକୁ ଲାଗନ୍ତି । ଯଦି ସେ ଆଜି କ୍ରୋଧ କରୁଥାଏ ତେବେ କାଲି ସନ୍ତାନମାନଙ୍କର କୌଣସି ଆଶା ପୂରଣ ନ ହେଲେ ଆବେଶ ଏବଂ କ୍ରୋଧରେ ସେମାନେ କଥାବାର୍ତ୍ତା କରନ୍ତି । ଏହା ଫଳରେ ସେ ଶ୍ରେଷ୍ଠମାନଙ୍କ ଉପରେ ବଡ଼ପଣର ଅଭ୍ୟାସ କରନ୍ତି । ଯଦି ପିତାମାତା ପ୍ରତିଦିନ ଈଶ୍ୱରୀୟ ଜ୍ଞାନକୁ ଅଧ୍ୟୟନ କରିବା ପାଇଁ ସତ୍‌ସଙ୍ଗ ବା ପାଠଶାଳାକୁ ଯାଆନ୍ତି ଏବଂ ଆଳସ୍ୟର ବଶୀଭୂତ ହୋଇ ଶୋଇ ରହନ୍ତି କିମ୍ବା ପ୍ରମାଦର ବଶୀଭୂତ ହୋଇ ପାଠଶାଳାକୁ ନ ଯାଆନ୍ତି ତେବେ ସନ୍ତାନମାନେ ମଧ୍ୟ ସେମାନଙ୍କଠାରୁ ଏସବୁ କଥା ଶିଖନ୍ତି । ସେମାନେ ମଧ୍ୟ ଆଳସ୍ୟ ସ୍ୱଭାବଯୁକ୍ତ ହୋଇଯାଆନ୍ତି ଏବଂ ଈଶ୍ୱରୀୟ ସ୍ମୃତିରେ ଏକାଗ୍ରଚିତ୍ତ ନ ହୋଇ ବରଂ ଈଶ୍ୱରଙ୍କଠାରୁ ବିମୁଖ ହୋଇ ଯାଆନ୍ତି । ପ୍ରମାଦ ଯୋଗୁଁ ଗୃହସ୍ଥ ଆତ୍ମିକ ଉନ୍ନତିରୁ ବଞ୍ଚିତ ହୁଏ ଏବଂ ସନ୍ତାନମାନଙ୍କୁ ବିକାଶ ବୃତ୍ତିରେ ପରିଣତ କରାଇବାରେ ଚେଷ୍ଟିତ ହୁଏ ।

# ଘୃଣାରୁ ନିବୃତ୍ତି

କାମ କ୍ରୋଧ, ଲୋଭ, ମୋହ, ଅହଙ୍କାର ଏବଂ ଆଳସ୍ୟ ମାନବର ଷଡ଼ରିପୁ ରୂପେ ସୁପରିଚିତ । ଏହି ଷଡ଼ରିପୁ ମାନବର ଆଧ୍ୟାତ୍ମିକ ଏବଂ ଦୈବୀଗୁଣକୁ ଧୀରେ ଧୀରେ ଅପହରଣ କରି ଶେଷରେ ତାକୁ ଅଶାନ୍ତ କରିଦିଏ । ପରନ୍ତୁ, ବାସ୍ତବ କ୍ଷେତ୍ରରେ ଦେଖାଯାଏ ଯେ, ଘୃଣା, ଈର୍ଷା ଓ ଦ୍ୱେଷ ମଧ୍ୟ କୌଣସିରୂପେ ଏହି ଷଡ଼ରିପୁଠାରୁ କମ୍ ନୁହନ୍ତି । ମାତ୍ର ଏଗୁଡ଼ିକୁ ବିକାର ବା ଶତ୍ରୁମାନଙ୍କ ମଧ୍ୟରେ ଗଣନା କରାଯାଉ ନ ଥିଲେ ମଧ୍ୟ ଏହା ବିକାରର ଅନ୍ତର୍ଗତ । ଏଗୁଡ଼ିକ ସ୍ୱତନ୍ତ୍ରଭାବେ ଗଣନା ନ କରିବାର ଉଦ୍ଦେଶ୍ୟ ହେଉଛି ଯେ ଏମାନେ କାମ, କ୍ରୋଧାଦି ବିକାରର ଅନ୍ତର୍ଗତ । ତେଣୁ ଘୃଣାରୂପୀ ମହାବଳ ଶତ୍ରୁକୁ ଜୟ କରିବାପାଇଁ ଯତ୍ନପରାୟଣୋନ୍ତି ଚେଷ୍ଟା କରିବା ଆବଶ୍ୟକ । ଘୃଣା ଏପରି ଏକ ଅଗ୍ନି ଯାହାକି ମାନବର ରକ୍ତ ଏବଂ ମସ୍ତିଷ୍କକୁ ତା'ର ଇନ୍ଧନରୂପେ ବ୍ୟବହାର କରେ । ଘୃଣା ସ୍ୱଭାବଯୁକ୍ତ ମାନବ ସର୍ବଦା ସନ୍ତପ୍ତ ରହେ । ଫଳରେ ତା'ର ବିବେକ ନଷ୍ଟ ହୋଇଯାଏ ଏବଂ ତା'ର ଶାରୀରିକ ତଥା ମାନସିକ ସ୍ଥିତି ଏବଂ ସ୍ୱାସ୍ଥ୍ୟ ଖରାପ ଅବସ୍ଥାକୁ ଗତିକରେ । ଏହି ଅଧ୍ୟାୟରେ ଘୃଣାର କାରଣ ଏବଂ ତା'ର ନିବାରଣ ବିଷୟରେ ବିଶଦ ଆଲୋଚନା କରାଯାଇଛି ।

ବ୍ରହ୍ମାକୁମାରୀ—ଯେଉଁ ମାନବ ଯୋଗାଭ୍ୟାସ କରିବାପାଇଁ ଚାହେଁ, ତା' ପକ୍ଷେ ଘୃଣା ପରିତ୍ୟାଗ କରିବା ଏକାନ୍ତ ଆବଶ୍ୟକ । କାରଣ ଯେଉଁ ମାନବକୁ ଘୃଣା କରାଯାଏ ତା'ର ଚିତ୍ର ସର୍ବପ୍ରଥମେ ଯୋଗାଭ୍ୟାସ ସମୟରେ ଯୋଗାଭ୍ୟାସୀର ମାନସପଟରେ ପ୍ରତିଫଳିତ ହୁଏ, ଯାହା ଫଳରେ ତା' ମନରେ ତତ୍‌କ୍ଷଣାତ୍ ଦ୍ୱେଷ, କ୍ରୋଧ ଏବଂ ଦୁଃଖର ଲହରୀ ଉତ୍ପନ୍ନ ହୁଏ । ତେଣୁ ଶରୀରକୁ ଭୁଲିବା ଏବଂ ନିରାକାର ଈଶ୍ୱର ସ୍ମୃତିରେ ସ୍ଥିତ

ହେବା ଇତ୍ୟାଦି ଯେଉଁ ଶ୍ରେଷ୍ଠ ଲକ୍ଷ୍ୟ, ତାହା ଯୋଗାଭ୍ୟାସୀର ସମ୍ମୁଖରେ ରହିବା ଉଚିତ । ଯେଉଁଥିରୁ ସେ ସ୍ୱତଃ ଦୂରେଇ ଯାଏ, ଯାହା ଫଳରେ ସେ ପ୍ରଭୁ-ପ୍ରୀତି ଏବଂ ମାନସିକ ଶାନ୍ତି ଅନୁଭବ କରିବା ପରିବର୍ତ୍ତେ କ୍ରୋଧ ଓ ଦ୍ୱେଷର ଆବେଗରେ ପରିଚାଳିତ ହୁଏ ।

ଜିଜ୍ଞାସୁ—ଭଉଣୀ, ବାସ୍ତବରେ ମୁଁ ଆପଣଙ୍କ କଥା ସ୍ୱୀକାର କରୁଛି ଯେ ଯେଉଁ ମାନବ ପ୍ରତି ଘୃଣାଭାବ ଥାଏ, ତା'ର ଚିନ୍ତ ଯୋଗାଭ୍ୟାସୀ ସମ୍ମୁଖରେ ସ୍ୱତଃ ଚାଲିଆସେ ଏବଂ ଏହାର ପରିଣାମସ୍ୱରୂପ ସେ ଯୋଗାଭ୍ରଷ୍ଟ ହେବା ସ୍ୱାଭାବିକ । କିନ୍ତୁ ଭଉଣୀ, ଘୃଣାଭାବ ଉତ୍ପନ୍ନ ହେବାର କାରଣ କ'ଣ ?

## ଅଭିମାନପୂର୍ଣ୍ଣ ବ୍ୟବହାର

ବ୍ରହ୍ମାକୁମାରୀ—ଗମ୍ଭୀର ଭାବରେ ବିଚାର କରିବା ପରେ ଆପଣ ଏହି ସିଦ୍ଧାନ୍ତରେ ଉପନୀତ ହେବେ ଯେ ମନୁଷ୍ୟର ଯେଉଁ ବ୍ୟକ୍ତିମାନଙ୍କ ସହିତ ଆଦାନପ୍ରଦାନ, ମିଳାମିଶା, କାର୍ଯ୍ୟ-ବ୍ୟବହାର ଥାଏ ଏବଂ ଏଥିରେ ଯଦି କେତେବେଳେ ସେହି ବ୍ୟକ୍ତିମାନଙ୍କର ଅହଂକାର ଆସେ ଅଥବା ଉକ୍ତ ମାନବକୁ ଉପେକ୍ଷିତ କରିଯାଏ କିମ୍ବା ତା'ର ବିଚାରକୁ କାର୍ଯ୍ୟାନ୍ୱିତ କରିବାପାଇଁ ଉପଯୁକ୍ତ ସୁବିଧା ଦିଆ ନ ଯାଏ କିମ୍ବା ତା'ର ବୁଦ୍ଧି, କାର୍ଯ୍ୟଦକ୍ଷତା ଏବଂ ସାମର୍ଥ୍ୟକୁ ବହୁତ କମ୍ ଏବଂ ସୀମିତ ଭାବି ତାକୁ ଅତି ତୁଚ୍ଛ ଏବଂ ସାଧାରଣ ରୂପେ ପରିଗଣିତ କରିଯାଏ, ତେବେ ଉକ୍ତ ମାନବ ମନରେ ସେହି ବ୍ୟକ୍ତିମାନଙ୍କ ପ୍ରତି ଘୃଣାଭାବ ସ୍ୱତଃ ଉତ୍ପନ୍ନ ହୁଏ ।

ଅନ୍ୟ ଅର୍ଥରେ କହିବାକୁ ଗଲେ ଯେତେବେଳେ କୌଣସି ବ୍ୟକ୍ତି ଅନୁଚିତ ବଡ଼ିମା, ବାଧ-ବାଧକତା, ସନ୍ଦେହ, ଅନ୍ୟାୟ, ଉପେକ୍ଷା, ସ୍ୱାର୍ଥପରତା, ଛନ୍ଦ-କପଟ ଅଥବା ଅପମାନଯୁକ୍ତ ବ୍ୟବହାର ପ୍ରଦର୍ଶନ

କରେ, ସେତେବେଳେ ସେହି ମାନବ ପ୍ରତି ଲୋକମାନଙ୍କ ମନରେ ଘୃଣା ଏବଂ ଦ୍ୱେଷ ଉତ୍ପନ୍ନ ହୁଏ ।

ଉଦାହରଣସ୍ୱରୂପ, ବଡ଼ମାନେ ଶ୍ରେଷ୍ଠ ପିଲାମାନଙ୍କୁ ସ୍ନେହ, ଶ୍ରଦ୍ଧା କରିବା ପରିବର୍ତ୍ତେ ଯଦି ସେମାନଙ୍କ ଉପରେ କର୍ତ୍ତୃତ୍ୱ ଏବଂ ବଡ଼ିମା ଦେଖାନ୍ତି କିମ୍ବା ସେମାନଙ୍କୁ ନିଷ୍କ୍ରିୟିତ କରି ରଖନ୍ତି ତେବେ ସେମାନେ ସ୍ୱତଃ ଅକ୍ଷମ ( Inefficient ) ଏବଂ ଅନୁଭବହୀନ (Inexperienced) ହୋଇଯାଆନ୍ତି । ଫଳରେ ଶ୍ରେଷ୍ଠ ବ୍ୟକ୍ତିଙ୍କ ସେମାନଙ୍କ ମନରେ ବଡ଼ମାନଙ୍କ ପ୍ରତି ଘୃଣାଭାବ ଉତ୍ପନ୍ନ ହୁଏ । ଆଜି ପ୍ରକୃତ ସ୍ୱତନ୍ତ୍ରତା ଏବଂ ବିଶ୍ୱରର ଉପଯୁକ୍ତ ମୂଲ୍ୟବୋଧ ନ ଥିବାରୁ କର୍ମଚାରୀ ଓ ଶାସକ ଏବଂ ଯୁବାବର୍ଗ ଓ ବୟୋବୃଦ୍ଧ ବ୍ୟକ୍ତିମାନଙ୍କ ମଧ୍ୟରେ ଦ୍ୱେଷ ମଧ୍ୟ ବୃଦ୍ଧି ପାଉଛି । ଏହିସବୁ କାରଣରୁ ଆଜି ରାଜନୈତିକ ଗୋଷ୍ଠୀମାନଙ୍କ ମଧ୍ୟରେ ବିଭିନ୍ନ ବାଦବିବାଦ ଏବଂ ପରିବାରଗୁଡ଼ିକରେ ଶାଶୁ-ବୋହୂ ମଧ୍ୟରେ ଘୃଣା ଓ ଅସନ୍ତୋଷ ମଧ୍ୟ ଦେଖାଯାଉଛି । ଏହି କାରଣରୁ ଶ୍ରମିକମାନେ ଆଜି ପୁଞ୍ଜିପତିମାନଙ୍କୁ ଘୃଣା କରୁଛନ୍ତି ଏବଂ ସେମାନେ ଉପଲବ୍ଧି କରୁଛନ୍ତି ଯେ ସେମାନଙ୍କ ପ୍ରତି ଅନ୍ୟାୟ କରାଯାଉଛି । ଗୋଟିଏ ଦଳ ପ୍ରାନ୍ତୀୟତା ଭ୍ରାତୃବାଦ ତଥା ଜାତିବାଦକୁ ସେମାନଙ୍କ ସମ୍ମୁଖରେ ରଖି ଅନ୍ୟ ଗୋଟିଏ ଦଳକୁ ସେମାନଙ୍କର ପକ୍ଷପାତ ବିଚାର, ସଂକୁଚିତ ସ୍ୱାର୍ଥ ମନୋଭାବ ପାଇଁ ଘୃଣା କରୁଛନ୍ତି । ଦୁଇ ବନ୍ଧୁ ମଧ୍ୟରେ ଯେତେବେଳେ ଜଣେ ଅନ୍ୟ ଜଣଙ୍କ ପ୍ରତି ସ୍ୱାର୍ଥ ମନୋଭାବ ନେଇ ବ୍ୟବହାର କରେ କିମ୍ବା ଛନ୍ଦ-କପଟ କରେ, ସେତେବେଳେ ପରସ୍ପର ମଧ୍ୟରେ ଘୃଣା ଉତ୍ପନ୍ନ ହୁଏ । ଜଣେ ଅନ୍ୟ ଜଣକୁ ଉପେକ୍ଷା କରୁଥିବାରୁ କିମ୍ବା ସ୍ନେହ ଓ କୃତଜ୍ଞତାପୂର୍ଣ୍ଣ ବ୍ୟବହାର କରୁ ନ ଥିବାରୁ ସହଯୋଗୀମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଘୃଣାଭାବ ଉତ୍ପନ୍ନ ହୁଏ । ଏହିପରି ବିଭିନ୍ନ ବ୍ୟବହାରିକ ଦୁର୍ବଳତାହିଁ ଘୃଣା ଦ୍ୱେଷର ମୂଳ କାରଣ ।

**ଜିଜ୍ଞାସୁ**—ହଁ ଭଉଣୀ, ମୁଁ ଆପଣଙ୍କର ସ୍ପଷ୍ଟୀକରଣକୁ ଭଲ ଭାବରେ ବୁଝି ପାରୁଛୁ । ପ୍ରତ୍ୟେକ ବ୍ୟକ୍ତି ଚାହୁଁଛି ଯେ ଲୋକମାନେ ତାକୁ ସ୍ନେହ କରନ୍ତୁ ଏବଂ ଘୃଣା ନ କରନ୍ତୁ, ମାତ୍ର ସେ ଜାଣିବା ଦରକାର ଯେ "ତାକୁ ଘୃଣା କାହିଁକି କରୁଛନ୍ତି ?"

**ବ୍ରହ୍ମାକୁମାରୀ**—ହଁ, ଘୃଣାର ଅନ୍ୟ ଏକ କାରଣ ହେଉଛି ଯେ—'ହିତକୁ ଅହିତରେ ପରିଣତ କରିବାର ଭୟ ।' ଯେତେବେଳେ ମନୁଷ୍ୟ ଉପଲବ୍ଧି କରେ ଯେ କୌଣସି ବ୍ୟକ୍ତି ତା'ର କ୍ଷତି କରିବାକୁ ଚାହୁଁଛି ଅଥବା ତା'ର ଧନ ମାନ, ଯଶ, ସୁଖ ସୁବିଧା ଆଦିକୁ ଅପହରଣ କରିବାକୁ ଚାହୁଁଛି ଯେତେବେଳେ ଉକ୍ତ ବ୍ୟକ୍ତି ପ୍ରତି ତା'ର ଈର୍ଷା ଓ ପ୍ରତିଦ୍ୱନ୍ଦ୍ୱୀ ଭାବନା ଦେଖାଦିଏ । ତା' ପ୍ରତି ଦ୍ୱେଷ ଏବଂ ଘୃଣା ସ୍ୱତଃ ଉତ୍ପନ୍ନ ହୁଏ । ଯାହା ପ୍ରତି ମାନବର ଈର୍ଷା ହୁଏ ତା'ର ଗୁଣ ମଧ୍ୟ ସେହି ମାନବକୁ ଅବଗୁଣ ସଦୃଶ ଜଣାପଡ଼େ ଏବଂ କଣ୍ଟାଭଳି କଷ୍ଟଦାୟକ ଅନୁଭବ ହୁଏ । ଏହି କାରଣ ଯୋଗୁଁ ଗୋଟିଏ ପରିବାରର ଭାଇମାନଙ୍କ ମଧ୍ୟରେ ଘୃଣାଭାବ ବା ମନାନ୍ତର ସୃଷ୍ଟି ହୁଏ । ଏହି କାରଣ ହିଁ ରାଜନୈତିକ ତଥା ସାମାଜିକ ସମ୍ବନ୍ଧରେ ଏକ ବଡ଼ ରୂପ ଧାରଣ କରି ଦେଶର ଅବନତିର ପ୍ରତୀକରୂପେ ଦଣ୍ଡାୟମାନ ହୁଏ ।

**ଜିଜ୍ଞାସୁ**—ଭଉଣୀ, ଏହିସବୁ କାରଣରୁ ଦୁନିଆଁରେ ଘୃଣା ଏବଂ ଦ୍ୱେଷ ଦିନକୁ ଦିନ ସମ୍ପ୍ରସାରିତ ହେଉଛି । ଏହି କାରଣରୁ ସଂସାର ଆଜି ନର୍କରେ ପରିଣତ ହୋଇଛି । ଏହା ଏପରି ଏକ ବିକାର ଯେ ଏହା ଉତ୍ପନ୍ନ ହେବା ସଙ୍ଗେ ସଙ୍ଗେ ମନୁଷ୍ୟର ସ୍ଥିତି (Mood) ଅଥବା ମନର ବୃତ୍ତି ପ୍ରଥମେ ପରିବର୍ତ୍ତିତ ହୋଇଯାଏ । ବର୍ତ୍ତମାନ ଏହାର ନିବାରଣ କିପରି ସମ୍ଭବ ?

## ଏହିସବୁ କାରଣରୁ ନିବୃତ୍ତି କିପରି ସମ୍ଭବ

ବ୍ରହ୍ମାକୁମାରୀ—ମୁଁ ଆପଣଙ୍କୁ ଘୃଣାର ଅନେକ କାରଣ କହିଛି, କିନ୍ତୁ ଯେ କୌଣସି କାରଣ ବା ପରିସ୍ଥିତି ଆମ ସମ୍ମୁଖକୁ ଆସୁନା କାହିଁକି, ଆମ୍ଭମାନଙ୍କ ମନରେ ଆଦୌ ଘୃଣା ଉତ୍ପନ୍ନ ହେବା ଉଚିତ ନୁହେଁ। କାରଣ ଘୃଣା ଯୋଗର ପ୍ରତିବନ୍ଧକ ଏବଂ ଏହା କ୍ରୋଧ, ଦ୍ୱେଷ ଏବଂ ଦୁଃଖର ଜନ୍ମଦାତା। ତେଣୁ ଏକଥା ଆମ୍ଭମାନଙ୍କ ପକ୍ଷରେ କହିବା ଠିକ୍ ନୁହେଁ ଯେ—"ଅମୁକ ବ୍ୟକ୍ତି ଏପରି କରିବା ଦ୍ୱାରା ତାର ପରିଣାମସ୍ୱରୂପ ମୋ ମନରେ ସେ ସମୟରେ ତା'ପ୍ରତି ଘୃଣାଭାବ ଉତ୍ପନ୍ନ ହେଲା।" ଆମ୍ଭେମାନେ ଘୃଣାର ଔଚିତ୍ୟ ( Justification ) ମଧ୍ୟ ଏହି ଆଧାର ଉପରେ ପ୍ରମାଣ କରିପାରିବା ନାହିଁ ଯେ—"ଯଦି ଆମ ପାଖରେ ଘୃଣାଭାବ ନ ରହେ ତେବେ ଆମ୍ଭେମାନେ ଅନ୍ୟର ମନ୍ଦ କାର୍ଯ୍ୟକୁ ଜାଣିବା କିପରି ବା ତା ବିରୁଦ୍ଧରେ ହସ୍ତ ଉତ୍ତୋଳନ କରିବା କିପରି ? ଘୃଣାର ଅନୁପସ୍ଥିତିରେ ଆମକୁ ଅନ୍ୟର ମନ୍ଦ କାର୍ଯ୍ୟକୁ ବରଦାସ୍ତ କରିବାକୁ ହିଁ କେବଳ ପଡ଼ିବ।" ବାସ୍ତବରେ ଯଦି ଆମ୍ଭମାନଙ୍କ ମନରେ ଘୃଣାଭାବ ରହେ ତେବେ ତାହା କେବଳ ଅନୁଚିତ କର୍ମ ସମ୍ପାଦନ ପାଇଁ ଆମକୁ ଉତ୍ସାହ ଦେବ ଏବଂ ଅନ୍ୟର ଅବଗୁଣକୁ ଦେଖିବାପାଇଁ ଓ ଅନ୍ୟ ଆଗରେ ପ୍ରକାଶ କରିବା ପାଇଁ ପ୍ରେରଣା ମଧ୍ୟ ଦେବ। ତେଣୁ ଘୃଣାର ଯେଉଁସବୁ କାରଣ କୁହାଯାଇଛି ସେଗୁଡ଼ିକର ସାରମର୍ମକୁ ନିମ୍ନରେ ପୁନଃ ଉଲ୍ଲେଖ କରି ସେଗୁଡ଼ିକର ନିବାରଣର ଉପାୟ ସମ୍ବନ୍ଧରେ ବିସ୍ତୃତ କରାଯାଇଛି।

(୧) ଯେତେବେଳେ ଜଣେ ବ୍ୟକ୍ତି ଅନ୍ୟ ଜଣଙ୍କ କଥାକୁ ସମ୍ମାନ ନ ଦିଏ ଅଥବା ସମର୍ଥନ ଓ ଅନୁମୋଦନ ନ କରେ କିମ୍ବା ତା'ର ବିସ୍ତୃତ ଏବଂ ଚେଷ୍ଟାପାଇଁ ତାକୁ ପ୍ରଶଂସା ବା ପ୍ରୋତ୍ସାହନ ନ କରେ ସେତେବେଳେ ଘୃଣା ଉତ୍ପନ୍ନ ହୁଏ;

(୨) ଯେତେବେଳେ କୌଣସି ବ୍ୟକ୍ତି ଜ୍ଞାତ ବା ଅଜ୍ଞାତରେ ଅନ୍ୟ ଜଣକର ହିତକୁ ଅହିତରେ ପରିଣତ କରିବାକୁ ଇଚ୍ଛା କରେ, ଅଥବା

ତା'ର କୌଣସି ଇଚ୍ଛା ପୂରଣରେ ପ୍ରତିବନ୍ଧକ ସୃଷ୍ଟି କରେ, ସେତେବେଳେ ଘୃଣା ଉତ୍ପନ୍ନ ହୁଏ ।

(୩) ଯେତେବେଳେ କୌଣସି ବ୍ୟକ୍ତି ଅନ୍ୟକୁ ନିନ୍ଦା କରେ ଅଥବା ତୀବ୍ର ସମାଲୋଚନା କରେ ଏବଂ ଲୋକମାନଙ୍କ ସମ୍ମୁଖରେ ତାକୁ ନୀଚ ବୋଲି ପ୍ରମାଣିତ କରିବାକୁ ଇଚ୍ଛାକରେ, ଅଥବା ତା' ସହିତ ଦୁର୍ବ୍ୟବହାର କରେ, ସେତେବେଳେ ଘୃଣା ଉତ୍ପନ୍ନ ହୁଏ ।

(୪) ଯେତେବେଳେ ଜଣେ ଅନ୍ୟଜଣଙ୍କ ପାଖରେ ଅହଂକାର, ଧୂର୍ତ୍ତ ଚତୁରତା ଏବଂ ଲୋଭ ଦେଖେ, ସେତେବେଳେ ତା'ପ୍ରତି ଘୃଣା ଉତ୍ପନ୍ନ ହୁଏ, ଏବଂ

(୫) ଯେତେବେଳେ ଜଣେ ଅନ୍ୟ ଜଣଙ୍କ ପାଖରେ ଦୁର୍ଗୁଣ, ଦୁଷ୍ଟ ଆଚରଣ ଅଥବା ଖରାପ ଅଭ୍ୟାସ ଦେଖେ, ସେତେବେଳେ ମଧ୍ୟ ଘୃଣା ଉତ୍ପନ୍ନ ହୁଏ ।

ବର୍ତ୍ତମାନ ପ୍ରଶ୍ନ ଉଠେ ଯେ ଏସବୁ କାରଣ ସମ୍ମୁଖରେ ଥିଲେ ମଧ୍ୟ ଆମ୍ଭେମାନେ ଘୃଣାରୁ କିପରି ନିବୃତ୍ତି ପାଇପାରିବା ? ବର୍ତ୍ତମାନ ଉପରୋକ୍ତ ଗୋଟିଏ ଗୋଟିଏ କାରଣକୁ ନେଇ ତା'ର ନିବାରଣର ଯୁକ୍ତି ମୁଁ ଆପଣଙ୍କ ସମ୍ମୁଖରେ ଉପସ୍ଥାପନା କରୁଛି ।

## ପ୍ରଥମ ଓ ଦ୍ୱିତୀୟ କାରଣ ଏବଂ ତା'ର ନିବାରଣ

ଯଦି କୌଣସି ବ୍ୟକ୍ତି ଆପଣଙ୍କ କଥାକୁ ସମର୍ଥନ ଅଥବା ଅନୁମୋଦନ ନ କରେ ସେ ହୁଏତ ଅନ୍ୟ କୌଣସି ବ୍ୟକ୍ତିର କଥାକୁ ସମର୍ଥନ କରିପାରେ । କାରଣ ସେ (ଅନ୍ୟ) ବ୍ୟକ୍ତି ତା'ର ସ୍ନେହୀ ହୋଇପାରେ କିମ୍ବା ତା'ର (ଅନ୍ୟର) କଥା ତା'ପାଇଁ ପସନ୍ଦଯୋଗ୍ୟ ହୋଇପାରେ । ଯଦି ଏହି କାରଣରୁ ଆପଣ ତାକୁ ଘୃଣା କରନ୍ତି ତେବେ ସବୁଦିନ ପାଇଁ ସେ ଆପଣଙ୍କର

ଶତ୍ରୁ ଏବଂ ବିଦ୍ୱେଷୀ ହୋଇଯିବ । ତେଣୁ ଘୃଣା ପରିବର୍ତ୍ତେ ଆପଣ ଯଦି ତାଙ୍କୁ ସର୍ବଦା ସ୍ନେହ କରନ୍ତୁ, ତେବେ ସେ ଦିନେ ନିଶ୍ଚୟ ବଦଳିବ ଏବଂ ଆପଣଙ୍କୁ ମଧ୍ୟ ସମର୍ଥନ କରିବ; ଆପଣଙ୍କର ସହଯୋଗୀ ହେବ ଏବଂ ଆପଣଙ୍କୁ ସହାନୁଭୂତି ମଧ୍ୟ ଦେଖାଇବ ।

ପୁନଶ୍ଚ ଏହା ମଧ୍ୟ ହୋଇପାରେ ଯେ ଆପଣଙ୍କ କଥାରେ ବିଶେଷ ଓଜନ ହୁଏତ ଥାଇ ନ ପାରେ କିମ୍ବା ଅନ୍ୟମାନଙ୍କର ଗୁଣ ଗାନ କରି ସେମାନଙ୍କୁ ନିଜର ବିଚାରାନୁକୂଳ କରିବାପାଇଁ ଯେଉଁ କଳା ଆବଶ୍ୟକ ତାହା ହୁଏତ ଆପଣଙ୍କ ପାଖରେ ଥାଇ ନ ପାରେ । ଏତଦ୍‌ବ୍ୟତୀତ ଆପଣ କଥା କହିଲାବେଳେ ହୁଏତ ଆବେଗ, ଅସନ୍ତୋଷ ଅଥବା ନିରସତା ପ୍ରକାଶ କରୁ-ଥିବେ । ଯାହାଫଳରେ ଅନ୍ୟମାନେ ଆପଣଙ୍କର ଏପରି ମନୋଭାବ ଜାଣିପାରି ଆପଣଙ୍କ ବିଚାରକୁ ହୁଏତ ବିରୋଧ କରୁଥିବେ । ତେଣୁ ଏସବୁ ହେଉଛି ଆପଣଙ୍କର ଦୁର୍ବଳତା, ଯାହାକୁ ଖୁବ୍ ଶୀଘ୍ର ଠିକ୍ କରିବା ଆପଣଙ୍କର କର୍ତ୍ତବ୍ୟ ।

ଅନ୍ୟ ଦୃଷ୍ଟିକୋଣରୁ ବିଚାର କଲେ ଏକଥା ମଧ୍ୟ ସମ୍ଭବ ଯେ ଆପଣଙ୍କୁ ବିରୋଧ କରୁଥିବା ବ୍ୟକ୍ତିମାନେ ହୁଏତ ଉପଲବ୍ଧି କରିଥିବେ ଯେ ଆପଣଙ୍କ ବିଚାରକୁ ଯଦି କାର୍ଯ୍ୟାନ୍ୱିତ କରାଯାଏ ତେବେ ସେମାନଙ୍କର କିଛି ଅହିତ ହୋଇପାରେ । ତେଣୁ ସେମାନଙ୍କର ହିତ ଯେପରି ସମ୍ପୂର୍ଣ୍ଣ ସୁରକ୍ଷିତ ରହେ ସେ ଦୃଷ୍ଟିରୁ ସେମାନଙ୍କୁ ସ୍ପଷ୍ଟୀକରଣ ଦେବା ଏବଂ ସେମାନଙ୍କୁ ସନ୍ତୁଷ୍ଟ କରିବା ମଧ୍ୟ ଆପଣଙ୍କର କର୍ତ୍ତବ୍ୟ । ଯଦି ଅନ୍ୟମାନଙ୍କର ସମର୍ଥନ, ଅନୁମୋଦନ, ସହଯୋଗ ତଥା ସହାନୁଭୂତି ଲାଭ କରିବା ପାଇଁ ଆପଣ ଇଚ୍ଛା କରନ୍ତି, ତେବେ ସେମାନଙ୍କୁ ଘୃଣା ନ କରି ସର୍ବଦା ସ୍ନେହ କରନ୍ତୁ ଏବଂ ସେମାନଙ୍କ ପ୍ରତି ଶୁଭ ଭାବନା ରଖନ୍ତୁ । ଘୃଣା କରିବାଦ୍ୱାରା ହିଁ ଅନ୍ୟମାନଙ୍କ ମନରେ ଘୃଣା ଭାବନା ଜାଗ୍ରତ ହୁଏ, ଯାହାଫଳରେ ସେମାନଙ୍କଠାରୁ ସ୍ନେହ ସହ-ଯୋଗ ଓ ସମ୍ମାନ ଲାଭ କରିବା ଏକ ଦିବା ସ୍ୱପ୍ନ ଭଳି ମନେହୁଏ । ଅନ୍ୟମାନଙ୍କୁ ଯଦି ଆମେ ସ୍ନେହ, ସଦ୍‌ଭାବପୂର୍ଣ୍ଣ ବ୍ୟବହାର ପ୍ରଦର୍ଶନ କରିବା ତେବେ ଦିନେ

ନା ହେଲେ ଆମ୍ଭେମାନେ ସେମାନଙ୍କଠାରୁ ସ୍ନେହ ଓ ସମର୍ଥନ ନିଶ୍ଚୟ ଲାଭ କରିପାରିବା ।

ଏତଦ୍‌ବ୍ୟତୀତ ଯଦି ଅନ୍ୟମାନଙ୍କର ସମର୍ଥନ ଏବଂ ସହଯୋଗ ଆପଣଙ୍କର ଆବଶ୍ୟକ, ତେବେ ଆପଣ ସେମାନଙ୍କ ସହିତ ଏଭଳି ବ୍ୟବହାର କରନ୍ତୁ ଯାହାଫଳରେ ସେମାନେ ମଧ୍ୟ ହୃଦୟଙ୍ଗମ କରିପାରିବେ ଯେ ଆପଣ ଅତି ବିନମ୍ର ଭାବରେ ସେମାନଙ୍କର ସହଯୋଗ କାମନା କରୁଛନ୍ତି । ଯଦି କୌଣସି ମାନବ ଅନୁଭବ କରେ ଯେ ଅନ୍ୟ ଜଣେ ତାର ସହାୟତା ଏବଂ ସହଯୋଗ ମାଗୁଛି ଏବଂ ସେହି ସହାୟତା ଓ ସହଯୋଗ ଦେବାଦ୍ୱାରା ତାର ନିଜର କୌଣସି କ୍ଷତି ହେଉନାହିଁ, ତେବେ ସେ ଅନାୟାସରେ ସହଯୋଗ ଦେବ । ଏପରି ସହଯୋଗ ପାଇଁ ତା' ମନରେ ଦ୍ୱିଧା ବା ଘୃଣା ଉତ୍ପନ୍ନ ହୁଏ ନାହିଁ ।

**ଜିଜ୍ଞାସୁ**—ଏକଥା ମୁଁ ବୁଝିପାରୁଛି, ମାତ୍ର ଯଦି କୌଣସି ବ୍ୟକ୍ତି ଆମର ନିନ୍ଦା କରେ ତେବେ କ'ଣ କରାଯିବ ?

## ତୃତୀୟ କାରଣ ଏବଂ ତାର ନିବାରଣ

**ବ୍ରହ୍ମାକୁମାରୀ**—ଯେଉଁ ବ୍ୟକ୍ତି ଆମର ନିନ୍ଦା କରେ ଅଥବା ଅନ୍ୟ ପାଖରେ ଆମ ବିଷୟରେ ଆଲୋଚନା କରେ, ସେଥିରେ ଆମ୍ଭେମାନେ ଉତ୍ତେଜିତ ହେବା ଠିକ୍ ନୁହେଁ । କଥାରେ ଅଛି ଯେ—"ଯଦି କେହି ଆକାଶଆଡ଼କୁ ଛେପ ମାରେ ତା ସ୍ୱତଃ ପୃଥିବୀ ଉପରକୁ ଲେଉଟି ଆସେ ।" ଏଣୁ ଯଦି ଆମର କୌଣସି ଦୋଷ ନାହିଁ ଏବଂ ଯେଉଁ ବ୍ୟକ୍ତି ଆମର-ନିନ୍ଦା କରିବ, ସେହି ନିନ୍ଦା ହିଁ ମିଥ୍ୟା ବୋଲି ପ୍ରମାଣିତ ହେବ ଏବଂ ଲୋକମାନେ ସେହି ବ୍ୟକ୍ତି ବିଷୟରେ କହିବେ ଯେ ନିନ୍ଦା କରୁଥିବା ବ୍ୟକ୍ତି ବାସ୍ତବରେ ମିଥ୍ୟାବାଦୀ, ଯାହାଫଳରେ ସେହି ନିନ୍ଦା ହିଁ ପ୍ରତ୍ୟାବର୍ତ୍ତନ କରି ଉକ୍ତ ବ୍ୟକ୍ତି ପାଖକୁ ଚାଲିଯିବ । ଯଦି ଆମର କିଛି ଦୋଷ ଥାଏ, ତେବେ ଆନନ୍ଦରେ ତାହା ସ୍ୱୀକାର କରିନେବା ବିଧେୟ । ଏହା ଫଳରେ ଆମର

ସମ୍ମାନ ହାନି ହୁଏ ନାହିଁ କିମ୍ବା ମନ ଅଶାନ୍ତରେ ଘାଣ୍ଟି ହୁଏ ନାହିଁ ଏବଂ ଘୃଣାରୁ ମଧ୍ୟ ନିଜକୁ ରକ୍ଷା କରିବା ବହୁତ ସହଜ ଅନୁମିତ ହୁଏ ।

ଜିଜ୍ଞାସୁ— ଭଉଣୀ, ଏକଥା ମନକୁ ବହୁତ ପସନ୍ଦ ଲାଗୁଛି, କିନ୍ତୁ ଅନେକ ବ୍ୟକ୍ତି ଦୁନିଆରେ ବହୁତ ଅଭିମାନରେ ଅଛନ୍ତି । ସେମାନଙ୍କ ବ୍ୟବହାରରେ ମନୁଷ୍ୟ ମନରେ ଘୃଣା ସ୍ୱତଃ ଜାଗ୍ରତ ହୁଏ ।

## ଅଭିମାନୀ ପ୍ରତି ଉତ୍ପନ୍ନ ହେଉଥିବା ଘୃଣାର ନିବାରଣ

ବ୍ରହ୍ମାକୁମାରୀ—ଯଦି କୌଣସି ମାନବ ତା’ ସମ୍ପର୍କରେ ଆସୁଥିବା ଅନ୍ୟ ବ୍ୟକ୍ତି ପାଖରେ ଅଭିମାନ ଦେଖେ, ତେବେ ତା’ ମନରେ ଘୃଣା ଉତ୍ପନ୍ନ ହେବା ସଙ୍ଗେ ସଙ୍ଗେ ସେ ମଧ୍ୟ ବିଗ୍ଭର କରେ—ଏ ବ୍ୟକ୍ତି ନିଜକୁ ନିଜେ କ’ଣ ଭାବୁଛି ? ବାଃ, ନିଜକୁ ସର୍ବଦା ବଡ଼ ବୋଲି ଆଚରଣ କରୁଛି...... ଦିନେ ନା ଦିନେ ଏହାର ମୁଣ୍ଡ ଠିକ୍ ହୋଇଯିବ.....ମୋତେ ସେ କ’ଣ ଭାବୁଛି କି ?”

କିନ୍ତୁ ଏକଥା ବିଗ୍ଭର କରିବା ଦରକାର ଯେ ଯେପରି ଅନ୍ୟ ଏକ ବ୍ୟକ୍ତିର ଅଭିମାନରୂପୀ ଦୁର୍ଗୁଣ ଆମକୁ ଖରାପ ଲାଗୁଛି, ସେହିପରି ଆମ ପାଖରେ ଯଦି ଘୃଣାରୂପୀ ଦୁର୍ଗୁଣ ରହିବ, ତେବେ ତାହା କ’ଣ ଅନ୍ୟମାନଙ୍କୁ ଭଲ ଲାଗିବ କି ? ପୁନଶ୍ଚ, ଯଦି ଆମେ କହିବା ଯେ—“ସେ ଆମକୁ କ’ଣ ଭାବୁଛି କି ?” ତେବେ ଏହି ବାକ୍ୟରୁ ସିଦ୍ଧ ହେବ ଯେ ଆମ୍ଭମାନଙ୍କ ପାଖରେ ମଧ୍ୟ ଅଭିମାନ ରହିଛି । ଯଦିଓ ଏହି ଅଭିମାନ ପ୍ରଥମେ ଆମ ପାଖରେ ସୁପ୍ତାବସ୍ଥାରେ ଥିଲା, ତଥାପି ସେହି ମାନବର ଅଭିମାନ ଫଳରେ ଆମର ସୁପ୍ତ ଅଭିମାନ ବର୍ତ୍ତମାନ ଜାଗ୍ରତରେ ପରିଣତ ହେଲା । ତେଣୁ ଅନ୍ୟର ଅବଗୁଣକୁ ଦେଖି ନିଜେ କୌଣସି ଅବଗୁଣର ବଶୀଭୂତ ହେବା ଅପେକ୍ଷା ସର୍ବପ୍ରଥମେ ନିଜର ଅବଗୁଣକୁ ତ୍ୟାଗ କରିବା ବାଞ୍ଛନୀୟ ।

ଯଦି କୌଣସି ବ୍ୟକ୍ତି ପାଖରେ ଅଭିମାନ ଥାଏ, ତେବେ ଆମର ଏହା ନିଶ୍ଚିନ୍ତ ହେବା ଦରକାର ଯେ “ଯେପରି କରିବ, ସେପରି ପାଇବ”ର

ନିୟମାନୁସାରେ ସେହି ବ୍ୟକ୍ତିକୁ ତା'ର ଅଭିମାନର ପରିଣାମସ୍ୱରୂପ ଦିନେ ନା ଦିନେ ନତମସ୍ତକ ହେବାକୁ ପଡ଼ିବ । ତେଣୁ କିମ୍ବଦନ୍ତୀ ରହିଛି ଯେ, 'ମେଁ ମେଁ ' କରୁଥିବା ମେଣ୍ଢା କିମ୍ବା ଛେଳିର ମସ୍ତକ ଦିନେ ଘାତକର ଖଣ୍ଡା ତଳେ ରହେ ଏବଂ ସେତେବେଳେ ହିଁ ତା'ର 'ମେଁ-ମେଁ' ବନ୍ଦ ହୁଏ । ଏପରି ସ୍ଥଳେ ଆମ୍ଭେମାନେ ଅଭିମାନର ବଶୀଭୂତ ହୋଇ ଧର୍ମଗ୍ଲାନିଦ୍ୱାରା ଦୋଷୀରୂପେ ସାବ୍ୟସ୍ତ ହେବା ଠିକ୍ ନୁହେଁ । ଯଦି ଆମ୍ଭେମାନଙ୍କ ସମ୍ମୁଖରେ କୌଣସି ମାନବ ଅଭିମାନର ରଜ୍ଜୁଦ୍ୱାରା ବାନ୍ଧି ହୁଏ, ଗର୍ବରୂପୀ ପଙ୍କରେ ପଙ୍କିଳ ହୁଏ, ଅହଂକାର ରୂପୀ ଅଗ୍ନିରେ ପ୍ରଜ୍ୱଳିତ ହୁଏ, ବୁଦ୍ଧିକୁ ଉତ୍ତପ୍ତ କରାଏ, ରକ୍ତ ଗରମ କରେ କିମ୍ବା ହୃଦୟରୂପୀ ପାଦକୁ ଊର୍ଦ୍ଧ୍ୱମୁଖୀ କରାଏ, ତେବେ ସେ ସମୟରେ ଆମେ ନିଜେ କୌଣସି ପ୍ରକାରର ଅଭିମାନର ବଶୀଭୂତ ନ ହୋଇ ସେହି ଆତ୍ମାର କଲ୍ୟାଣାର୍ଥେ ତାକୁ ସ୍ନେହ ଓ ସହାନୁଭୂତି ପ୍ରଦର୍ଶନ କରିବା ଉଚିତ ।

ଆମ୍ଭେମାନେ ଯେତେବେଳେ କହୁଛେ ଯେ ମାନବ ପାଖରେ ଅଭିମାନ ରହିବା ପରିବର୍ତ୍ତେ ନମ୍ରତା, ପ୍ରେମ, ସ୍ନେହ ଏବଂ ଶୀତଳତା ଇତ୍ୟାଦି ଗୁଣ ରହିବା ଉଚିତ, ତେବେ ଏଥିରୁ ସିଦ୍ଧ ହୁଏ ଯେ ମାନବ ଏକଦା ଏହିସବୁ ଦିବ୍ୟଗୁଣରେ ପରିପୂର୍ଣ୍ଣ ଥିଲା, ଅର୍ଥାତ୍ ପବିତ୍ରତା ଏବଂ ଦିବ୍ୟଗୁଣର ସମ୍ପୂର୍ଣ୍ଣ ସ୍ଥିତି ତା'ର ଥିଲା । ଏକଥା ଜାଣି ଏବଂ ମାନି ପ୍ରଥମେ ଆମ୍ଭେମାନେ ହିଁ ଏହି ସ୍ଥିତିକୁ ଧାରଣ କରିବା ଆବଶ୍ୟକ । ଅନ୍ୟ ପକ୍ଷରେ ମଧ୍ୟ ସ୍ମରଣ ରହିବା ଉଚିତ ଯେ ଅନ୍ୟ ବ୍ୟକ୍ତି-ମାନଙ୍କର ମଧ୍ୟ ଏକଦା ଏପରି ଉଚ୍ଚ ସ୍ଥିତି ଥିଲା ଏବଂ ପରେ ସେମାନେ ପତନୋନ୍ମୁଖୀ ହୋଇଛନ୍ତି । ଯଦି ଏସବୁ ଆମେ ହୃଦୟଙ୍ଗମ କରିବା, ତେବେ ଅନ୍ୟ ବ୍ୟକ୍ତିକୁ କୌଣସି ଅଭିମାନର ବଶବର୍ତ୍ତୀ ହେବାର ଦେଖି ଆମ୍ଭେମାନେ ସେପରି ଅବସ୍ଥାରେ ସମ୍ମୁଖୀନ ହେବାପାଇଁ ଆଦୌ ଇଚ୍ଛା କରିବା ନାହିଁ ଏବଂ ଦ୍ୱିତୀୟତଃ ସ୍ୱୟଂ ନିଜର ଆଦିସ୍ୱରୂପରେ ସ୍ଥିତ ହେବା ପାଇଁ ତୀବ୍ର ପୁରୁଷାର୍ଥ ମଧ୍ୟ କରିପାରିବା ।

ଯେତେବେଳେ ଗୋଟିଏ ଲମ୍ବା ଶିଙ୍ଘଧାରୀ ବଳଦ ଅନ୍ୟ ଗୋଟିଏ ଶ୍ରେଷ୍ଠ ଶିଙ୍ଘଧାରୀ ବଳଦକୁ ତା'ର ଶିଙ୍ଘଦ୍ୱାରା ଆକ୍ରମଣ କରେ ସେତେବେଳେ

ଦ୍ୱିତୀୟ ବଳଦ ସେଠାରୁ ଦୂରେଇ ଯିବା ପରିବର୍ତ୍ତେ ପ୍ରଥମକୁ ପ୍ରତିରୋଧ କରେ । ଏହାର ପରିଣାମସ୍ୱରୂପ ଦୁହିଁଙ୍କର ଶତ୍ରୁତା ବଢ଼ିବାକୁ ଲଗେ ଏବଂ ଦୁହେଁ ପରସ୍ପରକୁ ନିଜ ନିଜର ଶିଙ୍ଗଦ୍ୱାରା ପ୍ରହାର କରିବାକୁ ଲାଗିଛନ୍ତି । ସେତେବେଳେ ସେମାନେ ହୁଏତ ମନରେ ଭାବୁଥିବେ ଯେ—''ତୁମେ ନିଜକୁ ନିଜେ କ'ଣ ଭାବୁଛ କି ? ତୁମେ ଜାଣିଛ ତୁମେ କାହା ସହିତ ଲଢ଼ୁଛ ? ....' ବଳଦମାନଙ୍କର ଏପରି ଶିଙ୍ଗ ଲଢ଼େଇ ଲୋକମାନଙ୍କୁ ଦେଖିବାକୁ ବହୁତ ଖୁସି ଲାଗେ । ମାତ୍ର ତାଙ୍କ ପରିଣାମ କ'ଣ ହୁଏ ? ଶେଷରେ ହୁଏତ ଗୋଟିକର କିମ୍ବା ଦୁହିଁଙ୍କର ଶିଙ୍ଗ ଭାଙ୍ଗେ । ଠିକ୍ ସେହିପରି ଯେଉଁ ବ୍ୟକ୍ତି ଅଭିମାନୀ ମନୁଷ୍ୟଠାରୁ ନିଜକୁ ଦୂରେଇ ନ ଦେଇ ସ୍ୱୟଂ ଅଭିମାନରୂପୀ ଶିଙ୍ଗ ଦ୍ୱାରା ତା' ସହିତ ଲଢ଼େଇ କରେ, ତା'ର ଦଶା ଉପରୋକ୍ତ ବଳଦ ପରି ହୁଏ ।

**ଜିଜ୍ଞାସୁ**—ଭଉଣୀ, ଆଜି ଆପଣ ବହୁତ ଅମୂଲ୍ୟ ଜ୍ଞାନ-ରତ୍ନ ଦେଲେ । ମୁଁ ଆଜିଠାରୁ ମୁକ୍ତି ପାଇବା ପାଇଁ ଯତ୍ନ କରିବି । କିନ୍ତୁ ଭଉଣୀ, ମୋତେ ଆଉ ଗୋଟିଏ କଥା କହନ୍ତୁ ଯେ, ଯେତେବେଳେ କୌଣସି ଏକ ବ୍ୟକ୍ତି ପାଖରେ ଅନେକ ଦୁର୍ଗୁଣ ପରିଲକ୍ଷିତ ହୁଏ, ସେତେବେଳେ ମୋର କର୍ତ୍ତବ୍ୟ କ'ଣ ? ଏପରି ପରିସ୍ଥିତିରେ ଘୃଣାରୁ ରକ୍ଷାପାଇବା ମୋ ପକ୍ଷରେ ଅସମ୍ଭବ ହୋଇପଡ଼ୁଛି ।

**ବ୍ରହ୍ମାକୁମାରୀ**—ଯଦି କୌଣସି ମାନବ ପାଖରେ କଟୁତା କୁଟିଳତା ଏବଂ ଅନାଗ୍ରହ ଇତ୍ୟାଦି ଦୁର୍ଗୁଣ ପରିଲକ୍ଷିତ ହୁଏ, ତେବେ ଆମ୍ଭେମାନେ ସେହି ଦୁର୍ଗୁଣକୁ ଘୃଣା କରିବା ଉଚିତ, ମାତ୍ର ସେ ବ୍ୟକ୍ତିକୁ ଘୃଣା କରିବା ଉଚିତ ନୁହେଁ । ଯଦି ଜଣେ ବ୍ୟକ୍ତି ପଙ୍କରେ ପଡ଼ିଯାଏ ତେବେ ତାକୁ ଉଦ୍ଧାର କରିବା କ'ଣ ଆମର କର୍ତ୍ତବ୍ୟ ନୁହେଁ କି ? ସେତେବେଳେ ତାକୁ ରକ୍ଷାକରିବା ପାଇଁ ଆପଣ ବିଭିନ୍ନ ଉପାୟ ଅବଲମ୍ବନ କରିବା ଏକାନ୍ତ ଆବଶ୍ୟକ । ତେଣୁ ଅନ୍ୟ ପାଖରେ ଅବଗୁଣ ଦେଖିଲେ ତାକୁ ଘୃଣା ନ କରି ତା' ପ୍ରତି ସହାନୁଭୂତିପୂର୍ଣ୍ଣ ବ୍ୟବହାର କରି ତା'ଠାରୁ ସେହି ଅବଗୁଣକୁ ଦୂର କରିବା ପାଇଁ ସର୍ବଦା ଚେଷ୍ଟା କରିବା ଉଚିତ ।

# ସଙ୍ଗ-ଦୋଷ, ଚଳଚ୍ଚିତ୍ର ଦର୍ଶନ ଏବଂ ଉପନ୍ୟାସ ପଠନରୁ ନିବୃତ୍ତି

ନିର୍ବିକାର ଜୀବନରେ ଏକ ଅପୂର୍ବ ଆନନ୍ଦ ଏବଂ ପବିତ୍ର ସ୍ଥିତି ସ୍ୱତଃ ଲାଭ ହୁଏ ସତ, ମାତ୍ର ଜୀବନକୁ ନିର୍ବିକାର କରିବା ପାଇଁ ଯେପରି ଅନ୍ନ-ଦୋଷରୁ ରକ୍ଷାପାଇବା ଏକାନ୍ତ ଆବଶ୍ୟକ, ସେହିପରି ସଙ୍ଗ-ଦୋଷରୁ ମଧ୍ୟ ରକ୍ଷାପାଇବା ଅତ୍ୟାବଶ୍ୟକ । ମନୁଷ୍ୟ ଉପରେ ତା'ର ସଙ୍ଗର ରଙ୍ଗ ଖୁବ ଶୀଘ୍ର ଲାଗିଯାଏ ଏବଂ ଖରାପ ସଙ୍ଗର ପ୍ରଭାବ ଆହୁରି ଶୀଘ୍ର ମଧ୍ୟ ପ୍ରତିଫଳିତ ହୁଏ । ତେଣୁ କଥାରେ ଅଛି—"ସତ୍ସଙ୍ଗ ମନୁଷ୍ୟକୁ ଉଦ୍ଧାର କରେ, ମାତ୍ର କୁସଙ୍ଗ ମାରେ । ଚଳଚ୍ଚିତ୍ର ଦର୍ଶନ ଏବଂ ଉପନ୍ୟାସ ପଠନ ମଧ୍ୟ କୁସଙ୍ଗର ଅନ୍ତର୍ଗତ ତଥା କୁସଂସ୍କାରର ଏହା ଗୋଦାମ ଘର ଅଟେ । ଆଜି ଏହାର ଜାଲ ଅଧିକ ଭାବରେ ବିସ୍ତାରିତ ହୋଇଛି । ପ୍ରତ୍ୟେକ ବହି ଦୋକାନରେ ପ୍ରାୟ ଅଧିକ ପରିମାଣରେ ଚଳଚ୍ଚିତ୍ର ପତ୍ରିକା ଏବଂ ବିଭିନ୍ନ ଉପନ୍ୟାସ ମଧ୍ୟ ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ଆଜିକାଲି ସବୁ ଦିନ ଲୋକମାନେ ରେଡ଼ିଓରୁ ବିଭିନ୍ନ ବାସନାପୂର୍ଣ୍ଣ ସଙ୍ଗୀତ ଶୁଣିବାରେ ବ୍ୟସ୍ତ । ଆପଣଙ୍କର ସେସବୁ ଶୁଣିବାକୁ ଇଚ୍ଛା ନ ଥିଲେ ମଧ୍ୟ ସେମାନେ ରେଡ଼ିଓର ଧ୍ୱନିକୁ ଏତେ ବଢ଼ାଇ ଦିଅନ୍ତି ଯେ ଆପଣଙ୍କ କର୍ଣ୍ଣଗହ୍ୱର ମଧ୍ୟରେ ସେହି ସଙ୍ଗୀତର ଧ୍ୱନି ଆସି ସ୍ୱତଃ ପ୍ରବେଶ କରେ । ତେଣୁ ସମାଜର ଏପରି ବାତାବରଣରୁ ନିଜକୁ ରକ୍ଷା କରିବାପାଇଁ କେତେକ ନିୟମ ଓ ଯୁକ୍ତି ଉପରେ ଏହି ଅଧ୍ୟାୟ ସମ୍ବନ୍ଧିତ ।

ବ୍ରହ୍ମାକୁମାରୀ—ଆପଣ କ'ଣ ଚଳଚ୍ଚିତ୍ର ଦେଖିବା ପାଇଁ ଯାଆନ୍ତି କି ?

ଜିଜ୍ଞାସୁ—ଭଉଣୀ, ମୁଁ ମୋର ନିଜର ଖୁସି କିମ୍ବା ଇଚ୍ଛାରେ ଯାଏନାହିଁ । ପରନ୍ତୁ ପିଲମାନଙ୍କୁ ଦେଖାଇବା ପାଇଁ ମୋତେ ଯିବାକୁ ପଡ଼େ । ଏହା କ'ଣ ଗୋଟିଏ ପକ୍ଷରେ ମୋର କର୍ତ୍ତବ୍ୟ ନୁହେଁ କି ?

ବ୍ରହ୍ମାକୁମାରୀ—ଆପଣଙ୍କୁ ଏ କଥା କିଏ ଶିକ୍ଷାଦେଲା ଯେ ଏହା ଆପଣଙ୍କର କର୍ତ୍ତବ୍ୟ ? ସନ୍ତାନମାନଙ୍କର କଲ୍ୟାଣ କରିବା ଏବଂ ସେମାନଙ୍କୁ ଶ୍ରେଷ୍ଠ ମାର୍ଗରେ ପରିଚାଳନା କରିବା ହିଁ ହେଉଛି ପିତାମାତାଙ୍କର ପ୍ରକୃତ କର୍ତ୍ତବ୍ୟ । ଚଳଚ୍ଚିତ୍ର ଦେଖାଇ ସେମାନଙ୍କୁ ଦୂଷିତ ପ୍ରଭାବ ଭିତରକୁ ଠେଲିଦେବା କ'ଣ ଆପଣଙ୍କର ଉଚିତ କର୍ତ୍ତବ୍ୟ ?

ଜିଜ୍ଞାସୁ—ସେମାନଙ୍କର ମନୋରଞ୍ଜନ ପାଇଁ ମୁଁ ସେମାନଙ୍କୁ ନେଇଯାଏ । କାରଣ ଚଳଚ୍ଚିତ୍ର ଦେଖିବାଦ୍ୱାରା ସେମାନଙ୍କର ମନ ବହୁତ ଖୁସି ରହେ । ଆଧୁନିକ ବୈଜ୍ଞାନିକମାନଙ୍କଦ୍ୱାରା ଉଦ୍‌ଭାବିତ ଏହି ଚଳଚ୍ଚିତ୍ର ଆଜିର ଦୁନିଆରେ ମନୋରଞ୍ଜନର ଏକ ଶ୍ରେଷ୍ଠ ସାଧନା ଯେ ପରିଗଣିତ ହେଉଛି ।

ବ୍ରହ୍ମାକୁମାରୀ—ଏହା ମନ ଖୁସିର ସାଧନ ନା ମନଦୁଃଖର ? ଆଜିକାଲି ଲୋକମାନେ ଚଳଚ୍ଚିତ୍ରରୁ ହିଁ ବିଳାସପ୍ରବୃତ୍ତି, ଫେସନ, ଅଙ୍ଗ ପ୍ରଦର୍ଶନ କରିବା ତଥା ଅଲଜୁକ ହେବାର ଶିକ୍ଷା କରୁଛନ୍ତି । ମଦ୍ୟପାନ କରିବା, ଜୁଆ ଖେଳିବା, ସିଗାରେଟ ଖାଇବା, ଉତ୍ତେଜିତ ହୋଇ କଥାବାର୍ତ୍ତା କରିବା ଇତ୍ୟାଦି ସମସ୍ତ ଅଭ୍ୟାସ ଏହି ଚଳଚ୍ଚିତ୍ରଦ୍ୱାରା ହିଁ ସମସ୍ତଙ୍କୁ ଶିକ୍ଷା ଦିଆଯାଉଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ଏପରି ସନ୍ତାନମାନଙ୍କୁ ନେଇ ଆପଣ ସେମାନଙ୍କର କୋମଳ ହୃଦୟକୁ ଖରାପ ଭାବରେ ପ୍ରଭାବିତ କରୁଛନ୍ତି । କିଛିଦିନ ତଳେ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା ଯେ ଜଣେ ବ୍ୟକ୍ତିକୁ ନୂଆଦିଲ୍ଲୀସ୍ଥିତ ସରକାରୀ ସଂଗ୍ରହାଳୟରୁ ଚୋରି ଅଭିଯୋଗରେ ଗିରଫ କରାଯାଇଥିଲା । ଉକ୍ତ ବ୍ୟକ୍ତି ତା'ର ଅପରାଧକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ କଥା ମଧ୍ୟ ସ୍ପଷ୍ଟ କରିଥିଲା ଯେ ଚୋରି କରିବା ଏବଂ ସେହି ବସ୍ତୁକୁ ସଂଗ୍ରହାଳୟରୁ

ବାହାରକୁ ନେବା ଇତ୍ୟାଦିର ସୂତ୍ର ସେ କଳ୍ପୁଚିତ୍ର ତଳେ "How to steal ten milli n ?"—( ଦଶ ଲକ୍ଷର ଚୋରି କିପରି କରିବ ? ) ଶୀର୍ଷକ ଏକ ଇଂରାଜୀ ଚଳଚ୍ଚିତ୍ର ଦେଖି ଶିକ୍ଷାଲାଭ କରିଥିଲା । ଏହିପରି ଅନ୍ୟ ଏକ ଘଟଣାର ସମାଚାର ମଧ୍ୟ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା ।

**ଜିଜ୍ଞାସୁ**—ହଁ ଭଉଣୀ, ମୋର ମଧ୍ୟ ମନରେ ଅଛି । ଥରେ ଦୁଇଜଣ ବାଳକ କୌଣସି ଏକ ବ୍ୟକ୍ତିଙ୍କୁ ଚୋରି କରି ଚାଲି ଯାଉଥିଲେ, ମାତ୍ର ସେମାନଙ୍କ ଚାଲିଚଳନକୁ ଲକ୍ଷ୍ୟକରି କେତେକ ଲୋକ ସେ ଦୁହିଁଙ୍କୁ ଧରିଥିଲେ । ସେ ଦୁହେଁ ସ୍ୱୀକାର କରିଥିଲେ ଯେ ସେମାନେ ଡକାୟତି ଓ ଚୋରିର ସୂତ୍ର ଏକ ଚଳଚ୍ଚିତ୍ରରୁ ଶିଖି କରିଥିଲେ । ଭଉଣୀ, ଚଳଚ୍ଚିତ୍ର ଦେଖିବାଦ୍ୱାରା ମନୁଷ୍ୟ ଜୀବନରେ ଅନେକ ମନ୍ଦ ଅଭ୍ୟାସର ପ୍ରତିଫଳନ ହେଉଛି । ଆପଣ ଠିକ୍ କହୁଛନ୍ତି ଯେ ମନୁଷ୍ୟର କଥାବାର୍ତ୍ତା, ଦୃଷ୍ଟି, ବୃତ୍ତି, ଚାଲିଚଳନ ବାସ୍ତବରେ ଏହାଦ୍ୱାରା ହିଁ ବହୁତ ନିମ୍ନସ୍ତରକୁ ଚାଲିଆସିଛି । କିନ୍ତୁ ଭଉଣୀ, କେତେକ ଚଳଚ୍ଚିତ୍ର ବହୁତ ଭଲ ମଧ୍ୟ ଅଛି । ମୁଁ ପ୍ରାୟ ଭଲ ଚଳଚ୍ଚିତ୍ର ଦେଖାଇବା ପାଇଁ ସନ୍ତାନମାନଙ୍କୁ ନିଏ ।

**ବ୍ରହ୍ମାକୁମାରୀ** ଆପଣ କେତେକ ଚଳଚ୍ଚିତ୍ରକୁ କିପରି ଏବଂ କେଉଁ ଦୃଷ୍ଟିରୁ ଭଲ ବୋଲି କହୁଛନ୍ତି ? ଏପରି କ'ଣ କୌଣସି ଚଳଚ୍ଚିତ୍ର ଅଛି ଯେଉଁଥିରେ କୌଣସି କନ୍ୟା ଅଥବା ମହିଳା ସହିତ ନାୟକର ଅବୈଧ ସମ୍ବନ୍ଧ ନାହିଁ କି କୌଣସି ବାସନାପୂର୍ଣ୍ଣ ସମ୍ପର୍କ ( love ) ନାହିଁ ? ଏପରି କ'ଣ କୌଣସି ଚଳଚ୍ଚିତ୍ର ଅଛି ଯେଉଁଥିରେ କି ଲଢ଼େଇ, ଝଗଡ଼ା, ଅଙ୍ଗପ୍ରଦର୍ଶନ, ଅର୍ଦ୍ଧ-ନଗ୍ନ ଚିତ୍ର ଅଥବା କାମ ବାସନାକୁ ଉତ୍ସାହିତ କରିବା ଭଳି ଦୃଶ୍ୟ କିମ୍ବା ଚୋରି-ଡକାୟତି ଇତ୍ୟାଦି ଦୃଶ୍ୟ ନାହିଁ ? ଏସବୁ ଦୃଶ୍ୟ ବ୍ୟତିରେକ ବୋଧହୁଏ ଆଜି-କାଲି କୌଣସି ଚଳଚ୍ଚିତ୍ର ନିର୍ମାଣ କରାଯାଉନାହିଁ । ଏସବୁ ବ୍ୟତିରେକେ ଯଦି ଅନ୍ୟ କୌଣସି ଚଳଚ୍ଚିତ୍ର ଅଛି ତେବେ ସେହି ଚଳଚ୍ଚିତ୍ର ଦେଖାଇବା ପାଇଁ ଆପଣ ପିଲମାନଙ୍କୁ ନେଇପାରନ୍ତି ।

ଜିଜ୍ଞାସୁ—ହଁ, ବାସ୍ତବରେ ମନୁଷ୍ୟକୁ ଦୂଷିତ କରିବାଭଳି ଦୃଶ୍ୟ ପ୍ରାୟ କେତେକ ଚଳଚ୍ଚିତ୍ରରେ ରହୁଛି । କିନ୍ତୁ ଯେଉଁ ଚଳଚ୍ଚିତ୍ରରେ ପରମାତ୍ମା ଦେବୀ-ଦେବତା ଏବଂ ଭକ୍ତ ସମ୍ବନ୍ଧୀୟ କାହାଣୀ ଏବଂ ଦୃଶ୍ୟ ରହୁଛି ପ୍ରାୟ ସେହି ଚଳଚ୍ଚିତ୍ର ଦେଖିବା ପାଇଁ ମୁଁ ସନ୍ତାନମାନଙ୍କୁ ନେବାକୁ ଚେଷ୍ଟା କରୁଛି । ମାତ୍ର ଏଥିରେ ମଧ୍ୟ ଅଶ୍ଳୀଳତା ଦେଖିବାକୁ ମିଳେ ।

ବ୍ରହ୍ମାକୁମାରୀ—ଯଦି ଆପଣ ଏକଥା ବୁଝିପାରୁଛନ୍ତି ତେବେ ଯାଉଛନ୍ତି କାହିଁକି ? ଯେପରି ମୁଖଦ୍ୱାରା ସେବନ କରାଯାଉଥିବା ଖାଦ୍ୟର ପ୍ରଭାବ ଶରୀର ତଥା ମନ ଉପରେ ପଡ଼େ, ସେହିପରି ଚକ୍ଷୁଦ୍ୱାରା ଦର୍ଶିତ ଚଳଚ୍ଚିତ୍ର ଏବଂ କର୍ଣ୍ଣ-ଦ୍ୱାରା ଶ୍ରୁତ ସଙ୍ଗୀତ ଇତ୍ୟାଦିରେ ପ୍ରଭାବ ଆମ୍ଭମାନଙ୍କର ଶରୀର ତଥା ମନ ଉପରେ ପଡ଼େ । ଏଗୁଡ଼ିକ ଏପରି ମନୋବୈଜ୍ଞାନିକ ଏବଂ କଳାପୂର୍ଣ୍ଣଭାବେ ନିର୍ମିତ ହୋଇଛି ଯାହାର କି ପ୍ରଭାବ ମନୁଷ୍ୟ ମନରେ ଅଧିକ ସ୍ଥାୟୀ ଏବଂ ଅଳିଭା ଦାଗ ହୋଇ ରହେ । ଯଦି କୌଣସି ସମ୍ଭ୍ରାନ୍ତ ପରିବାରର ସନ୍ତାନ ଓ ସନ୍ତତିମାନେ ଅବୈଧ ସମ୍ବନ୍ଧ ସ୍ଥାପନ କରନ୍ତି କିମ୍ବା ପ୍ରେମ ଉଦାହରଣ କରନ୍ତି, ତେବେ ତାହା ସେମାନଙ୍କର ପିତାମାତାଙ୍କ ପକ୍ଷରେ ଅସହ୍ୟ ହୁଏ, କିନ୍ତୁ ଯେତେବେଳେ ପ୍ରେକ୍ଷାଳୟରେ ବସି ସେମାନେ ଏସବୁ ଦୃଶ୍ୟକୁ 'ମନୋରଞ୍ଜନ'ର ନାମ ଦେଇ ଦେଖନ୍ତି ଏବଂ ସନ୍ତାନମାନଙ୍କୁ ଦେଖାନ୍ତି, ଏସବୁ କ'ଣ ସେମାନଙ୍କ ପକ୍ଷେ କ୍ଷତିକାରକ ନୁହେଁ କି ? ଯେହେତୁ ଆଜିକାଲିର ଚଳଚ୍ଚିତ୍ରରେ ଶ୍ରେଷ୍ଠତା ନାହିଁ, ତେଣୁ ଏହାକୁ ଦେଖିବାଦ୍ୱାରା ସଂସ୍କାର ଯେ ଖରାପ ନ ହେବ, ଏକଥା କହିବା ନିରର୍ଥକ ଭଳି ମନେହୁଏ ।

ପୁନଶ୍ଚ, ଜନସାଧାରଣଙ୍କୁ ସୁଧାରିବା ପାଇଁ ଚଳଚ୍ଚିତ୍ର ନିର୍ମାତାମାନେ କୌଣସି କଲ୍ୟାଣ ଭାବନା ନେଇ ଏହି ଚଳଚ୍ଚିତ୍ରଗୁଡ଼ିକୁ ନିର୍ମାଣ କରୁନାହାନ୍ତି । କାରଣ ଧନ ଉପାର୍ଜନ କରିବାପାଇଁ ସେମାନେ ଏହାକୁ ଏକ ସୁନ୍ଦର ଓ ସହଜ ବ୍ୟବସାୟ ବା ଉଦ୍ୟୋଗ ରୂପେ ଧରି ନେଇଛନ୍ତି । ଚଳଚ୍ଚିତ୍ରର ନିର୍ମାତା, ଗାୟକ-ଗାୟିକା ଏବଂ ଲେଖକ-ଲେଖିକାମାନଙ୍କ ମନରେ ଏହି ଭାବନା

ରହୁଚ୍ଛ ଯେ ସେମାନେ ଏପରି ଚଳଚ୍ଚିତ୍ର ନିର୍ମାଣ କରିବେ ଯାହାଦ୍ୱାରା କି ସେମାନେ ଅଧିକ ଧନ ଉପାର୍ଜନ କରିବାକୁ ସମର୍ଥ ହେବେ । ସେଥିପାଇଁ ସେମାନେ ବିଭିନ୍ନ ବାସନା-ଉତ୍ତେଜକ ଦୃଶ୍ୟ ଓ ଗୀତକୁ ଲଭ୍ ( love )ର ନାମ ଦେଇ, ଲଢ଼େଇ-ଝଗଡ଼ାକୁ କୌତୁକ ( Adventure )ର ରୂପ ଦେଇ ତଥା ଅଶିଷ୍ଟ ଓ ଅଭଦ୍ର ଆଚରଣ ପ୍ରଦର୍ଶନକୁ ହାସ୍ୟ ( Fun )ର ନାମ ଦେଇ ବିଭିନ୍ନ ଚଳଚ୍ଚିତ୍ର ନିର୍ମାଣ କରନ୍ତି ଏବଂ ବ୍ୟବସାୟିକ ଦୃଷ୍ଟି-କୋଣରୁ ସେଗୁଡ଼ିକୁ ସଫଳ କରିବାକୁ ଚାହାଁନ୍ତି । ତେଣୁ ଏପରି ଚଳଚ୍ଚିତ୍ରରୁ ଚରିତ୍ରୋତ୍ଥାନ, ପବିତ୍ର ହାସ୍ୟରସ ଅଥବା ବୁଦ୍ଧି ପାଇଁ ସୁନ୍ଦର ଏବଂ ଶ୍ରେଷ୍ଠ ବୈଚାରିକ ଭୋଜନ ଆଶା କରାଯାଇ ନ ପାରେ । ଏହି ଚଳଚ୍ଚିତ୍ରକୁ ଦେଖୁଥିବା ଯୁବକମାନେ ହିଁ ଆଜି ମହିଳାମାନଙ୍କୁ ରାସ୍ତାଘାଟରେ ଚିଡ଼ାଉଛନ୍ତି ଏବଂ ବିଭିନ୍ନ ଅଶ୍ଳୀଳ ଇଙ୍ଗିତରେ ଭାଗ ନେଉଛନ୍ତି ; ଗାଡ଼ି ମଟରରେ ଅଭଦ୍ର ବ୍ୟବହାର ମଧ୍ୟ କରୁଛନ୍ତି । ଦାମିକା ଫେସନ ଉପରେ ଧନ ଅପବ୍ୟୟ କରୁଛନ୍ତି ଏବଂ ଏପରି ଚଳଚ୍ଚିତ୍ରକୁ ଦର୍ଶନ କରୁଥିବା ମହିଳାମାନେ ତାଙ୍କର ଲଜ୍ଜା ( Modesty ) ଯାହାକି ନାରୀର ବିଶେଷ ଗୁଣରୂପେ ବିବେଚିତ, ତାକୁ ସଂପୂର୍ଣ୍ଣରୂପେ ନିର୍ଭୟରେ ତ୍ୟାଗ କରିସାରିଲେଣି, ତଥା ଗୃହରେ ଗୃହକାର୍ଯ୍ୟ ଏବଂ ସେବାଭାବକୁ ତ୍ୟାଗ କରି ଆରାମ ତଥା ସାଜସଜ୍ଜାର ଜୀବନ ନିର୍ବାହ କଲେଣି ।

ଏହାଛଡ଼ା ଚଳଚ୍ଚିତ୍ର ତଥା ଚଳଚ୍ଚିତ୍ର ସଙ୍ଗୀତର ସଠିକ୍ ଅର୍ଥକୁ 'ମନୋରଞ୍ଜନ' କିପରି କହିବା ? ଏଥିରେ ଏପରି ଅନେକ ଦୃଶ୍ୟ ଏବଂ ଗୀତ ମଧ୍ୟ ରହିଛି ଯାହାକି ମାନବର ମନକୁ ଉଦାସ କରିଦିଏ । ଏତଦ୍-ବ୍ୟତୀତ ଏହା ମଧ୍ୟ ଦେଖାଯାଉଛି ଚଳଚ୍ଚିତ୍ର ପାଖରେ ମାନବର ମନ ଆଜି ଦାସତ୍ୱ ସ୍ୱୀକାର କରିଛି । ଦିନକୁ ଦିନ ଅଧିକ ଗୀତ ଶୁଣିବା ଏବଂ ଅଧିକ ସଂଖ୍ୟାରେ ଚଳଚ୍ଚିତ୍ର ଦେଖିବା ପାଇଁ ମନୁଷ୍ୟ ମନରେ ଅଭ୍ୟାସ ଦୃଢ଼ୀଭୂତ ହେଉଛି । କୌଣସି ଏକ ମାଦକ ଦ୍ରବ୍ୟର ନିଶା ଭଳି ଚଳଚ୍ଚିତ୍ର ଦେଖିବା, ଗୀତ ଶୁଣିବା, ଅଭିନେତା ଓ ଅଭିନେତ୍ରୀମାନଙ୍କର ରଙ୍ଗଢଙ୍ଗ ବିଷୟରେ ବିଭିନ୍ନ ଆଲୋଚନା କରିବା ଇତ୍ୟାଦି ଯେପରି ଏକ ନିଶାରେ ଆଜି ପରିଣତ

ହୋଇଛି । ତେଣୁ ଏହା 'ମନୋରଞ୍ଜନ' ପରିବର୍ତ୍ତେ ଏକ ପ୍ରକାରର 'ମାସିକ-ପରାଧୀନତା' ହୋଇସାରିଛି ଏବଂ ଏହା ଆଜିର ମାନବ-ଜୀବନ ପାଇଁ ଏକ ମିଠା ଜହରରୂପେ କାମ ଦେଉଛି । ଦେଖାଯାଇଛି ଯେ ଏହି ବ୍ୟକ୍ତିମାନେ ଅଧିକାଂଶ ସମୟ ସଙ୍ଗୀତ ଶୁଣିବାରେ ନିୟୋଜିତ କରୁଛନ୍ତି ଏବଂ କ୍ଷଣ-କ୍ଷଣରେ ସେମାନଙ୍କର ସ୍ଥିତି ( Mood ) ବଦଳୁଛି ତଥା ମନୋ-ସ୍ଥିତିରେ ମଧ୍ୟ ପରିବର୍ତ୍ତନ ଆସୁଛି । ତେଣୁ ଏହାକୁ ମନୋରଞ୍ଜନର ସାଧନ ବୋଲି କିପରି କହିବା ? ପ୍ରେକ୍ଷାଳୟର ତିନି ଘଣ୍ଟାର କାର୍ଯ୍ୟକ୍ରମ ପରେ ଏବଂ ଦୈନିକ ଜୀବନରେ ଦେଖାଯାଉଥିବା ବିଭିନ୍ନ ପରିସ୍ଥିତିରେ ଯଦି ମନରେ ଆନନ୍ଦ ଏବଂ ଖୁସି ନ ରହେ ତେବେ ଏହାକୁ ମନୋରଞ୍ଜନ ( Recreation ) କିପରି କହିବା ?

ଏତଦ୍‌ବ୍ୟତୀତ ଆପଣ ମଧ୍ୟ କହୁଛନ୍ତି ଯେ କେତେକ ଚଳଚ୍ଚିତ୍ରରେ ପରମାତ୍ମା ଓ ଦେବୀଦେବତାମାନଙ୍କର ବିଭିନ୍ନ ଦୃଶ୍ୟ ମଧ୍ୟ ରହିଛି ଏବଂ ସେମାନଙ୍କ ସମ୍ବନ୍ଧରେ କେତେକ ଆଲୋଚନା ମଧ୍ୟ କରାଯାଇଛି । କିନ୍ତୁ ମନେରଖିବା ଉଚିତ ଯେ ଏଥିରେ ଦେବୀଦେବତା ଓ ଭଗବାନଙ୍କ ସମ୍ବନ୍ଧରେ ଯେଉଁସବୁ ସାମଗ୍ରୀ ରହିଛି ସେସବୁ କୌଣସି ଉପଯୁକ୍ତ ଆତ୍ମବୋଧ ତଥା ଈଶ୍ୱରାନୁଭୂତି ଉପରେ ଆଧାରିତ ନୁହେଁ । ବରଂ ସେସବୁ ପ୍ରାୟ ମିଥ୍ୟା ଜ୍ଞାନ ଓ ଅନ୍ଧବିଶ୍ୱାସ ଉପରେ ଆଧାରିତ । ଏହାଛଡ଼ା ଦେବୀଦେବତାମାନଙ୍କର ସୃଷ୍ଟି ରୂପରେ ବ୍ୟଙ୍ଗ ଚିତ୍ର ମଧ୍ୟ ଅଧିକାଂଶ ସମୟରେ ପ୍ରଦର୍ଶିତ ହୋଇଥାଏ । ଏହିସବୁ କଥା ଉପରେ ବିଚାର କରିବା ପରେ ଆପଣଙ୍କର ବର୍ତ୍ତମାନ ମତାମତ କ'ଣ ?

ଜିଜ୍ଞାସୁ—ଭଉଣୀ, ମୁଁ ଏକଥା ସ୍ୱୀକାର କରୁଛି ଯେ ଏହାଦ୍ୱାରା ସମାଜର ବହୁତ କ୍ଷତି ହେଉଛି, ମାତ୍ର ପିଲାମାନେ ମୋ ପଛରେ ଲାଗି ଯାଉଛନ୍ତି ଏବଂ ଜିଦ୍ ମଧ୍ୟ କରୁଛନ୍ତି ଯେ ଆମ୍ଭମାନଙ୍କୁ ଅମୁକ ଚଳଚ୍ଚିତ୍ର ଦେଖାଇବାକୁ ନିଅ ।

**ବ୍ରାହ୍ମକୁମାରୀ**—ପରନ୍ତୁ, ଆପଣ ମନେରଖିବା ଆବଶ୍ୟକ ଯେ ପ୍ରତ୍ୟେକ ବସ୍ତୁର ପ୍ରଭାବ ପିଲମାନଙ୍କ ମସ୍ତିଷ୍କରେ ଖୁବ୍ ଶୀଘ୍ର ପଡ଼େ । ବର୍ତ୍ତମାନ ସମୟ ହେଉଛି ସେମାନଙ୍କ ପକ୍ଷେ ବିଦ୍ୟାଧ୍ୟୟନର ପ୍ରକୃଷ୍ଟ ସମୟ । କିନ୍ତୁ ସେମାନଙ୍କୁ ଚଳଚ୍ଚିତ୍ର ଦେଖାଇବାଦ୍ୱାରା ଆପଣ ଲକ୍ଷ୍ୟ କରୁଥିବେ ଯେ କୌଣସି ଭଲ କବିତା ମନେରଖିବା ପରିବର୍ତ୍ତେ କୌଣସି ଚଳଚ୍ଚିତ୍ରର ଲଭ୍ (Love) ସଙ୍ଗୀତ ସେମାନେ ଗୁଣୁଗୁଣୁ ହୋଇ ଗାଉଥିବେ । ନିଜର ପାଠ୍ୟ ବିଷୟରେ ଅଧିକ ଧ୍ୟାନ ଦେବା ପରିବର୍ତ୍ତେ କିମ୍ବା ପରିବାର ଓ ସମାଜସେବା କରିବା ପରିବର୍ତ୍ତେ ସେମାନେ ଚଳଚ୍ଚିତ୍ର ଏବଂ ଦୂରଦର୍ଶନ (T. V.) ଆଦି ଦେଖିବାରେ ନିଜକୁ ବିଶେଷଭାବେ ନିୟୋଜିତ କରୁଥିବେ । ଏପରି କୁ-ପ୍ରଭାବର ପୁନରାବୃତ୍ତିଦ୍ୱାରା ସେମାନଙ୍କର ସଂସ୍କାର ଖରାପ ହେବା ସ୍ୱାଭାବିକ କଥା । ଏହାର ପରିମାଣସ୍ୱରୂପ ଆଜି ପାଶ୍ଚାତ୍ୟ ଦେଶର ଇନ୍ଦ୍ରିୟ-ଭୋଗର ସ୍ରୋତ (Permissiveness) ଏବଂ ଉଚ୍ଛୃଙ୍ଖଳତା ହିଁ ଆମ ଦେଶରେ ନୈତିକତା, ଧାର୍ମିକ ମୂଲ୍ୟ ତଥା ଶିଷ୍ଟ ବ୍ୟବହାରର ସ୍ଥାନ ଅଧିକାର କରିଛି । ଯଦି ବାସ୍ତବରେ ଆମ୍ଭେମାନେ ଆମ ଦେଶର ଯୁବାବର୍ଗଙ୍କର ତଥା ନିଜର ଭବିଷ୍ୟତର ହିତ ଦେଖିବାକୁ ଚାହୁଁଥାଉ, ତେବେ ଆମ୍ଭମାନଙ୍କର ସର୍ବପ୍ରଥମେ ଏହି ମନ୍ଦ କାର୍ଯ୍ୟରୁ ନିବୃତ୍ତ ରହିବା ଏକାନ୍ତ ଆବଶ୍ୟକ । ଇତିହାସ ହେଉଛି ଏ ସବୁର ନୀରବ ସାକ୍ଷୀ ବା ଦ୍ରଷ୍ଟା । କେତେବେଳେ ଯଦି କୌଣସି ଦେଶର ଅଗଣିତ ଦେଶବାସୀଙ୍କ ସମ୍ପନ୍ନତା ତଥା ଭୌତିକ ଉନ୍ନତି ସେହି ଦେଶର ଅଗଣିତ ଦେଶବାସୀଙ୍କ ପକ୍ଷେ ଅତ୍ୟନ୍ତ କ୍ଷତିକାରକ ଏବଂ କଷ୍ଟଦାୟକ ହୋଇ ପରିଶେଷରେ ଧୂଳିଧୂସରିତ ହୋଇଥାଏ, ତେବେ ସେହି ପତନର ଏକମାତ୍ର କାରଣ ହେଉଛି ଧାର୍ମିକ ଏବଂ ନୈତିକ ପତନ ।

**ଜିଜ୍ଞାସୁ**—ଭଉଣୀ, ଏ କଥା ମୁଁ ଅକ୍ଷରେ ଅକ୍ଷରେ ସ୍ୱୀକାର କରୁଛି । କେବଳ ଯେ ମୁଁ ଏହା ମାନୁଛି ତାହା ନୁହେଁ ବରଂ ଏହା ଏକ ସର୍ବମାନ୍ୟ ତଥ୍ୟ । ମୁଁ ଆଜିଠାରୁ ସାରାଜୀବନ ପାଇଁ ଏହି ମନ୍ଦ ବସ୍ତୁରୁ

ଦୂରରେ ରହିବ । କିନ୍ତୁ ଆପଣ କହନ୍ତି ଯେ, ଯଦି ମନ ଖୁସିର ଏହି ସାଧନକୁ ତ୍ୟାଗ କରାଯାଏ ତେବେ ମନୁଷ୍ୟ ପାଖରେ ତା'ର ମନୋରଞ୍ଜନ ପାଇଁ ଅନ୍ୟ କୌଣସି ସାଧନ ଅଛି କି ?

**ବ୍ରହ୍ମାକୁମାରୀ**—ଯେତେବେଳେ ଚଳଚ୍ଚିତ୍ର ନ ଥିଲା ସେତେବେଳେ କ'ଣ ମନୁଷ୍ୟର ମନୋରଞ୍ଜନ ହେଉ ନ ଥିଲା ? ମନୁଷ୍ୟ ଜୀବନ ବାସ୍ତବରେ ଏପରି ହେବା ଉଚିତ ଯେପରିକି ତା' ମନ ସର୍ବଦା ଖୁସି ରହିବ । ତେଣୁ ଜ୍ଞାନବାନ୍ ମନୁଷ୍ୟ ସର୍ବଦା ଏହି ସୃଷ୍ଟିକୁ ଏକ ବିରାଟ ନାଟକ ବୋଲି ଭାବେ । ଏହି ନାଟକ ସର୍ବଦା ଅବିରାମ ଗତିରେ ଚାଲିଛି । ଯଦି ମନୁଷ୍ୟ ଏହି ଦୃଷ୍ଟିକୋଣ ରଖେ ତେବେ ତା' ପାଇଁ ମନୋ-ରଞ୍ଜନର କୌଣସି ଅଭାବ ହେବନାହିଁ । ଯେଉଁ ମାନବର ନିଜର ସ୍ୱଭାବ ବିନୋଦପୂର୍ଣ୍ଣ ମେଳାପୀ ତଥା ଶୀତଳ, ସେ କେବେହେଲେ ମାନସିକ କ୍ଳାନ୍ତି ଏବଂ ମାନସିକ ଦୁଃଖ-କଷ୍ଟ ଅନୁଭବ କରେନାହିଁ ; ଏଣୁ ତା'ପାଇଁ ଚଳଚ୍ଚିତ୍ର ଭଳି ସାଧନାର କୌଣସି ଆବଶ୍ୟକତା ନାହିଁ ।

ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ ଦେଖାଯାଏ ଯେ ଚଳଚ୍ଚିତ୍ରରେ ମଧ୍ୟ ଘର-ପରିବାର, ହାଟ-ବଜାର ଅଥବା ସମାଜ ସଙ୍ଗଠନର ଦୃଶ୍ୟ ଦେଖିବାକୁ ମିଳେ । ଏଥିରେ ମଧ୍ୟ ବିଭିନ୍ନ ବ୍ୟକ୍ତିଙ୍କର ଜୀବନ ସଂଗ୍ରାମ କିମ୍ବା କୌଣସି ଆବଶ୍ୟକତାକୁ ପୂରଣ କରିବା ପାଇଁ ତ୍ୟାଗ ଓ ଅଧ୍ୟବସାୟ ମଧ୍ୟ ପ୍ରଦର୍ଶନ କରାଯାଇଥାଏ । ଏହା ଦୁନିଆଁରେ ସବୁ ସ୍ଥାନରେ ଘଟୁଛି । ଦେଖଣାହାରି ମନୁଷ୍ୟ ପାଇଁ ଏହି ସମଗ୍ର ପୃଥିବୀ ହିଁ ଏକ ରଙ୍ଗମଞ୍ଚ । କିନ୍ତୁ ମନୁଷ୍ୟ କ'ଣ ଦେଖିବ, କ'ଣ ନ ଦେଖିବ ଏହାର ନିର୍ଣ୍ଣୟ ସେ ନିଜେ କରିବା ଦରକାର । ଏହି ବିଶାଳ ବିଶ୍ୱନାଟକରେ ଏକ ସେକେଣ୍ଡରେ ଅନେକ ଘଟଣା ଘଟିଚାଲିଛି । ତେଣୁ ଆପଣ ଯେଉଁ ଚଳଚ୍ଚିତ୍ର କଥା କହୁଛନ୍ତି ସେହି ଚଳଚ୍ଚିତ୍ର ଏହି ବିଶ୍ୱ ନାଟକର ଅନେକାନେକ ଘଟଣା ମଧ୍ୟରୁ ହୁଏତ କୌଣସି ଗୋଟିଏ ଉପରେ ଆଧାରିତ ହୋଇପାରେ କିମ୍ବା କାଳ୍ପନିକ ମଧ୍ୟ ହୋଇପାରେ ।

ଏତଦ୍‌ବ୍ୟତୀତ ମନୋରଞ୍ଜନ ନିମିତ୍ତ ଅନେକ ସୁନ୍ଦର ସୁନ୍ଦର ସାଧନ ମଧ୍ୟ ରହିଛି । ମନୁଷ୍ୟ କୌଣସି ଉଦ୍ୟାନ, କୌଣସି ନଦୀକୂଳ କୌଣସି ପ୍ରାକୃତିକ ସୌନ୍ଦର୍ଯ୍ୟ ତଥା ସୁନ୍ଦର ବାତାବରଣରେ ପରିପୂର୍ଣ୍ଣ ଖୋଲା ସ୍ଥାନରେ ତାର ବନ୍ଧୁମାନଙ୍କ ସହିତ ଚିତ୍ତ ବିନୋଦନ, ଭୋଜନ-ପାନ, ଜ୍ଞାନଯୁକ୍ତ ବାର୍ତ୍ତାଳାପ ଇତ୍ୟାଦିର କାର୍ଯ୍ୟକ୍ରମ ରଖି ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ନିଜର ଆତ୍ମିକ ଉନ୍ନତି ପାଇଁ ମଧ୍ୟ ପୁରୁଷାର୍ଥ କରିପାରେ ।

**ଜିଜ୍ଞାସୁ**—ହଁ ଭଉଣୀ, ଏହା ବହୁତ ଭଲ । କିନ୍ତୁ ଆପଣ କହିଲେ ଯେ ଏହି ସୃଷ୍ଟି ହେଉଛି ଏକ ବିରାଟ ନାଟକ ଏବଂ ପ୍ରତ୍ୟେକ ଚଳଚ୍ଚିତ୍ରର ବିଷୟବସ୍ତୁ ହେଉଛି ଏହାର ପ୍ରତିରୂପ ମାତ୍ର—ଏକଥା ମୋର ସମ୍ପୂର୍ଣ୍ଣ ପସନ୍ଦଯୋଗ୍ୟ । ଯଦି ମନୁଷ୍ୟର ଏପରି ଦୃଷ୍ଟିକୋଣ ହୋଇଯାଏ, ତେବେ ସେ ଅନୁଭବ କରିବ ଯେ ତା'ପାଇଁ ଅହରହ ନାଟକ ଚାଲିଛି ଏବଂ ତା'ର ମନୋରଞ୍ଜନ ପାଇଁ କଦାପି ସାଧନର ଅଭାବ ନାହିଁ । କିନ୍ତୁ ପିଲାମାନଙ୍କ ପାଇଁ ଉପାୟ କ'ଣ ?

**ବ୍ରହ୍ମାକୁମାରୀ**–ଯଦି ପିଲାମାନଙ୍କର କାହାଣୀ ଏବଂ ନାଟକ ଇତ୍ୟାଦି ପାଇଁ ଆଗ୍ରହ ରହିଛି ତେବେ ସେମାନଙ୍କୁ କୌଣସି ଶିକ୍ଷାପ୍ରଦ ଐତିହାସିକ ନାଟକ କିମ୍ବା ନୈତିକ କାହାଣୀ ଉପରେ ଆଧାରିତ ବିଭିନ୍ନ ପୁସ୍ତକ ପଢ଼ିବାକୁ ଦିଅନ୍ତୁ, ଯାହାଦ୍ୱାରା ସେମାନଙ୍କ ମନରେ ପ୍ରଭୁପ୍ରେମ, ଦେଶ-ସେବା ପରସ୍ପର-ସ୍ନେହ ଓ ଶ୍ରେଷ୍ଠ ଲକ୍ଷ୍ୟ ହାସଲ ପାଇଁ ସର୍ତ୍ତସ୍ତତା ବୃଦ୍ଧି ପାଇବ । ବୁଦ୍ଧିମାନ ପିଲାମାନଙ୍କୁ ମଧ୍ୟ ଚଳଚ୍ଚିତ୍ର ଏବଂ ଉପନ୍ୟାସର ଅପକାରିତା ବିଷୟରେ ବିଶଦ ବିବରଣୀ ଦିଅନ୍ତୁ । ମାତ୍ର ପ୍ରଥମେ ନିଜେ କୁସଙ୍ଗରୁ ଦୂରରେ ରହିବା ଉଚିତ୍ ଏବଂ ପିଲାମାନଙ୍କ ନିମିତ୍ତ ଏହିସବୁ ବିଷୟରେ ଉପଯୁକ୍ତ ଯତ୍ନ ନେବା ଉଚିତ ।

**ଜିଜ୍ଞାସୁ**—ଭଉଣୀ, ଅମ୍ଭମାନଙ୍କ ପାଇଁ ସର୍ବଦା ସଙ୍ଗ ସମସ୍ୟା ସୃଷ୍ଟି ହୋଇ ରହୁଛି । ଗୃହସ୍ଥ ହୋଇଥିବାରୁ କେତେକ ବ୍ୟକ୍ତିମାନଙ୍କ ସହିତ ଅନିଚ୍ଛାସତ୍ତ୍ୱେ ବସିବାକୁ ପଡ଼ୁଛି । ସେମାନେ ଯାହାସବୁ ଆଲୋଚନା କରନ୍ତି ସେସବୁ ଆମର ପସନ୍ଦଯୋଗ୍ୟ ନୁହେଁ । ଯେଉଁ ବିଷୟଠାରୁ ଆମ୍ଭେମାନେ ବହୁ ଦୂରରେ ରହିବାର ପୁରୁଷାର୍ଥୀ, ସେହି ବିଷୟରେ ସେମାନେ ପ୍ରଶ୍ନ ମଧ୍ୟ କରନ୍ତି । କେତେକ ବ୍ୟକ୍ତି ମଦ୍ୟପୀ ହୋଇଥିଲେ ମଧ୍ୟ ସାଂସାରିକ ସମ୍ବନ୍ଧ ହେତୁ ସେମାନଙ୍କ ସହିତ ସମ୍ପର୍କ ରଖିବାକୁ ପଡ଼ୁଛି । ସେମାନଙ୍କର ଆମ ଘରକୁ ଯିବା-ଆସିବା ମଧ୍ୟ ରହୁଛି, ତେଣୁ ସେମାନଙ୍କ ସହିତ କଥାବାର୍ତ୍ତା ମଧ୍ୟ କରିବାକୁ ପଡ଼ୁଛି । ମୋ ବିଚାରରେ ଏହାର କୌଣସି ସମାଧାନ ନାହିଁ ।

**ବ୍ରହ୍ମାକୁମାରୀ**—ଯଦି ସେମାନେ ଆପଣଙ୍କ ପାଖକୁ ଯା' ଆସ କରୁଛନ୍ତି ତେବେ ସେମାନଙ୍କୁ ମନା କରିବା ଉଚିତ ନୁହେଁ । କିନ୍ତୁ ଏପରି ବାତାବରଣରେ ମଧ୍ୟ ମନର ସଙ୍ଗ ସତ୍ୟ-ସ୍ୱରୂପ ପରମପିତାଙ୍କ ଠାରେ ସ୍ଥାପନା କରାଯାଇପାରିବ । ଯଦି ଆତ୍ମବିଶ୍ୱାସ ରହିଛି, ନିଜର ଧାରଣା ଠିକ୍ ରହିଛି, ତେବେ ସେମାନଙ୍କର ବାର୍ତ୍ତାଳାପକୁ ଆପଣ ଭଲ ଆଡ଼କୁ ପରିବର୍ତ୍ତନ କରିପାରିବେ ଏବଂ ସେମାନଙ୍କୁ ଆଧ୍ୟାତ୍ମିକ ରଙ୍ଗରେ ମଧ୍ୟ ପ୍ରଭାବିତ କରିପାରିବେ । ଯଦି ସଠିକ୍ ରୀତିରେ କାର୍ଯ୍ୟ କରାଯାଏ ତେବେ ସବୁକିଛି କରାଯାଇପାରିବ । ସେହି ବ୍ୟକ୍ତିମାନଙ୍କୁ ମଧ୍ୟ ସୁନ୍ଦର ଯୁକ୍ତି ଏବଂ ସମୟୋପଯୋଗୀ ସମାଚାର ଏବଂ ସତ୍ୟ ଅନୁଭବଦ୍ୱାରା ପ୍ରଭାବିତ କରାଯାଇ ପାରିବ । ସେମାନଙ୍କ ମନରେ ଏଥିପାଇଁ ଆଗ୍ରହ ଉତ୍ପନ୍ନ କରାଯାଇ ପାରିବ । ସେମାନଙ୍କ ସହିତ ସାଂସାରିକ [illegible] ହେବା ସଙ୍ଗେ ସଙ୍ଗେ ଯଦି ସହୃଦୟତା ସହିତ ବାର୍ତ୍ତାଳାପ କରାଯା[illegible], [illegible]ବେ ସେମାନେ ଆମ କଥାକୁ ଶୁଣିବା ପାଇଁ ନିଶ୍ଚୟ ଲାଳାୟିତ ହେବେ । କିନ୍ତୁ ଏପରି କରିବା ଯାହା ପକ୍ଷେ ସମ୍ଭବ ନୁହେଁ ସେ ସର୍ବଦା ସତ୍ସଙ୍ଗକୁ ଯିବା ଆବଶ୍ୟକ ଏବଂ ଯେଉଁଠାରେ ଏହାର ଅଭାବ, ସେଠାକୁ ଖୁବ୍ କମ୍ ଯିବା

ଉଚିତ ଏବଂ ସେଠାକୁ ଯିବା ସମୟରେ ମଧ୍ୟ ଈଶ୍ୱରଙ୍କ ସ୍ମୃତିଦ୍ୱାରା ନିଜକୁ ସୁରକ୍ଷିତ ରଖିବା ବାଞ୍ଛନୀୟ ।

ଯେଉଁ କଥା ଚଳଚ୍ଚିତ୍ର ବିଷୟରେ କୁହାଗଲା ତାହା ମଧ୍ୟ ଉପନ୍ୟାସ ପାଇଁ ପ୍ରଯୁଜ୍ୟ । ଯାଦୁବିଦ୍ୟା ସମ୍ବନ୍ଧୀୟ ଉପନ୍ୟାସ, ଡକାୟତି ଅଥବା ଲୋମହର୍ଷଣକାରୀ ଉପନ୍ୟାସ ମନୁଷ୍ୟର ବ୍ୟକ୍ତିତ୍ୱକୁ ଭୟଙ୍କର ଏବଂ କୁଟିଳ କରେ ତଥା ବିଚାରରୁ ମଳିନ ଏବଂ ଅନିୟନ୍ତ୍ରିତ କରେ । ତା' ପାଖରେ ଅନିଦ୍ରା ଏବଂ କୃତ୍ରିମତା ମଧ୍ୟ ପରିଲକ୍ଷିତ ହୁଏ ଏବଂ ତା'ର ଆଧ୍ୟାତ୍ମିକ ବିକାଶ ତଥା ଆତ୍ମିକ ଅନୁଭୂତିରେ ବିଭିନ୍ନ ପ୍ରତିବନ୍ଧକ ମଧ୍ୟ ସୃଷ୍ଟି ହୁଏ । ଏହା ପରିବର୍ତ୍ତେ ଯଦି ମାନବ ସତ୍ ସାହିତ୍ୟ, ଇତିହାସ ଅଥବା ଶିକ୍ଷଣୀୟ ନାଟକ ଅଧ୍ୟୟନ କରେ ତେବେ ସେ ଚରିତ୍ରବାନ୍ ହୋଇପାରିବ ।

ଜୀବନକୁ କମଳ-ପୁଷ୍ପତୁଲ୍ୟ ଗଢ଼ିବା ପାଇଁ ଏବଂ ନିର୍ବିକାର ଜୀବନ ଅତିବାହିତ କରିବା ପାଇଁ ଯେଉଁ ବିଧିବିଧାନ ଆପଣଙ୍କ ସମ୍ମୁଖରେ ପରିବେଷଣ କରାଗଲା, ସେସବୁକୁ ଆପଣ ଆପଣଙ୍କର ବ୍ୟବହାରିକ ଜୀବନରେ ଧାରଣ କରି ଈଶ୍ୱରୀୟ ଆନନ୍ଦ ସର୍ବଦା ଲାଭ କରନ୍ତୁ ଏବଂ ନିଜର ପରିବାର ଏବଂ ବନ୍ଧୁମାନଙ୍କର କଲ୍ୟାଣ ନିମିତ୍ତ ଏହି ପ୍ରସାଦ ଦାନ କରନ୍ତୁ ।



# ଦୁଃଖ ଦଅନ୍ତୁ ନାହିଁ କିମ୍ବା ଦୁଃଖ ପାଆନ୍ତୁ ନାହିଁ

କର୍ମର ହିସାବ-କିତାବ ବହୁତ ଗମ୍ଭୀର ଏବଂ ଅଟଳ । ତେଣୁ କୌଣସି ସାମାନ୍ୟ ଭୁଲ ବା ବିକର୍ମଠାରୁ ମାନବ ଦୂରରେ ରହିବା ଉଚିତ, କାରଣ ବିକର୍ମ ଯେତେ ସୂକ୍ଷ୍ମ ହୁଏ, ତା' ପାଇଁ ସେତେ ସୂକ୍ଷ୍ମ ଦଣ୍ଡ ନିଶ୍ଚୟ ଭୋଗ କରିବାକୁ ପଡ଼େ । ଅସାବଧାନତାବଶତଃ ଯଦି ଜଣେ ନିଜର ବିକର୍ମଦ୍ୱାରା ଅନ୍ୟ କାହାକୁ ଦୁଃଖ ଦିଏ ତା' ବଦଳରେ ନିଜକୁ ମଧ୍ୟ ଦୁଃଖ ଭୋଗ କରିବାକୁ ପଡ଼ିଥାଏ । ଏଣୁ ନିଜକୁ ସୁଖଦାତା ପରମାତ୍ମାଙ୍କର ବଂଶାବଳୀ ବୋଲି ଭାବି ନିଜେ ସର୍ବଦା ସୁଖୀ ରହିବା ସଙ୍ଗେ ସଙ୍ଗେ ଅନ୍ୟ ସମସ୍ତଙ୍କୁ ସୁଖୀ ରଖିବା ପାଇଁ ସେବା ବା କର୍ମ କରିବା ଉଚିତ ଏବଂ ସର୍ବଦା ସ୍ଥୂଳ ( ଶାରୀରିକ ) ଏବଂ ସୂକ୍ଷ୍ମ ( ମାନସିକ ) ବିକର୍ମ ପ୍ରତି ସାବଧାନ ରହିବା ଉଚିତ । ତେଣୁ କାହାକୁ ଦୁଃଖ ଦିଅନ୍ତୁ ନାହିଁ କିମ୍ବା କାହାଠାରୁ ଦୁଃଖ ପାଆନ୍ତୁ ନାହିଁ ।

ଯଦି କୌଣସି ମାନବ ଅନ୍ୟର ଦୁଃଖ ଦେଖି ନିଜ ଦୁଃଖର ପ୍ରବାହରେ ଭାସିଯାଏ କିମ୍ବା ଦୁଃଖର ବିବରଣୀ ଶୁଣାଇ ଅନ୍ୟକୁ ଦୁଃଖୀ କରାଏ, ତେବେ ସେହି ମାନବକୁ 'ଜ୍ଞାନବାନ୍' କୁହାଯାଏ ନାହିଁ । କାରଣ ଯିଏ ଜ୍ଞାନବାନ୍ ବ୍ୟକ୍ତି ସେ ସର୍ବଦା ସାକ୍ଷୀ, ଶାନ୍ତ-ଚିତ୍ତ ଏବଂ ହର୍ଷିତମୁଖ ହୋଇ ନିଜେ ଅତୀନ୍ଦ୍ରିୟ ସୁଖରେ ରମଣ କରିବା ସଙ୍ଗେ ସଙ୍ଗେ ତା'ର ଜ୍ଞାନବଳଦ୍ୱାରା ଅନ୍ୟର ଦୁଃଖକୁ ହରଣ କରେ ଏବଂ ନିଜର ତଥା ଅନ୍ୟମାନଙ୍କର କଲ୍ୟାଣ ସର୍ବଦା ସମ୍ମୁଖରେ ରଖିବା ସଙ୍ଗେ ସଙ୍ଗେ ଉଦାସ ଏବଂ ଚିତ୍ତ-ଗ୍ଲାନି ଠାରୁ ସର୍ବଦା ଦୂରରେ ରହେ । ସେ ଉପଲବ୍ଧି କରେ ଯେ—"ଯଦି ମୋ'ଠାରେ ଦୁଃଖର ପ୍ରଭାବ ଅଥବା ଚିହ୍ନ ଅନ୍ୟମାନେ ଦେଖନ୍ତି, ତେବେ ସେମାନଙ୍କ ମତରେ ମୋ ପାଇଁ କୌଣସି ସଙ୍କଳ୍ପ ଆସିପାରେ । ସେମାନେ ହୁଏତ ମୋତେ ଖୁସି କରିବା

ଆସିପାରେ । ସେମାନେ ହୁଏତ ମୋତେ ଖୁସି କରିବାପାଇଁ ବିଭିନ୍ନ ସ୍ଥୂଳ ଏବଂ ସୂକ୍ଷ୍ମ ପୁରୁଷାର୍ଥରେ ଲାଗିପଡ଼ିବେ ଏବଂ ଏଦ୍ୱାରା ପରିଣାମସ୍ୱରୂପ ସେମାନଙ୍କର ସମସ୍ତ ଏବଂ ପୁରୁଷାର୍ଥର ବୋଝ ମୋ ମୁଣ୍ଡ ଉପରେ ଲଦି ହୋଇଯିବ । ମୋ ଯୋଗୁଁ ସେମାନଙ୍କର ସମୟ ମଧ୍ୟ ବ୍ୟର୍ଥତାରେ ବିନିଯୋଗ ହେବ ।" ତେଣୁ ବର୍ତ୍ତମାନ ଆପଣଙ୍କ ଜୀବନରେ ଜ୍ଞାନ ଧାରଣ କରି ଦୁଃଖର କଣ୍ଟାକୁ ଚିରଦିନ ପାଇଁ ପରିତ୍ୟାଗ କରନ୍ତୁ ଏବଂ ନିଜର ଚେହେରାରେ ସୁଖର ଲହରୀ ସୃଷ୍ଟି କରି ଅନ୍ୟକୁ ମଧ୍ୟ ସୁଖ ଦିଅନ୍ତୁ ।

## ବିକାରୀ ବ୍ୟକ୍ତିମାନଙ୍କ ସହିତ ବୁଦ୍ଧିଯୋଗ ସ୍ଥାପନ କରିବା ମଧ୍ୟ ଜ୍ଞାନବିରୋଧୀ ଅଟେ ।

ନିଜକୁ ଦୁଃଖରୁ ଦୂରରେ ରଖିବାପାଇଁ ଏବଂ ଅନ୍ୟମାନଙ୍କୁ ସୁଖୀ କରିବା-ପାଇଁ ଯେଉଁ ପୁରୁଷାର୍ଥ ଆବଶ୍ୟକ, ତାହା ସବୁଠାରୁ ସୂକ୍ଷ୍ମ ଏବଂ ଶ୍ରେଷ୍ଠ ଅଟେ । ଶାନ୍ତସ୍ୱରୂପ ଏବଂ ଆନନ୍ଦସ୍ୱରୂପ ପରମାତ୍ମାଙ୍କ ସହିତ ବୁଦ୍ଧି ଯୋଗରୂପୀ ସୂକ୍ଷ୍ମ ତାରକୁ ଯୋଡ଼ିବାଦ୍ୱାରା ଅର୍ଥାତ୍ ପ୍ରେମସଂପନ୍ନ ସ୍ମୃତିଦ୍ୱାରା ଆପଣ ଶାନ୍ତି ଏବଂ ଆନନ୍ଦର ପ୍ରବାହକୁ ଉପଲବ୍ଧି କରିପାରିବେ । ଯେହିପରି ଯଦି ମନୁଷ୍ୟର ମାନସିକ ଆସକ୍ତି ( Attachment ) କୌଣସି ବିକାରୀ ମନୁଷ୍ୟ ସହିତ ରହେ, ତେବେ ସେହି ମନୁଷ୍ୟ ଉକ୍ତ ବିକାରୀ ମାନବର ଦୁଃଖର ତାପ ନିଶ୍ଚୟ ଅନୁଭବ କରିବ । ଯଦି ଦୁଃଖର ଆଦାନ-ପ୍ରଦାନ ଏପରି ଚାଲୁରହେ ତେବେ ମନୁଷ୍ୟ ସ୍ଥାୟୀ, ପ୍ରଫୁଲ୍ଲ, ଆନନ୍ଦମୟ ଏବଂ ହର୍ଷମୟ ଅବସ୍ଥା ଲାଭ କରିବା ପାଇଁ ଅସମର୍ଥ ହୁଏ । ଆପଣ ଜାଣନ୍ତି ଯେ ବର୍ତ୍ତମାନ ସମୟରେ ସମସ୍ତେ ଦୁଃଖର ଲହରୀରେ ଭାସମାନ । ତେଣୁ କୌଣସି ମନୁଷ୍ୟଠାରେ ଯଦି କିଛିଅଂଶରେ ଆପଣଙ୍କର ଆସକ୍ତି ବା ମୋହ ରହେ ତେବେ ନିଜକୁ ଏବଂ ଅନ୍ୟମାନଙ୍କୁ ସୁଖୀ ରଖିବା ପାଇଁ ଆପଣ ଯେଉଁ ପୁରୁଷାର୍ଥ କରିବେ ସେଥିରେ ଆପଣ ବିଜୟୀ ହୋଇପାରିବେ ନାହିଁ ।

ଏଣୁ ପରମପିତା ପରମାତ୍ମା କହୁଛନ୍ତି ଯେ ଆପଣ ଏହି ସୂକ୍ଷ୍ମ ଏବଂ ଗହନ ଧାରଣାକୁ ଉପଲବ୍ଧି କରି ସମସ୍ତଙ୍କ ସହିତ ସୁଖର ଆଦାନ-ପ୍ରଦାନ କରନ୍ତୁ । ଯଦି ଆପଣ ଏହି ଆଜ୍ଞାକୁ ପାଳନ ନ କରନ୍ତି ତେବେ ଦୁଃଖର କର୍ମ-ବନ୍ଧନ ଅଥବା ସୂକ୍ଷ୍ମ ବିବାଦ-କଳହ ଆପଣଙ୍କ ଜୀବନରେ ବଢ଼ି ଚାଲିବ । ଯଦିଓ ଆମ୍ଭମାନଙ୍କ ସମ୍ମୁଖରେ ସମୟର ପରିମାଣ ବହୁତ କମ୍, ତେବେ ସୁଦ୍ଧା ଜୀବନରେ ସମ୍ପୂର୍ଣ୍ଣ ସୁଖ ଲାଭ କରିବାପାଇଁ ଏହା ହେଉଛି ପ୍ରକୃଷ୍ଟ ସମୟ । ବର୍ଷ, ମାସ, ଦିନ, ଘଣ୍ଟା, ମିନଟ୍ ଓ ସେକେଣ୍ଡ ହୋଇ ଏହା ଅବିଚ୍ଛିନ୍ନଭାବେ ଗଡ଼ି ଚାଲିଛି । ଏଣୁ ପ୍ରତି କ୍ଷଣରେ ଆତ୍ମିକ ସୁଖର ଆଦାନ-ପ୍ରଦାନ କରିଚାଲନ୍ତୁ । କାରଣ ସୁଖଦାତା ପରମାତ୍ମାଙ୍କ ସହିତ ଆପଣ ହିଁ ସମ୍ବନ୍ଧ ସ୍ଥାପନ କରି ସମ୍ପୂର୍ଣ୍ଣ ସୁଖଶାନ୍ତି ପାଇପାରୁଛନ୍ତି । ଯଦି ଆପଣ ସବୁ ବନ୍ଧୁ ବାନ୍ଧବ, ଅଜ୍ଞାନୀ ଏବଂ ବିକାରୀ ବ୍ୟକ୍ତିମାନଙ୍କଠାରୁ ଆପଣଙ୍କର ଆନ୍ତରିକ ସମ୍ପର୍କ ଛିନ୍ନ କରି ଆପଣଙ୍କର ମନ ଏବଂ ବୁଦ୍ଧିର ସମ୍ବନ୍ଧ ସ୍ଥୂଳ ଏବଂ ସୂକ୍ଷ୍ମ ସ୍ତରରେ ସୁଖସାଗର ପରମପିତା ପରମାତ୍ମାଙ୍କ ସହିତ ସ୍ଥାପନ କରିବେ, ତେବେ ଆପଣଙ୍କ ଜୀବନରେ ଦୁଃଖର ନାମ ଏବଂ ରୂପ ମଧ୍ୟ ରହିବ ନାହିଁ ।

## ଅନ୍ୟକୁ ଦୁଃଖୀ କରିବାପାଇଁ ସଂକଳ୍ପ କରୁଥିବା ବ୍ୟକ୍ତି ସ୍ୱୟଂ ଦୁଃଖ ଅନୁଭବ କରେ ।

କୌଣସି ଆତ୍ମାକୁ ଦୁଃଖ ଦେବାପାଇଁ ଯଦି ଆପଣଙ୍କ ମନରେ ସୂକ୍ଷ୍ମ ସଂକଳ୍ପ ଆସେ, ତେବେ ଭାବନ୍ତୁ ଯେ ଆପଣ ଜ୍ଞାନର ଧାରଣାରେ ନିଷ୍ଫଳ ଏବଂ ବିଫଳ ହୋଇଛନ୍ତି, କାରଣ ଦୁଃଖଦାୟକ ବା କ୍ଷତିକାରକ କର୍ମ ଜ୍ଞାନୀ ମାନବର କର୍ତ୍ତବ୍ୟ ବହିର୍ଭୂତ । ଯେତେବେଳେ ଅନ୍ୟକୁ ଦୁଃଖୀ କରିବାପାଇଁ ସଂକଳ୍ପ କୌଣସି ମାନବ ମନରେ ଆସେ, ପ୍ରଥମେ ତା' ମନରେ ହିଁ ଦୁଃଖ ଅନୁଭୂତ ହୁଏ ଏବଂ ପରେ ଅନ୍ୟକୁ ଦୁଃଖ ଦେବା କାରଣରୁ ସେ ମଧ୍ୟ ଅଧିକ ଦୁଃଖ ଅନୁଭବ କରେ । ତେଣୁ ଆପଣ କହନ୍ତୁ ଯେ କୌଣସି ଜ୍ଞାନୀ ମାନବ କ'ଣ କେବେ ଅନ୍ୟକୁ ଦୁଃଖୀ କରି ନିଜେ ଦୁଃଖୀ ହେବାଭଳି କଥାବାର୍ତ୍ତା ବା କର୍ମ କରିପାରେ କି ?

## ଦେବତାଙ୍କ ସଦୃଶ ମଧୁର ଏବଂ ପ୍ରିୟ ହୁଅନ୍ତୁ

ଦେବତାମାନଙ୍କର ମୂର୍ତ୍ତି (ଶରୀର), ଚେହେରା ଏବଂ ଆଚରଣ ସର୍ବଦା ଏପରି ଯେ ସେମାନଙ୍କୁ ଦେଖି ସମସ୍ତେ ସ୍ୱତଃ ଖୁସି ହୋଇଯାଆନ୍ତି । ଦେବତା ସମସ୍ତଙ୍କୁ ବରଦାନ ଦିଅନ୍ତି । ଯେତେବେଳେ କୌଣସି ଭକ୍ତର କୌଣସି ଦେବତାଙ୍କ ସହିତ ସାକ୍ଷାତ୍କାର ହୁଏ, ସେତେବେଳେ ଭକ୍ତ ତତ୍‌କ୍ଷଣାତ୍ ନତ-ମସ୍ତକ ହୋଇଯାଏ । କାରଣ ଦେବତାଙ୍କର ମନ, ବଚନ ଏବଂ କର୍ମ ସର୍ବଦା ସୁଖରେ ଭରପୂର ଥାଏ । ଏଣୁ ଆପଣ ବର୍ତ୍ତମାନ ଆପଣଙ୍କର ଆଦିରୂପକୁ ସ୍ମରଣ କରି ସେହି ଦେବତାମାନଙ୍କ ସଦୃଶ ମଧୁର ହେବାପାଇଁ ପୁରୁଷାର୍ଥ କରନ୍ତୁ ।

ହୁଏତ କୌଣସି ବ୍ୟକ୍ତି ତାର ଖରାପ-ଦୃଷ୍ଟି ଏବଂ ତମୋଗୁଣୀ ବୃତ୍ତିଯୋଗୁଁ ଆପଣଙ୍କ ପ୍ରତି ଖରାପ (ମିଥ୍ୟା) ଧାରଣା ଆଣି ଦୁଃଖୀ ହୋଇପାରେ । ଯଦିଓ ଏଥିରେ ଆପଣଙ୍କର କୌଣସି ଦୋଷ ନାହିଁ, ତଥାପି ନିଜର ଜ୍ଞାନବଳଦ୍ୱାରା ଆପଣ ସେହି ଅଜ୍ଞାନୀ ବ୍ୟକ୍ତିର ଦୃଷ୍ଟି-ବୃତ୍ତିକୁ ପରିବର୍ତ୍ତନ କରିବା ପାଇଁ ସର୍ବଦା ଯତ୍ନ କରିବା ଉଚିତ ।

## ସୁଖଧାମକୁ ଯିବାର ମାର୍ଗ

ଆପଣଙ୍କର ଦୁଃଖର ରାତି ପୂରା ହୋଇଛି ଏବଂ ବର୍ତ୍ତମାନ ସୁଖରୂପୀ ଶୁଭ ପ୍ରଭାତ ଆପଣଙ୍କୁ ସ୍ୱାଗତ କରୁଛି । ଏହି ଶୁଭ ସମୟରେ ସୁଖଦାତା ପରମ-ପିତା ପରମାତ୍ମା ଆମର ପଥପ୍ରଦର୍ଶକ ହୋଇ ଆମ୍ଭମାନଙ୍କୁ ସୁଖଧାମକୁ ନେଉଛନ୍ତି । ସାରା କଳ୍ପରେ ଏପରି ସମୟ ଥରେ ମାତ୍ର ଆସେ । ତେଣୁ ସେହି ସୁଖଦାତାଙ୍କର ସ୍ମୃତିରେ ରହି ଆପଣ ଯେତେ ସୁଖର ପ୍ରଶ୍ୱାସ ନେବେ, ସେତେ ଶୀଘ୍ର ଆପଣଙ୍କର ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ସମର୍ଥ ହେବେ । ସୁଖଧାମର ସ୍ମୃତିରେ ରହି ଅନ୍ୟମାନଙ୍କୁ ମଧ୍ୟ ସୁଖଧାମର ମାର୍ଗ ପ୍ରଦର୍ଶନ କରନ୍ତୁ ।

—ଓଁ ଶାନ୍ତି—

